# ଅକାଳ କୁହୁଡ଼ି

( ଐତିହାସିକ ଉପନ୍ୟାସ )

ଶ୍ରୀ ମୁରଲୀଧର ମଲ୍ଲିକ

# ଅକାଳ କୁହୁଡ଼ି

ଲେଖକ—ଶ୍ରୀ ମୁରଲୀଧର ମଲ୍ଲିକ

ପ୍ରକାଶକ—

**ଆଚାର୍ଯ୍ୟ ପ୍ରକାଶନୀ**

ବିନୋଦବିହାରୀ, କଟକ-୨

ପ୍ରଥମ ମୁଦ୍ରଣ—୧୯୬୮

ମୁଦ୍ରାକର—କମର୍ଶିଆଲ ଆର୍ଟ ପ୍ରେସ
କଟକ-୨

ମୂଲ୍ୟ—**ତିନି ଟଙ୍କା**

**AKAL KUHUDI**

( *Historical Novel* )

*Written by*

**Sri Muralidhar Mallick**

*Published by—*

**Acharya Prakashani**

Binodbehari, Cuttack-2

# ନିଜ କଥା

ଓଡ଼ିଆ ଭାଷାରେ ଐତିହାସିକ ଉପନ୍ୟାସର ଅଭାବ ଉପଲବ୍ଧି କରି ମୁଁ ପ୍ରଥମେ ଏଥିରେ ହାତ ଦେଇଥିଲି । ଏଥିପୂର୍ବରୁ ଖାରବେଳ, କଳିଙ୍ଗ ଯୁଦ୍ଧ ଓ ବିପ୍ଳବୀ ବୁଖିଖ୍ୟୁଣ୍ଡିଆଙ୍କ ସମ୍ପର୍କରେ ତିନି ଖଣ୍ଡ ବହି, ଯଥାକ୍ରମେ—'ରଜନୀ ଯାଇଛୁ ବିତି' 'ମଙ୍ଗଳେ ଅଇଲା ଉଷା' ଓ 'ଗୁହାସ୍ଥିର ବଧୂ ପୂର୍ଣ୍ଣି ସାଧକର ଶକ୍ତି' ଆତ୍ମପ୍ରକାଶ କରିସାରିଛି । ଏବେ 'ମୁକୁନ୍ଦଦେବଙ୍କ' ସଂପର୍କରେ ଲିଖିତ 'ଅକାଳ କୁହୁଡ଼ି' ପୁସ୍ତକଟି ମୁକ୍ତିଲାଭ କଲା ।

ଉତ୍କଳମଣି ଗୋପବନ୍ଧୁଙ୍କ ମତରେ— "ଯେଉଁ ଦେଶର ଅତୀତ ନ ଥିଲା, ସେ ଦେଶର ଭବିଷ୍ୟତ ନାହିଁ । କାରଣ, ଅତୀତ ହିଁ ଭବିଷ୍ୟତର ପଥ ପ୍ରଦର୍ଶକ ।" ଏହିଦୃଷ୍ଟିରୁ ବିଚାରକଲେ ଦେଖାଯିବ ଯେ, ଆମ ଦେଶରେ ଅତୀତରେ ନ ଥିଲା କ'ଣ ? ଏ ଦେଶର ବାଡ଼ଦାଣ୍ଡ, ବଡ଼ଦେଉଳ, ବଡ଼ଠାକୁର, ମହୋଦଧି, ମହାନଦୀ, ମହାପ୍ରସାଦ ପ୍ରଭୃତି ତ ତାହାର ଜ୍ୱଳନ୍ତ ନିଦର୍ଶନ । ଏହା ବ୍ୟତୀତ କୋଣାର୍କ ଓ ଭୁବନେଶ୍ୱରର ଭାସ୍କର୍ଯ୍ୟ, ମହାନଦୀ ଓ କାଠଯୋଡ଼ିର ପଥର ବନ୍ଧ, ସବୁ ଧର୍ମମତ ଓ ସମ୍ପ୍ରଦାୟର ସମାବେଶ ଦେଖିଲେ ବାସ୍ତବରେ କାହା ମନରେ ଗର୍ବ ନ ଆସିବ ? ଓଡ଼ିଆଙ୍କର ଶୌର୍ଯ୍ୟ, ବୀର୍ଯ୍ୟ, ପରାକ୍ରମ, ବୋଇତ ବଣିଜ ଏବେ ମଧ୍ୟ ଲୁଚି ନାହିଁ । ପ୍ରବାଦ, ପ୍ରବଚନ ଓ କିମ୍ବଦନ୍ତୀରେ ଓଡ଼ିଶାର ପୁରପଲ୍ଲୀରେ ତାହାର ପ୍ରମାଣ ବିଦ୍ୟମାନ । ପୂର୍ବର ସେ ବାରବାଟୀଗଡ଼ ରହିଛି; ମାତ୍ର ଓଡ଼ିଆଙ୍କର ସେ ଗୌରବ ନାହିଁ । ୧୫୬୮ରୁ ୧୯୬୮ ଏହି ଚାରିଶହ ବର୍ଷରେ ସେ ନାନା ଘାତ-ପ୍ରତିଘାତ ଓ ବାଧା-ବିପଦର ସମ୍ମୁଖୀନ ହୋଇ ସମସ୍ତ ଅତୀତ ବିଭବ ଭୁଲି ଯାଇଛି । ତା ସହିତ ବନ୍ୟା, ମରୁଡ଼ି ଓ ବାତ୍ୟା ପ୍ରଭୃତି ଦୈବୀ ଦୁର୍ବିପାକ ଯୋଗୁ ସେ ପରଦ୍ୱାରରେ ହାତ ପାତି ପାତି ଆଜି ନିଜସ୍ୱ ହରାଇ ବସିଛି ।

ଓଡ଼ିଶାର ପ୍ରସ୍ତରଖଣ୍ଡରେ, ବଣ-ବୁଦାରେ, ଭୂଇଁ ତଳେ ଓ ନଦୀ ସୈକତରେ ଯେଉଁ ମହାମୂଲ୍ୟ କୀର୍ତ୍ତି ଏବଂ ଅତୀତ ଗୌରବ ଲୁଚି ରହିଛି, ତାହାହିଁ ଏ ଉପନ୍ୟାସ-ଗୁଡ଼ିକରେ ଆଲୋଚନା କରିବା ମୋର ଉଦ୍ଦେଶ୍ୟ । କାରଣ ଏହା ଯୋଗୁ ଯଦି ଓଡ଼ିଆ

ଅତୀତର ଆଲୋକରେ ଅନୁପ୍ରାଣିତ ହୋଇ ଭବିଷ୍ୟତକୁ ଅଗ୍ରସର ହୁଏ; ତେବେ ତାର ପୂର୍ବ ବିଭବ ଫେରିଆସିବ ବୋଲି ମୋର ବିଶ୍ୱାସ । ଏଣୁ ଉପନ୍ୟାସଟିରେ ଐତିହାସିକ ଘଟଣାବଳୀ ସହିତ କାହାଣୀ, କିମ୍ବଦନ୍ତୀ ଓ କେତେକ କାଳ୍ପନିକ ବିଷୟବସ୍ତୁ ମଧ୍ୟ ସନ୍ନିବେଶିତ ହୋଇଛି । ମୋଟଉପରେ ପାଠକମାନଙ୍କୁ ସ୍ମରଣ କରାଇ ଦେବାକୁ ଚାହେଁ ଯେ—ଏହା ଇତିହାସ ନୁହେଁ, ତହିଁରୁ ଏହାର ବିଷୟବସ୍ତୁ ଆହରଣ କରାଯାଇଛି ମାତ୍ର । ମୋର ଅନ୍ୟାନ୍ୟ ଐତିହାସିକ ଉପନ୍ୟାସ-ମାନଙ୍କ ପରି ଏହା ଯେ ସୁଧୀବର୍ଗଙ୍କ ଦ୍ୱାରା ଆଦୃତ ହେବ, ତହିଁରେ ଦୃଢ଼ ବିଶ୍ୱାସ ଅଛି । ପରିଶେଷରେ ମୋର ବନ୍ଧୁ ସୁଲେଖକ ଶ୍ରୀଯୁକ୍ତ ସୂର୍ଯ୍ୟନାରାୟଣ ଆଚାର୍ଯ୍ୟ ଏମ୍. ଏସ୍. ସି. ପୁସ୍ତକଟିର ମୁଦ୍ରଣଦାୟିତ୍ୱ ବହନ କରିଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

**ଶିବରାତ୍ରି**
ଗୋପବନ୍ଧୁ ଭବନ, କଟକ-୧
ତା ୨୬ । ୨ । ୬୮

ବିନୀତ
**ଲେଖକ**

# ଉତ୍ସର୍ଗ

ବିଶିଷ୍ଟ ସମାଜ ସେବୀ

**ଶ୍ରୀଯୁକ୍ତ ଶ୍ରୀକାନ୍ତ ପଣ୍ଡାଙ୍କ**

କରକମଳରେ

ନୀଳାମ୍ବରୀ

ଚଳଚଞ୍ଚଳା —କଳକଲ୍ଲୋଳା

ସାଗରବାହିନୀ—ଉତ୍କଳ ଜାହ୍ନବୀ—କଳିକଲୁଷନାଶିନୀ—ପୁଣ୍ୟତୋୟା ମହାନଦୀ । ମହର୍ଷି ମୁକାନ୍ତଙ୍କ କଠୋର ତପସ୍ୟାରେ ଉତ୍କଳ ଭୂମିରେ ଅବତୀର୍ଣ୍ଣା ହେଲେ । ଯୁଗେ ଯୁଗେ କେତେ ଉତ୍ଥାନ ପତନ ଦେଖିଲେ । କେତେ ସାଧୁ, ସନ୍ଥ, ତପୀ, ଜପୀ ତାର ପୁଣ୍ୟସଲିଳରେ ଅବଗାହନ କରି ନିଜକୁ କୃତାର୍ଥ ମଣିଲେ ।

କେତେ ରାଜା, ମହାରାଜାଙ୍କର ଉଷ୍ଣୀଷ, କିରୀଟ ତାହାରି କୂଳରେ ଭୂ-ଲୁଣ୍ଠିତ ହେଲା । କେତେ ଅସୂର୍ଯ୍ୟମ୍ପଶ୍ୟା ରାଜବଧୂ ତା ବକ୍ଷରେ କ୍ରୀଡ଼ା କଲେ । ପୁଣିକେତେ ଦେଶଭକ୍ତ ସାଧୁର ରକ୍ତରେ ତାର ନୀଳ ନୀର ଲୋହିତବର୍ଣ୍ଣ ଧାରଣ କଲା ।

ସେ ଉତ୍କଳର କମଳା

ପୁଣି

ଜାୟା, ଜନନୀ ଓ ଭଗିନୀ ।

ଅଫୁରନ୍ତ ସ୍ନେହ, ମମତା ଓ ସୋହାଗରେ ଉତ୍କଳୀୟ ପ୍ରାଣକୁ ଉଦ୍‌ବୁଦ୍ଧ କରିଛି, ପୟଃଦାନରେ ପାଳନ କରିଛି—ଦେଇଛି ନବ ଅନୁରାଗର ଦୀକ୍ଷା ।

କେତେବେଳେ ବା ସାଜିଛି ଅଭିସାରିକା ।

କୁଟୀଳ ଭ୍ରୂକୁଟୀରେ ଭସାଇ ନେଇଛି ଜାତି, କୁଳ, ସମାଜ ଓ ପୁରପଲ୍ଲୀ ।

ଏବେ ଉତ୍କଳର ନବରୂପ ଦେଖିବାକୁ ଆକାଂକ୍ଷିତା ।

ବର୍ତ୍ତମାନ ଉତ୍କଳରେ ମଧ୍ୟାହ୍ନ ସୂର୍ଯ୍ୟର ପ୍ରଚଣ୍ଡ କିରଣ ।

ଗଜପତି ମୁକୁନ୍ଦଦେବ ଉତ୍କଳ ଆକାଶରେ ଦିନକର କରଣଶ୍ରେଣି ବିକୀରଣ କରୁଛନ୍ତି । ମୋଗଲ ସମ୍ରାଟ ମହାରାଜାଧିରାଜ ହିନ୍ଦୁସ୍ଥାନର ମାଲିକ ମହାମହିମ ଆକବର ଉତ୍କଳୀୟ ବିଶାଳବାହିନୀର ଆଶ୍ରୟପ୍ରାର୍ଥୀ । ମୁକୁନ୍ଦଦେବ ତାଙ୍କ ବନ୍ଧୁତ୍ୱବଳରେ ଗ୍ରହଣ କରି ମୁସଲମାନ ଆକ୍ରମଣରୁ ରକ୍ଷା କରିଛନ୍ତି ।

ସମଗ୍ର ଭାରତରେ ଶାନ୍ତି ଫେରିଆସିଛି । ଜୟ 'ଗଜପତି' ଶବ୍ଦରେ ଉତ୍କଳଗଗନ ମୁଖରିତ । ରାଜ୍ୟରେ ଚିରଶାନ୍ତି ଓ ଶୃଙ୍ଖଳା ବିରାଜମାନ । କେବଳ ରାଜମାତାଙ୍କର ଏକମାତ୍ର ଇଚ୍ଛା ଅପୂରଣ ରହିଛି—

"ପବିତ୍ର ଜାହ୍ନବୀ ସହିତ ଉତ୍କଳ ଜାହ୍ନବୀଙ୍କର ସମ୍ମିଶ୍ରଣ ।"

ଭଗୀରଥଙ୍କ ପରି ଦିନକର ତପସ୍ୟାରେ ଦେବୀ ସୁରଧୁନୀଙ୍କୁ ସନ୍ତୁଷ୍ଟ କରି ଉତ୍କଳ ଭୂମିରେ ତାଙ୍କର ପୁଣ୍ୟସଲିଳ ପ୍ରବାହିତ କରିବାକୁ ମୁକୁନ୍ଦଦେବ ଦୃଢ଼ପ୍ରତିଜ୍ଞ ।

ସେ ଆନନ୍ଦ ସମ୍ବାଦ ବହନ କରି ମହାନଦୀ ହୋଇଉଠିଛି ମୁଖରିତା । କଳକଳ ତାନରେ ଗାଇଚାଲିଛି ସୁଲଳିତ ସଙ୍ଗୀତ ।

ସମୟ ଗୋଧୂଳି ।

ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗର ଗୋଟିଏ ଦିବସ ।

ସୂର୍ଯ୍ୟ ଅସ୍ତ ଯାଉଛନ୍ତି କପିଳାସ ପାହାଡ଼ର ପଶ୍ଚାଦ୍‌ଭାଗରେ । ପଶ୍ଚିମ ଆକାଶ ଅବିରବର୍ଣ୍ଣ । କିଂଶୁକ ପଳାଶର ନୟନରମ୍ୟ ଦ୍ୟୁତି ସହିତ ସୂର୍ଯ୍ୟଙ୍କର ଲାଲ କିରଣ ମିଶିଯାଇଛି । ଦାବାନଳର ତପ୍ତ ପବନ ବହି ଆଣୁଛି ସମୀରଣ । ପ୍ରଚଣ୍ଡ ନିଦାଘର କିରଣଜାଲରେ ତରୁ-ବ୍ରତତୀ ମ୍ଳାନପ୍ରଭ ।

ପୂର୍ବ ଆକାଶରେ ତାରାଟିଏ ଦେଖାଦେଲା । ହରଗୌରୀଙ୍କର ମିଳନ ସମୟ ଜାଣି ନରନାରୀଗଣ ଭକ୍ତି ସହକାରେ ପ୍ରଣାମ କଲେ । ଦିବସର କାର୍ଯ୍ୟ ସମାପ୍ତ ହେଲା ।

ନରାଜ ପାହାଡ଼ର ଶିଖରଦେଶରୁ ବୌଦ୍ଧ ଶ୍ରମଣମାନଙ୍କର ମଙ୍ଗଳମନ୍ତ୍ର ଭାସିଆସିଲା—

"ବୁଦ୍ଧଂ ଶରଣଂ ଗଚ୍ଛାମି"

ପକ୍ଷୀଟିଏ ଉଦାସ କରୁଣ ସ୍ୱରରେ କାକଳୀ ତୋଳି ନଦୀକୂଳସ୍ଥିତ କୁଳାୟ ଅଭିମୁଖେ ଆଗମନ କଲା । ମୁହୂର୍ତ୍ତିକରେ ଦିବସର ସମସ୍ତ କୋଳାହଳ ସ୍ତିମିତ

ହୋଇଗଲା । ମାତ୍ର ଜଣେ ଯୁବକ କେବଳ ସେଥିରୁ ବ୍ୟତିକ୍ରମ ।

ନଗ୍ରଜ ପାହାଡର ପାଦଦେଶରେ ସେ ଗଭୀର ଧ୍ୟାନମଗ୍ନ । ପାଖରେ ରଙ୍ଗତୂଳୀ ଏବଂ ଭୂର୍ଜପତ୍ର । ତହିଁରେ ସୂର୍ଯ୍ୟାସ୍ତର ଏକ ରମଣୀୟ ଦୃଶ୍ୟ ।

ଯୁବକଟି ବାମ କରପୃଷ୍ଠରେ ମୁଖମଣ୍ଡଳ ନ୍ୟସ୍ତ କରି ଊର୍ଦ୍ଧ୍ୱକୁ ଚାହିଁଛି । କଣ ସେ ଭାବନା କରୁଛି, ତାହା କେବଳ ସେହି ଜାଣେ । ପରିଧେୟ ଏକ କୌଶେୟ ବସ୍ତ୍ର—ସ୍କନ୍ଧରେ ଉତ୍ତରୀୟ—ସବଳ ଓ ସ୍ୱାସ୍ଥ୍ୟପୂର୍ଣ୍ଣ ଶରୀର ।

ସହସା ପଶ୍ଚାଦ୍‌ଭାଗରେ ଏକ ଭୟଙ୍କର ଶବ୍ଦ ହେଲା । ଯୁବକଟିର ଧ୍ୟାନ ଭାଙ୍ଗିଗଲା । ସେ ଚମକିପଡ଼ି ପଛକୁ ଫେରି ଚାହିଁ ବିସ୍ମୟାଭିଭୂତ ହୋଇପଡ଼ିଲା ।

ମହାବଳ ବ୍ୟାଘ୍ରଟିଏ ମସ୍ତକ ଉଠାଇ ତା ଉପରକୁ ଝାମ୍ପ ଦେଉଥିବାବେଳେ କେଉଁଠୁ ଏକ ଶର ଆସି ବ୍ୟାଘ୍ରର ମସ୍ତକ ଭେଦ କଲା ।

ଯୁବକଟି ବସିବା ସ୍ଥାନରୁ ଉଠି ଚତୁର୍ଦ୍ଦିଗକୁ ଚାହିଁଲା । ମାତ୍ର କିଛି ଦେଖିବାକୁ ପାଇଲା ନାହିଁ । ବ୍ୟାଘ୍ରଟି ମୃତ୍ୟୁଯନ୍ତ୍ରଣାରେ ଅସ୍ଥିର । ଯୁବକଟି ଧୀର ପଦକ୍ଷେପରେ ତା ନିକଟକୁ ଗଲା । ଦେଖିଲା—ବ୍ୟାଘ୍ରର ବକ୍ଷ ଏବଂ ମସ୍ତକରେ ଦୁଇଟି ଶର ବିଦ୍ଧ ହୋଇଛି । ବୋଧହୁଏ ପ୍ରଥମ ଶରର ଆଘାତ ପାଇ ବ୍ୟାଘ୍ରଟି ଗର୍ଜ୍ଜନ କରିଉଠିଥିଲା । ତା ପରେ ନିଜର ସମସ୍ତ ଶକ୍ତି ପ୍ରୟୋଗ କରି ଦ୍ୱିତୀୟଥର ଆକ୍ରମଣ କରିବାବେଳକୁ ଆଉ ଗୋଟିଏ ଶର ଆସି ତାର ମସ୍ତକ ଭେଦ କଲା । ଯୁବକ ଚତୁର୍ଦ୍ଦିଗକୁ ନିରୀକ୍ଷଣ କଲା । ମାତ୍ର ତାର ଭାବନା ଶେଷ ନ ହେଉଣୁ ଜଣେ ତରୁଣୀ ଅଶ୍ୱାରୋହଣ କରି ସେଠାରେ ଉପସ୍ଥିତ ହେଲେ । ତରୁଣୀଙ୍କ ହସ୍ତରେ ଧନୁଃଶର—କଟୀରେ ତରବାରି । ଲାବଣ୍ୟ ବିଜଡ଼ିତ ତନୁରେ ଯୌବନ ଶ୍ରୀ ଢଳଢଳ ।

ଲାସ୍ୟମୟୀ—ତନ୍ୱୀ-ସୁକୁମାରୀ ।

ମସ୍ତକରେ ମୃଗମଦ କସ୍ତୁରୀର ବିନ୍ଦୁ—ଢଳଢଳ ଚକ୍ଷୁ ଦୁଇଟିରେ ବିଶ୍ୱ ବିମୋହନ ଶକ୍ତି । ଦୁଇ ହସ୍ତରେ ଦୁଇଟି ସ୍ୱର୍ଣ୍ଣବଳୟ ।

ଅନନ୍ତ ଆକାଶ କୋଳରେ ଦିକ୍‌ମେଖଳାର ସୌନ୍ଦର୍ଯ୍ୟ ଭଳି ଆୟତ ଚକ୍ଷୁ ଯୁଗଳରେ କଜ୍ଜ୍ୱଳର ଗାର । ଚମ୍ପକକଳିକା ସଦୃଶ କରାଙ୍ଗୁଳି । ପକ୍ୱବିମ୍ବଜିଣା ଓଷ୍ଠ, ଆଜାନୁଲମ୍ବିତ ବେଣୀ ଯୁଗଳ । ମନେହୁଏ ସେ କୁମାରୀ ।

ମୋଟଉପରେ ତରୁଣୀଟି ସମସ୍ତ ସୌନ୍ଦର୍ଯ୍ୟର ଆଧାର । ଯୁବକଟି ମୁଗ୍ଧ ଦୃଷ୍ଟିରେ ଚାହିଁରହିଲା ତରୁଣୀଆଡ଼େ ।

ତରୁଣୀ ଯୁବକଙ୍କ ଆପାଦମସ୍ତକ ଥରେ ଦୃଷ୍ଟି ବୁଲାଇ ନେଇ ପାଖରେ ଥିବା ଭୂର୍ଜପତ୍ରକୁ ନିରୀକ୍ଷଣ କଲେ ।

ଯୁବକ ବାକ୍‌ଶକ୍ତିରହିତ ।

ତରୁଣୀ ପ୍ରଥମେ କଥା ଆରମ୍ଭ କଲେ । ପ୍ରଶ୍ନ କଲେ—ମହାଶୟଙ୍କ ପରିଚୟ ପାଇପାରେ କି ?

ଯୁବକଙ୍କ ଓଷ୍ଠ ଦୁଇଟି କମ୍ପିତ୍ ଥରଉଠିଲା । ବୋଧହୁଏ ସେ ସମ୍ବିତ୍ ଫେରିପାଇଲେ ।

ତରୁଣୀଙ୍କ ଓଷ୍ଠପୁଟରେ କ୍ଷୀଣ ହାସ୍ୟରେଖା ଦେଖାଦେଇ ମୁହୂର୍ତ୍ତିକରେ ମିଳାଇଗଲା ।

ଯୁବକ କହିଲେ—କିଛି ପଚାରୁଥିଲେ ?

—ହଁ, ଆପଣଙ୍କ ପରିଚୟ ପାଇପାରେ କି ?

ଯୁବକ ଉତ୍ତର ଦେଲେ—ମୁଁ ଜଣେ ଚିତ୍ରକର ।

କଳହାସ୍ୟ ସହକାରେ ତରୁଣୀ କହିଲେ—ଆପଣଙ୍କ ବେଶଭୂଷା ଏବଂ ରଙ୍ଗତୂଳୀରୁ ତାହା ତ ବୁଝାପଡ଼ୁଛି । ମାତ୍ର ଆପଣଙ୍କ ନାମ, ନିବାସ ଓ ବ୍ୟବସାୟ ପ୍ରଭୃତିର କିଛି ପରିଚୟ ଅଛି ତ ?

ଯୁବକଟି ଏଥର ନ ହସି ରହିପାରିଲେ ନାହିଁ । ତରୁଣୀଙ୍କ ପ୍ରଶ୍ନରେ ସେ ହସି ହସି ଅସ୍ଥିର ହୋଇପଡ଼ିଲେ ।

ତରୁଣୀ ବିସ୍ମିତ ହୋଇ ପ୍ରଶ୍ନ କଲେ—ଆପଣ ହସିଲେ ଯେ ?

ଯୁବକ ଉତ୍ତର ଦେଲେ—ତାହା ବ୍ୟତୀତ ଆଉ କଣ କରିବାର ଅଛି ?

ତରୁଣୀଙ୍କର ଭ୍ରୂ ଦୁଇଟି କୁଞ୍ଚିତ ହୋଇଉଠିଲା । ସେ ସ୍ୱଗତଃ ଛଳରେ ଉଚ୍ଚାରଣ କଲେ—ଏକାବେଳକେ ନାମଗୋତ୍ରହୀନ !

ଯୁବକ ସ୍ଥିର ହୋଇ ଉତ୍ତର ଦେଲେ—ନାଁ, ତାହା ଠିକ୍ ନୁହେଁ । ଅବଶ୍ୟ ନାମ ଗୋଟାଏ ଅଛି; ମାତ୍ର ନିବାସ ଅନନ୍ତ ଆକାଶ କୋଳରେ ଏବଂ ବ୍ୟବସାୟ ଉନ୍ମାଦଗିରି ।

ମାନେ—ତରୁଣୀଙ୍କର ବିସ୍ମୟବିହ୍ୱଳ ପ୍ରଶ୍ନ ।

ଯୁବକ କହିଲେ, "ଏଣେତେଣେ ବୁଲି ଚିତ୍ର ଆଙ୍କିବା ଏବଂ ତାହା କୌଣସି ସ୍ଥାନରେ ବିକି କରି ଉଦର ପୋଷଣ କରିବା—ଏହା ଉନ୍ମାଦଗିରି ନ ହୋଇ

ଆଉ କିଏ ହୋଇପାରେ ?"

ତରୁଣୀ ପ୍ରତିବାଦ କରିଉଠିଲେ—"ନାଁ, ନାଁ ଏ ଉନ୍ମାଦଗିରି ହେବ କାହିଁକି ?" ତା ପରେ ଯୁବକଙ୍କ କୌଣସି ଉତ୍ତରର ଅପେକ୍ଷା ନ ରଖି ଚିତ୍ରଟି ଭଲ ଭାବରେ ନିରୀକ୍ଷଣ କରୁଁ କରୁଁ ତାକୁ ଉଠାଇନେଇ କହିଲେ—"ବେଶ୍ ତ, ସୁନ୍ଦର ହୋଇଛି ।" ତରୁଣୀ ଆଉ କିଛି କହିପାରିଲେ ନାହିଁ । ଚିତ୍ରଟି ଉଠାଇନେବା ସମୟରେ ମୋହନର ହସ୍ତ ସହିତ ତାଙ୍କ ହସ୍ତର ସ୍ପର୍ଶ ଲାଗିଗଲା । ତହିଁରେ ସାରା ଶରୀରରେ ବିଦ୍ୟୁତର ଚମକ ଖେଳିଗଲା ପରି ବୋଧହେଲା । ତରୁଣୀଙ୍କ ଅକ୍ଷତ ହୃଦୟରେ ଲଗିଲା—ପ୍ରେମାସ୍ତ୍ରର ପ୍ରଥମ ସ୍ପର୍ଶ ।

ହଠାତ୍ ଏହି ସମୟରେ ଦୂରରୁ ଘନଘନ ଶିଂଘାନାଦ ହେଲା । ତରୁଣୀ ଚିତ୍ରଟି ତଳେ ଥୋଇ ନିଜ କଟିରୁ ଗଣ୍ଡଲ ଶିଙ୍ଗର ଶିଂଘାଟିଏ ବାହାର କରି ବଜାଇଦେଲେ ଏବଂ ତରବରରେ ଘୋଟକ ନିକଟକୁ ଯାଉଁ ଯାଉଁ କହିଲେ— ଆପଣଙ୍କ ନାମ କହିଲେ ନାହିଁ ଯେ ?

ଯୁବକ ଉତ୍ତର ଦେଲେ—ମୋହନକୁମାର । ମାତ୍ର ଆପଣଙ୍କ······

—ମୁଁ ଅରଣ୍ୟଗଡ଼ ସର୍ଦ୍ଦାରଙ୍କ କନ୍ୟା କୃଷ୍ଣା । ସଖିମାନଙ୍କ ସହ ମୃଗୟାକୁ ଆସିଥିଲି । ଅଦୂରରେ ଆମର ରାଉଟୀ ପଡ଼ିଛି । ଶିକାର କରିବା ଉଦ୍ଦେଶ୍ୟରେ ଅରଣ୍ୟରେ ବୁଲୁ ବୁଲୁ ଆପଣଙ୍କୁ ବ୍ୟାଘ୍ରଟିଏ ଆକ୍ରମଣ କରିବାକୁ ଉଦ୍ୟତ ହେଉଥିବା ଦେଖି ଦୂରରୁ ଶର ନିକ୍ଷେପ କଲି ।

ପୁଣି ଥରେ ଶିଂଘାନାଦ ହେଲା । ତରୁଣୀ କହିଲେ—ସଖିମାନେ ମୋତେ ଖୋଜି ଖୋଜି ବ୍ୟସ୍ତ ହୋଇପଡ଼ିଲେଣି । ଏଣେ ଅନ୍ଧାର ମଧ୍ୟ ମାଡ଼ି ଆସିଲାଣି । ମୁଁ ବର୍ତ୍ତମାନ ଯାଉଛି ।

ତରୁଣୀ ନିଜର ସୁଶିକ୍ଷିତ ଅଶ୍ୱ ଉପରକୁ ଲମ୍ଫ ଦେଲେ । ଘୋଟକ ଚାଳନା କରିବା ପୂର୍ବରୁ ଯୁବକଙ୍କୁ ଉଦ୍ଦେଶ୍ୟ କରି କହିଲେ—ଯଦି କେବେ ସମୟ ପାଆନ୍ତି, ତେବେ ଅରଣ୍ୟଗଡ଼କୁ ଗଲେ ବାଧିତ ହେବି । ବିଦାୟ !

ତରୁଣୀ ଅଶ୍ୱକୁ କଶାଘାତ କଲେ । ବିଦ୍ୟୁତ୍‌ବେଗରେ ଅଶ୍ୱଟି ଗୁଳ୍ମଅନ୍ଧାରୀ ବକ୍ଷରେ କେଉଁଆଡ଼େ ବିଲୀନ ହୋଇଗଲା ।

ମୋହନସୁନ୍ଦର ନିଜର ରଙ୍ଗତୂଳୀ ଧରି ଲୋକାଳୟ ଅଭିମୁଖେ ଗମନ କଲେ ।

କେତେ ପ୍ରଭାତ ଆସେ କନ୍ୟାପରି—ନବ ଜୀବନର ଆଶା ଓ ଆକାଂକ୍ଷା ନେଇ, ଉନ୍ମାଦିନୀ ଭୈରବୀ ସାଜି ଜାସ୍ବୀ ରୂପେ ମଧ୍ୟାହ୍ନ ଆସେ ନିଃଶବ୍ଦରେ—କର୍ତ୍ତବ୍ୟନିଷ୍ଠା ଓ ପରିଶ୍ରମର ଆହ୍ୱାନ ଜଣାଇ; କେତେ ସନ୍ଧ୍ୟା ଆସେ ଜନନୀରୂପେ—ଶାନ୍ତି ଓ ଆନନ୍ଦର ବାଣୀ ଶୁଣାଇ—ମାତ୍ର ମୋହନଙ୍କ ଅନ୍ତଃସ୍ଥଳରେ ଧ୍ୱନିତ ହୁଏ ସେହି ଗୋଟିଏ ସ୍ୱର, କର୍ଣ୍ଣରେ ପ୍ରତିଧ୍ୱନି ତୋଳେ ସେହି ଗୋଟିଏ ପଦଶବ୍ଦ—ଯାହା ପାଇଁ ସେ ଘରଦ୍ୱାର ଓ ନିରାପଦ ଆଶ୍ରୟ ପରିତ୍ୟାଗ କରି ଧାଇଁ ଆସିଛି ସୁଦୂର ଦକ୍ଷିଣରୁ ଏହି ମହାନଦୀ କୂଳକୁ ।

କେବଳ ଆଶାରେ ଆଶାରେ ଦିନ ବିତେ, କୌଣସି ସନ୍ଧାନ ମିଳେନାହିଁ । ସେ ମୂର୍ତ୍ତି ନିକଟରେ କୃଷ୍ଣାର ଚିହ୍ନ କେବଳ ସମୁଦ୍ର ବେଳା ଭୂମିରେ ବାଲିଗାର ପରି । ସେ ତାର ଅତି ଆପଣାର । ତାକୁ ହରାଇ ମୋହନର ଜୀବନ ଆଜି ଛନ୍ଦ ହୀନ ।

ବେଳେ ବେଳେ ମନରେ ଅଭିମାନ ଆସେ । ମୋହନ ରଙ୍ଗ ତୂଳି ଥୋଇ ଦେଇ ଅନନ୍ତ ଉଦାର ନୀଳାକାଶ ବକ୍ଷକୁ ଏକ ଲୟରେ ଚାହିଁ ରହେ ।

ଜ୍ୱରାକ୍ରାନ୍ତ ରୋଗୀ ଶୀତଦିନ ଦ୍ୱିପ୍ରହରରେ ଅଧାଖରା ଅଧାଛାଇରେ ଶୋଇ ବିସ୍ତୃତ ଆକାଶ ବକ୍ଷରେ ଅପରୂପ ସୌନ୍ଦର୍ଯ୍ୟ ନିରୀକ୍ଷଣ କଲାପରି ସେ ଆତ୍ମବିସ୍ମୃତ ଅବସ୍ଥାରେ ଉପରକୁ ଚାହିଁ ରହେ ।

ଦେଖେ—

କେତେବେଳେ ପକ୍ଷୀଟିଏ ଡେଣା ହଲାଇ ହଲାଇ ଉଡ଼ିଯାଏ ତ, କେତେ-ବେଳେ ଧବଳ ମେଘଖଣ୍ଡମାନ ପବନ ଦୋଳାରେ ଭାସିଯାଏ । ନିର୍ଜ୍ଜନ ପ୍ରାନ୍ତରରେ କୌଣସି ଏକ ବୃକ୍ଷମୂଳରେ ବସି ବସି ଗଭୀର ଚିନ୍ତାରେ ବୁଡ଼ି ରହିବାକୁ ତାକୁ ଭଲ ଲାଗେ ।

ତୈଳ ବିହୀନ ରୁକ୍ଷ କେଶ ଗୁଡ଼ିକୁ ଶିରି ଶିରି ପବନ ଉଡ଼ାଇ ଆଣି ମୁହଁରେ ବିଞ୍ଛିଦିଏ । ଡାକିଦିଏ ଅତୀତ—ଡାକିଦିଏ ଭବିଷ୍ୟତ । ମୋହନ ବର୍ତ୍ତମାନକୁ ପୁଣି ଭୁଲିଯିବାକୁ ଚାହେଁ ।

ଅବୋଧ ଶିଶୁର ମସ୍ତକରେ ହସ୍ତ ଚାଳନା କରି ମା ଯେପରି ଆଶ୍ୱାସନାର ବାଣୀ ଶୁଣାଏ ଏବଂ ଶିଶୁ ମାତାର ବକ୍ଷରେ ମସ୍ତକ ରଖି ପରମ ନିଶ୍ଚିନ୍ତରେ ସମସ୍ତ ଜଡ଼ତା ଓ ହୀନତା ପରିହାର କରେ; ମୋହନ ସେହିପରି ନିଜକୁ ପ୍ରକୃତିମାତା କୋଳରେ ସମର୍ପଣ କରିଦିଏ । ଅଳସ ଆଖିପତା ଦୁଇଟି ଆପେ ଆପେ ବୁଜି ହୋଇଆସେ । ବୃକ୍ଷର ଗଣ୍ଡିରେ ସେ ମସ୍ତକ ରଖେ । ଧୀରେ ଧୀରେ ସମସ୍ତ ଶରୀରକୁ ବେଷ୍ଟନ କରି ତନ୍ଦ୍ରା ମାଡ଼ିଆସେ । ଅବଚେତନ ମନ ତାର ବୁଲିବୁଲେ ସ୍ୱପ୍ନରାଜ୍ୟରେ ।

ମୋହନ ଫେରିଚାହେଁ ଅତୀତକୁ ।

ଅରଣ୍ୟଗଡ଼ର କୁମାରୀ କୃଷ୍ଣା ଏବଂ ତାର ଚିର ପରିଚିତା ଲଳିତା ।

ଦୁହିଁଙ୍କର ପ୍ରକୃତି ସମ୍ପୂର୍ଣ୍ଣ ବିପରୀତ ।

କୃଷ୍ଣା କର୍ମଦେବୀର ପ୍ରେରିତା ଏକ ଜାଗ୍ରତ ପ୍ରେରଣା । ମଧ୍ୟାହ୍ନ ସୂର୍ଯ୍ୟର ଦୀପ୍ତିରେ ସେ ଦୀପ୍ତିମୟୀ । ପାଖରେ ଥିଲେ କୌଣସି କର୍ମରେ ଅବସାଦ ଆସିବ ନାହିଁ ।

ମାତ୍ର ଲଳିତା......

ଉଦୟାଚଳରେ ଅସ୍ତଗାମୀ ନିଶା ଶେଷର ଜ୍ୟୋତ୍ସ୍ନା । ସେ ପାଖରେ ଥିଲେ ପରମ ଶାନ୍ତିରେ ଚକ୍ଷୁ ଦୁଇଟି ମୁଦ୍ରିତ ହୋଇଯାଏ—ନିଜକୁ ସର୍ବତୋଭାବରେ ସମର୍ପଣ କରିଦେବାର ପ୍ରୟାସ ଜାଗେ ।

କେହି କର୍ମମୁଖର ଦିବସର ପ୍ରେରଣାରେ ନିଶା ଶେଷର ଜ୍ୟୋତ୍ସ୍ନାକୁ ପରିତ୍ୟାଗ କରେ ନାହିଁ କି ଜ୍ୟୋତ୍ସ୍ନାର ଲୋଭରେ କେହି ଦିବାକରଙ୍କ ଆଗମନକୁ ଉପେକ୍ଷା କରେ ନାହିଁ ।

ବସ୍ତୁତଃ ପରସ୍ପରର ସାନ୍ନିଧ ଅନିଷ୍ଟ ।

ଦିବସ ଆସେ ନିଶା ଶେଷରେ—ପୁଣି ରାତି ଆସେ ବିବସ୍ୱାନଙ୍କ ଅସ୍ତାଚଳ ଗମନରେ—

ଠିକ୍ ଯେପରି ଜୀବନର ପରିଣତି ମୃତ୍ୟୁରେ ।

ଏହି ମୃତ୍ୟୁ ଜୀବନର ସାଧନାକୁ ନିଃଶେଷ କରେ କି ତାକୁ ବୃହତ୍ତର ଓ ମହତ୍ତର କ୍ଷେତ୍ରରେ ପ୍ରତିଷ୍ଠା ଦିଏ, ତାହା ଆଜି ପର୍ଯ୍ୟନ୍ତ ମନୁଷ୍ୟ ଜ୍ଞାନର ଅତୀତ ।

ରାତ୍ରି ଆସେ, ଚାଲିଯାଏ । ଅନ୍ଧାର ଲୋପ ପାଏ, ଆଲୋକ ଫୁଟିଉଠେ । ଆଲୋକ ଓ ଅନ୍ଧକାରର ବୈଚିତ୍ର୍ୟରେ ଗଢ଼ା ଏହି ସଂସାର ।

ଏହିପରି କେତେ ରାତ୍ରି ଆସିବ, ଦିବସ ଚାଲିଯିବ । କେତେବେଳେ

ସାମୁଦ୍ରିକ ଝଡ଼ ଉଠିବ, କେତେବେଳେ ବା ତରଙ୍ଗ ଶାନ୍ତ ରହିବ—ମାତ୍ର ଜଳାଣିରେ ଭାସିଯିବାର ଛେଦ ପଡ଼ିବ ନାହିଁ । ପରିସମାପ୍ତି ଘଟିବ ସେହିଠାରେ—ଯେଉଁଠାରେ ଖୋଜିବା ଓ ପାଇବା ଏକ ହୋଇଯିବ ।

ସେ କେତେଦୂର·········?

"ଅୟମାତ୍ମା ସର୍ବେଷାଂ ଭୂତାନାଂ ମଧୁ
ଅସ୍ୟାତ୍ମନଃ ସର୍ବାଣି ଭୂତାନି ମଧୁ
ଯଶ୍ଚାୟମସ୍ମିନ୍ନାତ୍ମନି ତେଜୋମୟୋଽମୃତମୟଃ ପୁରୁଷୋ
ଯଶ୍ଚାୟମାତ୍ମା ତେଜୋମୟୋଽମୃତମୟଃ ପୁରୁଷୋଽୟମେବ
ସୋଽୟମାତ୍ମା ଇଦମମୃତମିଦଂ ବ୍ରହ୍ମେଦଂ ସର୍ବମ୍ ।"

ଏ ସଂସାରର ପ୍ରତ୍ୟେକ ବସ୍ତୁର ପାରସ୍ପରିକ ମଧୁର ସମ୍ବନ୍ଧର କାରଣ ହେଉଛି—ଏଥିରେ ବିଦ୍ୟମାନ ବା ଭାସମାନ ତେଜୋମୟ ତଥା ଅମୃତମୟ ଆତ୍ମା ବିଶ୍ୱର ସବୁ ବସ୍ତୁର ଏକ ବା ଅନ୍ୟ ଉପରେ ନିର୍ଭର କରେ ।

ମହର୍ଷି ଯାଜ୍ଞବଲ୍କ୍ୟ ମୈତ୍ରେୟୀଙ୍କୁ କହିଛନ୍ତି—ଆତ୍ମା ସ୍ୱୟଂ ସବୁଠାରୁ ପ୍ରିୟ । ପତି, ଜାୟା, ପୁତ୍ର, ବିତ୍ତ, ବ୍ରହ୍ମତେଜ, କ୍ଷାତ୍ରତେଜ, ଦେବ, ଭୂତଜାତ ଆଦି ନିଜ ଆତ୍ମାପାଇଁ ପ୍ରିୟ । ଅତଏବ ଆତ୍ମାକୁ ଦର୍ଶନ କରିବା ପ୍ରଥମ କାର୍ଯ୍ୟ । ତାପରେ ତାକୁ ଶ୍ରବଣ, ମନନ, ନିଦିଧ୍ୟାସନ କରିବା ଆବଶ୍ୟକ । ବୀଣାକୁ ହସ୍ତଗତ କରିପାରିଲେ ଯେପରି ତାର ଧ୍ୱନି ବଶୀଭୂତ ହୁଏ, ସେହିପରି ଆତ୍ମାକୁ ତୃପ୍ତି କଲେ ସକଳ ପ୍ରାପ୍ତି ହୁଏ ।

ମାତ୍ର ମନରେ ପ୍ରଶ୍ନ ଉଠେ—ସେ କିଏ ତାହା ଲଭ କରିପାରିଛି ??

ହୃଦୟର ନିଭୃତକନ୍ଦରରୁ ଉତ୍ତର ଆସେ—ନାଁ, ନାଁ,···! ଆତ୍ମା ଓ ପରମାତ୍ମା ଦୁଇଟିକୁ ସେ ହରାଇ ବସିଛି ।

ଏ ଦୁନିଆ ଏପରି ଉପାଦାନରେ ଗଠିତ ଯେ ଏଠାରେ ଆତ୍ମାକୁ ଜୟକରି ପରମାତ୍ମାକୁ ଲାଭ କରିବାକୁ ହେଲେ ମନୁଷ୍ୟକୁ ହରାଇବାକୁ ପଡ଼େ । ପୁଣି ମନୁଷ୍ୟକୁ ପାଇବାକୁ ଚାହିଁଲେ ପରମାତ୍ମାକୁ ହରାଇବାକୁ ପଡ଼େ ।

"ଦୃଷ୍ଟି ମୋର ଯାଏ ଆକାଶ ସୀମାକୁ
'ତା ପରେ ଶୂନ୍ୟଭୁବନ
ତାହା ପରପାରେ ଭାଗ୍ୟଦେବୀ ଘର
ଖୋଜି ପାଇବ କେ ଜନ ।'

ଭାଗ୍ୟ ହିଁ ଏ ସଂସାରରେ ସବୁଠାରୁ ବେଶୀ ବଳବାନ । ତାରି ଉଦ୍ଦାମ ପ୍ରବାହରେ ମନୁଷ୍ୟ ନିଜ ଇଚ୍ଛା ବିରୁଦ୍ଧରେ ଭାସି ଚାଲେ, କେତେବେଳେ ବା କାଳର ଝଞ୍ଜା ତାକୁ ବିଧ୍ୱସ୍ତ କରିତୋଳେ ।

ଝଡ଼ ଉଠେ ଆକାଶରେ, ପୃଥିବୀରେ ଏବଂ ମନୁଷ୍ୟର ଜୀବନରେ । ଝଡ଼ ଉଠିବ ଏ ଜଣାକଥା, ଚିରନ୍ତନ ସତ୍ୟକଥା । ଝଡ଼ ନ ଉଠିବା ବରଂ ଅସ୍ୱାଭାବିକ ।

ଏହିପରି ତା ଜୀବନରେ ମଧ୍ୟ ଦିନେ ଝଡ଼ ଉଠିଥିଲା ।

ସେ ଆଜିକି ଚାରିବର୍ଷ ତଳର କଥା ।

ମହାକାଳର ଗତିପଥରେ ଏ ଚାରିଟି ବର୍ଷ ଅବଶ୍ୟ ଅତି ତୁଚ୍ଛ ସମୟ । କିନ୍ତୁ ମନୁଷ୍ୟ ଜୀବନରେ ତାହା ଅନେକ ଅଂଶ ଅଧିକାର କରିଥାଏ । ଅନେକ ଭଙ୍ଗା, ଗଢ଼ା, ବଞ୍ଚିବା, ମରିବାର ଖେଳା—ଅନେକ ଜୀବନ ନାଟକର ପାଲି ଏ ମଧ୍ୟରେ ଆରମ୍ଭ ହୋଇଯାଏ; ଶେଷ ବି ହୋଇଯାଏ, ରହେ କେବଳ ସ୍ମୃତି । ତାହା ସମୟେ ସମୟେ ମାନବକୁ ଅସ୍ଥିର କରି ତୋଳେ ।

ଭୁଲି ହୁଏନା

ନିରନ୍ତର ପ୍ରାଣକୁ ଉହ୍ଲଳବିକଳ କରି ବେଦନାର ଦୀର୍ଘଶ୍ୱାସ ଅଜାଡ଼ି ଦିଏ । ଅସ୍ଥି, ପିଞ୍ଜରା, ମେଦ, ମାଂସ ସବୁ ଯେପରି କୁରି କୁରି ନିଃଶେଷ କରିଦିଏ ।

ଓଃ ସ୍ମୃତିର ଅଗ୍ନି କି ନିର୍ମମ କି ଭୟଙ୍କର !!

ତାର ଦାହ ଅନିର୍ବାଣ । ସେ ଦହନ ଜ୍ୱାଳା କୌଣସି ପ୍ରଲେପରେ ଶୀତଳ ହୁଏ ନାହିଁ । ମୋହନ ଗୁଣୁ ଗୁଣୁ ସ୍ୱରରେ ସଙ୍ଗୀତଟିଏ ଗାନକଲା । ତାର ସାର ମର୍ମ ହେଉଛି—

"ପ୍ରଥମ ବସନ୍ତ ସ୍ପର୍ଶରେ ଫୁଲଟିଏ ଗଛରେ ଫୁଟିଥିଲା । ଭ୍ରମରକୁ ତାହା ଅଜ୍ଞାତ । ମୃଦୁ ସମୀରଣରେ ଯେତେବେଳେ ତାର ମଧୁ ଗନ୍ଧ ଭାସି ବୁଲିଲା, ସେତେବେଳେ ପାଗଳ ଅଳୀ ମଧୁ ଲୁଟିବା ପାଇଁ ଧାଇଁ ଆସିଲା ।

ମାତ୍ର ହାୟ.........

ପୁଷ୍ପ ସେତେବେଳକୁ ମଳିନ । ପାଖୁଡ଼ାଗୁଡ଼ିକ ଗୋଟି ଗୋଟି ଝଡ଼ି ପଡ଼ୁଛି ।

ଭ୍ରମର ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲା—ମୁଁ ଜାଣେ ତୁମେ ଦିନେ ଶୁଖିଯିବ, କାଳର ଆବର୍ତ୍ତନରେ ପାଖୁଡ଼ା ତୁମର ଝଡ଼ିଯିବ । ମାତ୍ର ଏତେଶୀଘ୍ର ଯେ ତାହା ଘଟିବ, ଏକଥା କଳ୍ପନା କରି ନ ଥିଲି । ତେଣୁ ଯନ୍ତ୍ରଣାକାତର ହୃଦୟରେ ସେହି ଝଡ଼ିବାର ସଙ୍ଗୀତ ଶୁଣି ଶୁଣି ମୁଁ ତୁମ ସ୍ମୃତିର ସ୍ୱପ୍ନରେ ଆଚ୍ଛନ୍ନ ହୋଇରହିଲି ।"



ଖ୍ରୀଷ୍ଟାବ୍ଦ ୧୫୭୪ ।

ଦକ୍ଷିଣ ଓଡ଼ିଶାର ରାଜଧାନୀ ରାଜମାହେନ୍ଦ୍ରୀ ଦୁର୍ଗର ଏକ ଅଂଶ ।

ସମୟ ଫାଲ୍‌ଗୁନର ଗୋଧୂଳି ।

ସୁରଭିତ ମଳୟ ପବନର ମୃଦୁ ପ୍ରବାହ ବହି ଚାଲିଛି ।

ଗଗନ ପବନ ଏବଂ ପୃଥିବୀର ସମସ୍ତ ସ୍ଥାନରେ ପ୍ରକୃତିର କମନୀୟ ଆଭାର ସ୍ପର୍ଶ ଲାଗିଛି । ଉଦ୍ୟାନ ଏବଂ ଅରଣ୍ୟର ଶ୍ୟାମ ସ୍ନିଗ୍ଧ ରୂପ-ଯୌବନରେ ଚଳଚଳ । ଅସ୍ତଗାମୀ ସୂର୍ଯ୍ୟର ରକ୍ତରାଗ ରଶ୍ମି ଚତୁର୍ଦ୍ଦିଗରେ ବିଞ୍ଚିହୋଇ ପଡ଼ୁଛି ।

ଆଜି ଶିବ ଚତୁର୍ଦ୍ଦଶୀ ।

ପୁଣ୍ୟତୋୟା ଗୋଦାବରୀ ହୋଇ ଉଠିଛି ଅଭିସାରିକା । କଳ କଳ ଛଳ ଛଳ ତାନରେ ସେ ସାଗର ସଙ୍ଗୀତ ଗାନ କରି ଧାଇଁ ଚାଲିଛି ପ୍ରିୟ ମିଳନ ଆଶାରେ । ଚନ୍ଦନ ବନରୁ ବାସ ଚୋରି କରି ମଳୟ ପବନ ବହି ଆସୁଛି । ବିରହିଣୀନାରୀ ପ୍ରିୟ ମିଳନ ସୁଖ ଚିନ୍ତାକରି ଶିହରିତ ହେଲା ପରି ମଳୟ ସମୀରଣ ଗୋଦାବରୀ ଜଳରେ ମୃଦୁକମ୍ପନ ଜାତକରି କ୍ଷୁଦ୍ର କ୍ଷୁଦ୍ର ଭଉଁରୀ ସୃଷ୍ଟି କରୁଛି । ସମୟେ ସମୟେ ଲହରୀ ଗୁଡ଼ିକ ଆସି କୂଳରେ ମୁଣ୍ଡ ପିଟି ଦେଉଛନ୍ତି ।

ସିଦ୍ଧେଶ୍ୱର ମହାଦେବଙ୍କ ମନ୍ଦିର ।

ମନ୍ଦିରଟି ଶ୍ୱେତ ମର୍ମର ପ୍ରସ୍ତରରେ ନିର୍ମିତ । ରାଜା ମହେନ୍ଦ୍ରଦେବ ଦକ୍ଷିଣ ଓଡ଼ିଶାର ରାଜଧାନୀ ରୂପେ ନଗରଟି ସ୍ଥାପନା କଲାବେଳେ ନଦୀକୂଳରେ ଏହି ମନ୍ଦିରଟି ନିର୍ମାଣ କରିଥିଲେ ।

କୃଷ୍ଣ ମୁଗୁନି ପ୍ରସ୍ତରରେ ନିର୍ମିତ ଶିବଲିଙ୍ଗ ।

ନଦୀକୂଳରେ ଥିବା ଏକ କ୍ଷୁଦ୍ର ପର୍ବତର ଉପରିଭାଗ ସମତଳ କରାଯାଇ ମନ୍ଦିରଟି ନିର୍ମାଣ କରାଯାଇଛି । ମନ୍ଦିରର ଚତ୍ୱରଟି ଲମ୍ବିଯାଇଛି ଗୋଦାବରୀର ବକ୍ଷ ଉପରକୁ ।

ଆଜି ମନ୍ଦିରରେ ଖୁବ୍ ଜନଗହଳି । ଦିଗମ୍ବର ମହାଦେବ ମହେଶ୍ୱର ସାଜରେ ସଜ୍ଜିତ । ବିଶ୍ୱର କଲ୍ୟାଣପାଇଁ ସେ ଶିବ ବା ମଙ୍ଗଳମୟ । ହଜାର ହଜାର ଭକ୍ତ, ଦର୍ଶକ, ଆର୍ତ୍ତ ଓ ପୁଣ୍ୟାର୍ଥିମାନଙ୍କ କୋଳାହଳରେ ମନ୍ଦିରର ନିର୍ଜୀବପ୍ରସ୍ତର ସଜୀବ ହୋଇ ଉଠିଛି ।

କ୍ରମେ ସନ୍ଧ୍ୟା ସମାଗତ ହେଲା । ଆକାଶ ଅଗଣାରେ ଅସଂଖ୍ୟ ତାରକାକୁସୁମ ଫୁଟି ଉଠିଲେ । ତାର ପ୍ରତିବିମ୍ବ ମନ୍ଥରଗାମିନୀ ଗୋଦାବରୀର ନୀଳ ନୀରରେ ପତିତ ହୋଇ ଲହରୀଦୋଳାରେ ଦୋଳି ଖେଳିଲା ।

ସିଦ୍ଧେଶ୍ୱରଙ୍କ ମନ୍ଦିରରୁ ଶଙ୍ଖ ଘଣ୍ଟା ଓ ମୃଦଙ୍ଗର ଆରତ୍ରିକ ଶବ୍ଦ ଭାସି ଆସିଲା । ଗବ୍ୟ ଘୃତର ମୃଦୁ ମଧୁ ସୌରଭ ଚତୁର୍ଦ୍ଦିଗ ଆମୋଦିତ କଲା ।

କୁଳ ଲଲନାଗଣ ପୂଜା ଡାଲାରେ ପ୍ରଦୀପ ସଜାଇ ଶିବ ଆରାଧନାରେ ବ୍ୟସ୍ତ ରହିଲେ । ମନ୍ଦିରର ଶୀର୍ଷ ଦେଶରେ ଅଭୟ ଆଲୋକ ଜଳି ଉଠିଲା । ଅସଂଖ୍ୟ ଦୀପ ତାରକାର ଆଲୋକରେ ମନ୍ଦିରର ଶ୍ୱେତଗାତ୍ର ପୌର୍ଣ୍ଣମାସୀର ଚନ୍ଦ୍ରପରି ପ୍ରତିଭାତ ହେଲା ।

ପ୍ରଥମ ପ୍ରହରର ପୂଜା ସମାପ୍ତ ହେଲା । ପୂଜକମାନେ ବିଲ୍ୱଦଳ ଏବଂ ପ୍ରସାଦ ଫୁଲ ଗୋଦାବରୀ ବକ୍ଷକୁ ନିକ୍ଷେପ କଲେ ।

ଗୋଦାବରୀ ହୋଇଉଠିଲା ଅନନ୍ୟା । ରାତ୍ର ପବନର ପ୍ରତିରୋଧରେ ଶୃଙ୍ଖଳ-ଜଳସ୍ରୋତର କଳ କଳ ଆନନ୍ଦ ଧ୍ୱନି । ହର୍ଷୋତ୍‌ଫୁଲ୍ଲ ଗୋଦାବରୀ ସମସ୍ତଙ୍କୁ ଆଶୀର୍ବାଦ ଦାନ କରି ଦେବାଧିଦେବଙ୍କର ପ୍ରିୟ ବିଲ୍ୱଦଳ ଏବଂ କୁସୁମରାଜି କୂଳର ପୁଣ୍ୟାର୍ଥୀମାନଙ୍କୁ ଅର୍ପଣ କଲା ।

କ୍ରମେ ବାଦ୍ୟନାଦ ପ୍ରଶମିତ ହେଲା । ଦର୍ଶକମାନେ ପ୍ରସାଦ ସେବନ କରି ସ୍ୱ ସ୍ୱ ଗୃହକୁ ପ୍ରତ୍ୟାଗମନ ପାଇଁ ପ୍ରସ୍ତୁତ ହେଲେ । ଭକ୍ତ, ଆର୍ତ୍ତ ଓ କରୁଣାର୍ଥୀମାନେ ଆଣ୍ଠୁମାଡ଼ି ବସି ଶିବଙ୍କ ପାଦପଦ୍ମରେ ମନୋନିବେଶ କଲେ ।

ସହସା ମନ୍ଦିରର ପାଦଦେଶରେ ଅଶ୍ୱକ୍ଷୁର ଶବ୍ଦ ଶୁଣାଗଲା । ଉପସ୍ଥିତ ଜନତା ମୁହୂର୍ତ୍ତିକ ପାଇଁ ଚଞ୍ଚଳିତ ହୋଇ ପଡ଼ିଲେ ମାତ୍ର ପରମୁହୂର୍ତ୍ତରେ ପାହାଡ଼ର ନିମ୍ନଦେଶରୁ ଭାସିଆସିଲା ସମ୍ମିଳିତ କଣ୍ଠରେ ଶିବ ପଞ୍ଚାକ୍ଷର ସ୍ତୋତ୍ର —

"ନାଗେନ୍ଦ୍ରହାରାୟ ତ୍ରିଲୋଚନାୟ
ଭସ୍ମାଙ୍ଗରାଗାୟ ମହେଶ୍ୱରାୟ
ନିତ୍ୟାୟ ଶୁଦ୍ଧାୟ ଦିଗମ୍ବରାୟ
ତସ୍ମୈ 'ନ'କାରାୟ ନମଃ ଶିବାୟ ।
ମନ୍ଦାକିନୀ-ସଲିଳଚନ୍ଦନଚର୍ଚ୍ଚିତାୟ
ନନ୍ଦୀଶ୍ୱର ପ୍ରମଥନାଥ ମହେଶ୍ୱରାୟ
ମନ୍ଦାରପୁଷ୍ପ-ବହୁପୁଷ୍ପସୁପୂଜିତାୟ
ତସ୍ମୈ 'ମ'କାରାୟ ନମଃ ଶିବାୟ ।"

ସମବେତ ଭକ୍ତ ମଣ୍ଡଳୀ ଭକ୍ତି ଗଦ୍‌ଗଦ ଚିତ୍ତରେ ପ୍ରତ୍ୟୁତ୍ତର ଦେଲେ—
ଶିବାୟ ଗୌରୀବଦନାବ୍ଜବୃନ୍ଦ
ସୂର୍ଯ୍ୟାୟ ଦକ୍ଷାଧ୍ୱରନାଶକାୟ
ଶ୍ରୀନୀଳକଣ୍ଠାୟ ବୃଷଧ୍ୱଜାୟ
ତସ୍ମୈ 'ଶି'କାରାୟ ନମଃ ଶିବାୟ ।

ଆଗନ୍ତୁକମାନେ ଜୀନ୍ ଖୋଲି ଅଶ୍ୱମାନଙ୍କୁ ଚରିବାକୁ ଛାଡ଼ି ଦେଲେ । ତାପରେ ପାହାଚ ଉଠି ମନ୍ଦିର ଉପରକୁ ଆସିଲେ ।

ସେମାନେ ସଂଖ୍ୟାରେ ପ୍ରାୟ କୋଡ଼ିଏ ଜଣ । ଲମ୍ବିତ **ଜଟାଜୂଟ,** ସର୍ବାଙ୍ଗରେ ଗୈରିକ ବାସ ଆଚ୍ଛାଦନ । ହସ୍ତରେ ତ୍ରିଶୂଳ ଓ କମଣ୍ଡଳୁ । ବକ୍ଷରେ ରୁଦ୍ରାକ୍ଷର ମାଳା, ବାମପାର୍ଶ୍ୱରେ ସ୍କନ୍ଧ ଦେଶରୁ ଲମ୍ବମାନ କୃଷ୍ଣାଜୀନ ।

ଆଗନ୍ତୁକମାନେ ମନ୍ଦିରର ଚତ୍ୱରରେ ଉପବେଶନ କଲେ । ନବାଗତ ସାଧୁମାନଙ୍କୁ ଦର୍ଶନ କରିବା ଉଦ୍ଦେଶ୍ୟରେ ଜନଗହଳି ବୃଦ୍ଧି ପାଇଲା । ସାଧୁମାନେ ଗାନ କଲେ—

"ବଶିଷ୍ଠ-କୁମ୍ଭୋଦ୍ଭବ-ଗୌତମାର୍ଯ୍ୟ-
ମୁନୀନ୍ଦ୍ର-ଦେବାର୍ଚ୍ଚିତଶେଖରାୟ
ଚନ୍ଦ୍ରାର୍କ-ବୈଶ୍ୱାନର-ଲୋଚନାୟ
ତସ୍ମୈ 'ବ'କାରାୟ ନମଃ ଶିବାୟ ।

ସେମାନଙ୍କ ସୁଲଳିତ ସଙ୍ଗୀତ ତାନରେ ମୃଦଙ୍ଗ ମଧ୍ୟରେ ଚତୁର୍ଦ୍ଦିଗ ନିସ୍ତବ୍ଧ ହୋଇଗଲା । ମନ୍ଦିରର ଗାତ୍ରରେ ଭକ୍ତିର ସ୍ରୋତ ପ୍ରବାହିତ ହେଲା । ଉପସ୍ଥିତ ଜନତା ମୁକ୍ତକଣ୍ଠରେ ଗାନକଲେ—

"ଯକ୍ଷସ୍ୱରୂପାୟ-ଜଟାଧରାୟ
ପିନାକହସ୍ତାୟ ସନାତନାୟ
ଦିବ୍ୟାୟ ଦେବାୟ ଦିଗମ୍ବରାୟ
ତସ୍ମୈ 'ଯ'କାରାୟ ନମଃ ଶିବାୟ ।

ଅର୍ଦ୍ଧପ୍ରହର ଅତୀତ ହେଲା । ପ୍ରାର୍ଥନା ଶେଷରେ ଭକ୍ତ,ସାଧୁ ଓ ସନ୍ନ୍ୟାସୀମାନଙ୍କ ବ୍ୟତୀତ ଅନ୍ୟମାନେ ଗୃହ ଗମନ ଉଦ୍ଦେଶ୍ୟରେ ପ୍ରସ୍ତୁତ ହେଲେ । କେହି କେହି ନବାଗତ ସାଧୁମାନଙ୍କର ପ୍ରଶଂସା ଗାନ କରି ଅଳସ ପଦରେ ତଳକୁ ଓହ୍ଲାଇଲେ ।

ଲଳିତା ଓ ମୋହନ ସେତେବେଳେ ମନ୍ଦିରର ଚତ୍ୱରରେ ବସି ଧର୍ମ ଆଲୋଚନାରେ ବ୍ୟସ୍ତ ଥିଲେ । ଲଳିତା ପ୍ରଶ୍ନକଲା—ଆମ ଭାରତୀୟମାନେ ଏତେ ଦେବ ମନ୍ଦିର ନିର୍ମାଣ କରନ୍ତି କାହିଁକି ?

ମୋହନ ଉତ୍ତର ଦେଲା—ଜୀବନ ଅନ୍ୱେଷଣରେ ପ୍ରେରିତ ମାନବ ନିଜ ଆତ୍ମା ସଂସ୍କାର କରି ତନ୍ମଧ୍ୟରେ ପରିବର୍ତ୍ତନ ଆଣିବାକୁ ଯେପରି ଚେଷ୍ଟା କରେ, ବାହ୍ୟବିଶ୍ୱରେ ପରିବର୍ତ୍ତନ ଆଣିବାପାଇଁ ମଧ୍ୟ ସେହିପରି ଯତ୍ନଶୀଳ ହୁଏ । ଏଇଥିପାଇଁ ଭାରତୀୟ ଦେବ ମନ୍ଦିରର ସୃଷ୍ଟି । ମାନବ ପଥରକୁ କାଟି ତନ୍ମଧ୍ୟରେ ମୂର୍ତ୍ତି ନିର୍ମାଣ କରେ । ଏହା ବାହ୍ୟ ବିଶ୍ୱର ସଂସ୍କାର । ଏହାର ଅପର ନାମ ଭୌତିକ ସଂସ୍କୃତି । ଏଥିରେ ମନୁଷ୍ୟ ମନର ସଂସ୍କାର ମଧ୍ୟ ସମ୍ପନ୍ନ ହୁଏ । ତାହା ସଂସ୍କାରର ଆଧ୍ୟାତ୍ମିକ ଅଂଶ । ଏହି କାରଣରୁ ଆଧ୍ୟାତ୍ମିକ ଓ ଅଧିଭୌତିକ ଦୁଇଟି ଭାଗରେ ସଂସ୍କୃତିକୁ ବିଭକ୍ତ କରାଯାଏ । ଭାରତୀୟ ଦେବମନ୍ଦିର ଏ ଦୁଇଟିର ସମନ୍ୱୟ ।

ହଠାତ୍ ପାହାଡ଼ର ପାଦଦେଶରୁ ଶିଙ୍ଗାଧ୍ୱନି ନିଶିଥର ବୁକୁ ଭେଦ କରି ଭାସି ଆସିଲା । ସଙ୍ଗେ ସଙ୍ଗେ ଅଦୂରରୁ ଆଉ ଗୋଟିଏ ଶିଙ୍ଗାଧ୍ୱନି ମଧ୍ୟ ଶୁଭିଲା । ନବାଗତ ସନ୍ନ୍ୟାସୀମାନେ ଚଞ୍ଚଳିତ ହୋଇପଡିଲେ । ଯିଏ ଯେଉଁଠି ଥିଲେ ମୁହୂର୍ତ୍ତେ ସ୍ତବ୍ଧ ହୋଇ ସେ ଶବ୍ଦ ଶୁଣିବାକୁ ଲାଗିଲେ । କ୍ରମେ ଦୂରରୁ ଅଶ୍ୱଖୁର ଧ୍ୱନି ଶୁଣାଗଲା ।

ନବାଗତ ସାଧୁମାନେ ନିଜ ସ୍ଥାନରେ ଦଣ୍ଡାୟମାନ ହୋଇ ଉଚ୍ଚସ୍ୱରରେ ଧ୍ୱନିକଲେ—

“ଲା ଇଲାହ ଇଲ୍ଲାଲ ମହମ୍ମଦେ ରସୁଲ୍ଲାଲ ।”

ସମସ୍ୱରରେ ମନ୍ଦିରର ପାଦଦେଶରୁ ଶବ୍ଦ ଶୁଭିଲା—ଲା—ଇଲାହ……… ସେ ସ୍ୱର ଲହରୀ ପବନରେ ମିଳାଇଯିବା ପୂର୍ବରୁ ସନ୍ନ୍ୟାସୀମାନେ ନିଜର ଛଦ୍ମରୂପ ପରିହାର କରି ହତ୍ୟାକାଣ୍ଡରେ ବ୍ୟାପୃତ ହେଲେ । ମୁହୂର୍ତ୍ତିକରେ ସମସ୍ତ ଆନନ୍ଦ କୋଳାହଳ ଲୋପ ପାଇଗଲା । ନରରକ୍ତରେ ମନ୍ଦିରର ଗାତ୍ର ରଞ୍ଜିତ ହେଲା । ଶିବ ପାଲଟିଲେ ରୁଦ୍ର । ମହାକାଳର କପାଳରେ ମାନବର ପବିତ୍ରରକ୍ତ ସିଞ୍ଚିତ ହେଲା । ଦର୍ଶକ, ଭକ୍ତ ଓ ସନ୍ନ୍ୟାସୀମାନେ ପ୍ରାଣଭୟରେ କିଏ କେଉଁଆଡ଼େ ପଳାଇଗଲେ । କେତେ ପାହାଡ଼ ଉପରୁ ପଡ଼ି ପ୍ରାଣତ୍ୟାଗ କଲେ ତ, କେତେ ମୁମୂର୍ଷ ଅବସ୍ଥାରେ ଅପେକ୍ଷା କଲେ ମୃତ୍ୟୁକୁ ।

ମୋହନ ଏବଂ ଲଳିତା ଉଭୟେ ଗୋଦାବରୀ ଗର୍ଭକୁ ଲମ୍ଫ ପ୍ରଦାନକଲେ ।

ବାସ୍ତବରେ ଏ ବିଶ୍ୱର ଗତି ବଡ଼ ବିଚିତ୍ର । କେଉଁ ଏକ ଅଜ୍ଞାତ ନିୟମରେ ଏହାର ଗତି ଯେ ନିୟନ୍ତ୍ରିତ ହୁଏ, ମାନବ ଶତ ସାଧନାରେ ତାହାର କୌଣସି ଗୋଟିଏ ଅଂଶ ମଧ୍ୟ ଆବିଷ୍କାର କରିପାରିନାହିଁ ।

ଆଷାଢ଼ର ଦିନରେ ପାହାଡ଼ ବୁକୁରେ ସଞ୍ଚିତ ହୁଏ ଜଳରାଶି, ସେ ପୁଣି ସମୟରେ ଝରଣା ହୋଇ ବହିଯାଏ । କେତୋଟି ଧାରାର ସମ୍ମେଳନରେ ସୃଷ୍ଟି ହୁଏ ନଦୀ ! ଜଳରାଶି ପ୍ରବାହିତ ହୁଏ ନିମ୍ନଭୂମିକୁ । ହଠାତ୍ କେଉଁଠି ବାଧାପାଇଲେ ଗତି ପରିବର୍ତ୍ତିତ ହୁଏ—ପ୍ରବାହ ଦ୍ୱିଗୁଣ ଗତିଶୀଳ ହୁଏ ସେହି ଆଘାତରେ । ମାନବର ଜୀବନ ଠିକ୍ ସେହିପରି ଉପାଦାନରେ ଗଠିତ । ସମୟେ ସମୟେ ଏପରି ଗୋଟିଏ ଗୋଟିଏ ଘଟଣା ଘଟେ, ଏପରି ଏକ ସାମାନ୍ୟ ଘଟଣା ମାନବ ମନକୁ ଦୋହଲାଇ ଦିଏ ଯେ, ତାହା ସମ୍ପୂର୍ଣ୍ଣ ରୂପେ ବିପରୀତ ଦିଗକୁ ନିଢକରେ । ତାପରେ ତାର୍ ଜ୍ୱାଳା

ଭୁଲି ହୁଏ ନାହିଁ । ଶରୀର ଫଳା ପରି ମାନବ ମନର କୋମଳତମ ଅଂଶରେ ଲାଗିରହେ । ସେହି ଆଘାତରେ ମନର ଗତି ଦ୍ୱିଗୁଣିତ ହୋଇଯାଏ । ତେଣୁ ମନେହୁଏ—ମାନବ ଜୀବନରେ ଆଘାତର ବୋଧହୁଏ ପ୍ରୟୋଜନ ଅଛି । କାରଣ ଆଘାତ ନ ପାଇଲେ ଗତି ବଢ଼େନାହିଁ ।

ତାପରେ ତୀକ୍ଷଣତମ ଆଘାତରେ ମନରେ ଯେଉଁ ତାପ ଆସେ, ତାହାର ରଶ୍ମି ଚତୁର୍ଦ୍ଦିଗରେ ବିଚ୍ଛୁରି ପଡ଼େ । ମାନବ ତାର ନାମ ଦିଏ ପ୍ରତିଭା । ସଂସାର ବିସ୍ମୟରେ ତାହା ନିରୀକ୍ଷଣ କରେ ।

ମୋହନର ସେ ପ୍ରତିଭା ଅଛି କି ନାହିଁ ତାହା ସେ ଆଜି ପର୍ଯ୍ୟନ୍ତ ଅନୁଭବ କରିନାହିଁ । କାରଣ ମହାପୁରୁଷମାନେ କହନ୍ତି—ପ୍ରତିଭାର ଦଶଭାଗ ହେଉଛି ମେଧା ଏବଂ ଅବଶିଷ୍ଟ ନବେ ଭାଗ ସାଧନା । ଏ ଦୁଇଟିର ସମ୍ମେଳନରେ ପ୍ରତିଭା ବିକଶିତ ହୁଏ ।

ସେଦିନ ମୋହନ ନଦୀ ମଧ୍ୟରେ ଲମ୍ଫ ଦେବା ପରେ ଲଳିତାକୁ ଖୋଜିଥିଲା । ମାତ୍ର ତାର କୌଣସି ଚିହ୍ନ ପାଇଲା ନାହିଁ । ତାପରେ ସେ ସ୍ରୋତର ଅନୁକୂଳରେ ଦୂରକୁ ଭାସି ଭାସି ଗଲା । ରଜନୀ ପ୍ରଭାତ ହେବା ବେଳକୁ ସେ ବହୁଦୂର ଚାଲି ଯାଇଥିଲା । ଏହି ଦୀର୍ଘ ସମୟ ନଦୀ ଜଳରେ ଭାସି ଭାସି ସେ ଯେ କେବଳ ଆତ୍ମରକ୍ଷା ପାଇଁ ଉଦ୍ୟମ କରୁଥିଲା ତାହାନୁହେଁ, ଲଳିତାକୁ ମଧ୍ୟ ଖୋଜି ଖୋଜି ଚାଲିଥିଲା ।

ପ୍ରଭାତର ଆଲୋକ ଫୁଟି ଉଠିବା ସଙ୍ଗେ ସଙ୍ଗେ ମୋହନ ଭୂମି ଉପରକୁ ଆସି କୂଳେ କୂଳେ ତାକୁ ଅନ୍ୱେଷଣ କରିଥିଲା । ମାତ୍ର ବେଶୀଦୂର ଯାଇପାରିଲା ନାହିଁ । ଗତ ରାତ୍ରିର ଘଟଣା ଗୋଟି ଗୋଟି ମନେପଡ଼ି ତାକୁ ଅସ୍ଥିର କରି ତୋଳିଲା ।

ରାଜମାହେନ୍ଦ୍ରୀ ଅବରୋଧ । ଗୋଲକୁଣ୍ଡାର ସୁଲତାନ ଇବ୍ରାହିମ କୌଶଳରେ ହିନ୍ଦୁ ସନ୍ନ୍ୟାସୀ ବେଶରେ ସୈନ୍ୟବାହିନୀ ପଠାଇ ତାହା ଅଧିକାର କରିନେବାକୁ ବସିଛନ୍ତି ।

ରାଜ ମାହେନ୍ଦ୍ରୀ ଦକ୍ଷିଣ ଓଡ଼ିଶାର ରାଜଧାନୀ । ଗଜପତିଙ୍କର ଜଣେ ପ୍ରତିନିଧି ସେଠାରେ ରହି ରାଜ୍ୟ ଶାସନ କରନ୍ତି । ତାହା ବିଜୀତ ହେଲେ ଅନ୍ୟାନ୍ୟ ଦକ୍ଷିଣ ଅଞ୍ଚଳ ଗୁଡ଼ିକ ଆପେ ଆପେ ହସ୍ତଗତ ହୋଇ ପାରିବ ।

ଦେଶର ଏ ପ୍ରକାର ପରିସ୍ଥିତିରେ ମୋହନ ଭୁଲିଯାଏ ଲିଳିତାକୁ । ମାନସ-ପଟରେ ଆଙ୍କି ହୋଇଯାଏ ଅତୀତ ଦିନର ସ୍ମୃତି ।

ରାଜ ମାହେନ୍ଦ୍ରୀପରେ କୋଣ୍ଡାପଲ୍ଲୀ । ଗଜପତି କପିଳେନ୍ଦ୍ରଦେବଙ୍କର ଶେଷସ୍ମୃତି ଏଠାରେ ଅବସ୍ଥିତ । ଗଙ୍ଗାଠାରୁ ପାନ୍ନାର ପର୍ଯ୍ୟନ୍ତ ସମସ୍ତ ପୂର୍ବ ଉପକୂଳ ଜୟକରି ଯେଉଁ ନରପତି ବିଜୟ କେତନ ଉଡ଼ାଇଥିଲେ ସେ ଅଛନ୍ତି କାହାନ୍ତି ?

"ଜାତସ୍ୟ ହି ଧ୍ରୁବୋ ମୃତ୍ୟୁ ର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ
ତସ୍ମାଦ୍‌ପରିହାର୍ଯ୍ୟେଽର୍ଥେ ନ ତ୍ୱଂ ଶୋଚିତୁ ମର୍ହସି ।"

ଜାତ ବ୍ୟକ୍ତିର ମୃତ୍ୟୁ ଯେପରି ଅନିବାର୍ଯ୍ୟ, ମୃତର ଜନ୍ମ ସେହିପରି ଅବଶ୍ୟମ୍ଭାବୀ । ତେଣୁ ମହାପୁରୁଷମାନେ ଶୋକ ଅନୁଚିତ ଭାବି ତାକୁ ଭୁଲିବାକୁ ଚେଷ୍ଟା କରନ୍ତି ।

"ଏ ଜୀବ ନୁହଇ ସ୍ଥିର, ସ୍ଥିରଟି ମରଣ ।

ପ୍ରତିମୁହୂର୍ତ୍ତରେ ଜୀବନ ନଦୀ କାଳସିନ୍ଧୁ ଅଭିମୁଖେ ଧାବିତ ହୁଏ । ଯେତିକି ସେ ଅଗ୍ରସର ହୁଏ, ସେତିକି କ୍ଷୟ ପ୍ରାପ୍ତହୁଏ । ତଥାପି ସେ ବଞ୍ଚି ରହିବା ପାଇଁ ଜୀବନ ସଂଗ୍ରାମରେ ନିରନ୍ତର ବ୍ୟାପୃତ ହୁଏ । ନିୟତି ହସ୍ତର ଅଲକ୍ଷ୍ୟ ମାୟାଦଣ୍ଡରେ ସେ ଅବଶ୍ୟମ୍ଭାବୀକୁ ଭୁଲିଯାଇ ହସେ, କାନ୍ଦେ—ମାତିଥାଏ କଳହ କୋଳାହଳରେ, ଈର୍ଷାର ନୀଚତାରେ; ସ୍ୱାର୍ଥର ଅନର୍ଥରେ, କ୍ରୋଧ ଓ ହିଂସାରେ; ପୁଣି ପ୍ରେମ ଓ ମନ ଖୋଜା ଖୋଜିରେ ।

ଉତ୍କଳରେ ସୂର୍ଯ୍ୟବଂଶର ପ୍ରତିଷ୍ଠାତା ଗଜପତି କପିଳେନ୍ଦ୍ରଦେବ । ଅତୁଳନୀୟ ମହାମହିମ ସମ୍ରାଟ । ଭାଗ୍ୟର ପ୍ରତିକୂଳରେ ସଂଗ୍ରାମ କରି କରି ଗାଈ ଜଗୁଆଳଠାରୁ ଉତ୍କଳର ସିଂହାସନ ଅଧିକାର କରି ପାରିଥିଲେ । ତେଣୁ ତାଙ୍କ ଜୀବନରେ ଆଳସ୍ୟ ବିଳାସ ନ ଥିଲା । କ୍ଳାନ୍ତି କଣ ସେ ଜାଣୁ ନ ଥିଲେ । ବିଶ୍ରାମଥିଲା ଶାସନତନ୍ତ୍ରର ସୁପରି-ଚାଳନାରେ ଅଥବା ଯୁଦ୍ଧକ୍ଷେତ୍ରର ଘୋର ଝଞ୍ଜାଳ ମଧ୍ୟରେ; ସେ ପୁଣି ଚିର ବିଶ୍ରାମ-

ନେଲେ କୃଷ୍ଣାନଦୀ ତୀରର ଏହି କୋଣ୍ଡାପଲ୍ଲୀ ଦୁର୍ଗରେ । ତାର କର୍ମମୟ ଏବଂ ଅତୁଳ ସାହସ ପୂର୍ଣ୍ଣ ଜୀବନର ପରିସମାପ୍ତି ଘଟିଲା ମହାକାଳର ଏକ କ୍ଷୁଦ୍ର ଇଙ୍ଗିତରେ ।

ଏହି କୃଷ୍ଣାନଦୀ ତୀରରେ ଗଜପତି ପୁରୁଷୋତ୍ତମଦେବ ପିତାଙ୍କ ଉତ୍ତରାଧିକାରୀ ରୂପେ ରାଜସିଂହାସନରେ ଅଭିଷିକ୍ତ ହୋଇଥିଲେ । ସେ ପୁଣି ଉତ୍କଳ ରାଜଛତ୍ରର ମହତ୍ତ୍ୱ ରକ୍ଷାପାଇଁ ତାଙ୍କ ଅଭିଯାନ କଲେ । ସେ ଦିନ ସମଗ୍ର ବିଶ୍ୱ ବିସ୍ମୟରେ ସ୍ତବ୍ଧ ହୋଇ ଉତ୍କଳର ଏ ଅଭିଯାନକୁ ଲକ୍ଷ୍ୟକରି କହିଥିଲେ—

"କଳିଙ୍ଗଃ ସାହସିକଃ ।"

ଗଜପତି ପୁରୁଷୋତ୍ତମ ଦେବ କୋଣ୍ଡାବିଡ଼ୁରେ ବିଶ୍ରାମ ନେଇ ମନ୍ଦିରମାଳିନୀ ଉଦୟଗିରିକୁ ଯାତ୍ରା କରିଥିଲେ । ଏଠାରେ ସପ୍ତାଶ୍ୱ ବାହନଙ୍କର ପ୍ରଥମ କିରଣ ଭୂମିରେ ପତିତ ହୁଏ । ସୂର୍ଯ୍ୟଭକ୍ତରାଜା ନରସିଂହଦେବ ପରେ ଏ ସ୍ଥାନରେ ସୂର୍ଯ୍ୟଦେବଙ୍କର ଆରାଧନା ପାଇଁ ୩୬୦ଟି ଦେବ ମନ୍ଦିର ନିର୍ମାଣ କଲେ । ପୁରୁଷୋତ୍ତମ-ଦେବ ଏଠାରୁ କନକ ଗିରି ଦୁର୍ଗକୁ ଆଗମନ କରିଥିଲେ । ତାଙ୍କ ଅଭିଯାନ ଆରବ୍ଧ ହେଲା । ମାତ୍ର ଦୁର୍ଭାଗ୍ୟକ୍ରମେ ପୁରୁଷୋତ୍ତମ ଦେବ ଏ ଯୁଦ୍ଧରେ ପରାସ୍ତ ହୋଇ ସ୍ୱଦେଶକୁ ବାହୁଡ଼ି ଆସିଲେ ।

ଉତ୍କଳୀୟମାନଙ୍କର ସମ୍ମାନ ଏବଂ ପୂର୍ବପୁରୁଷମାନଙ୍କର ଗୌରବ ରକ୍ଷାପାଇଁ ଭକ୍ତ ଶିରୋମଣି ରାଜା ପୁରୁଷୋତ୍ତମଦେବ ଜଗନ୍ନାଥଙ୍କର ଶରଣ ପଶିଲେ । ଭକ୍ତର ଅପମାନରେ ଦାରୁବ୍ରହ୍ମଙ୍କର ସିଂହାସନ ଦୋହଲି ଯାଇଥିଲା । ଯେଉଁ ଭଗବାନ ଦ୍ୱାପରରେ ଅର୍ଜୁନଙ୍କ ରଥରେ ସାରଥି କାର୍ଯ୍ୟ କରିଥିଲେ, ସେ ପୁଣି ସେନାପତିର ପୋଷାକ ପିନ୍ଧି ଅଶ୍ୱାରୋହଣ କରି ଯୁଦ୍ଧକ୍ଷେତ୍ରକୁ ଯାତ୍ରାକଲେ । ତାଙ୍କ ବିଜୟ ହେଲା । ଉତ୍କଳର ବିଜୟ ନୈତି ଦକ୍ଷିଣାବାୟୁ ସ୍ପର୍ଶରେ ଉଡ୍ଡୀନ ହେଲା । ଭକ୍ତରାଜା ପୁରୁଷୋତ୍ତମ ହେଲେ—'ନବକୋଟି କର୍ଣ୍ଣାଟ-ଉତ୍କଳ କଳବର୍ଗେଶ୍ୱର ।' କାଞ୍ଚିନେମା ପଦ୍ମାବତୀ ଗଜପତିଙ୍କ ଅନ୍ତଃପୁର ମଣ୍ଡନ କଲେ ।

ଏ ମଧ୍ୟରେ ନବେ ବର୍ଷ ବିତିଗଲାଣି ।

ପୃଥିବୀ ନଟବୃକ୍ଷରେ କାଳର ଦୋଳା ଲାଗିଛି । ହୟତ ତାର ଅଲକ୍ଷ୍ୟ ଓ ଅଦୃଶ୍ୟ ହସ୍ତରେ ତାହା ଦୋଳାଉଛି । ଏହି ଦୋଳାୟମାନ ଅବସ୍ଥାରେ ମାନବ କେତେବେଳେ ଉପରକୁ ଉଠୁଛି ତ, କେତେବେଳେ ଶୋଚନୀୟ ଗତିରେ ତଳକୁ ଖସି ପଡ଼ୁଛି । ସମୟେ ସମୟେ ତଳକୁ ଖସୁ ଖସୁ ପୁଣି ଆହୁରି ଉଚ୍ଚକୁ ଉଠିଯାଉଛି ।

ପତନ ଅଭ୍ୟୁଦୟ ଏବଂ ବନ୍ଧୁର ପଥରେ ଯୁଗେ ଯୁଗେ ଯାତ୍ରୀ ଚାଲିଛି । ତାର ଏ ଚାଲିବାରେ ବିରାମ ନାହିଁ କି ପରିସମାପ୍ତି ବି ନାହିଁ । ଶେଷହେବ ସେହିଦିନ, ଯେଉଁଦିନ କି ଶମନ ତାକୁ ନିଜର ବଳିଷ୍ଠ ବାହୁରେ ଟେକିନେବ ନିଜ ପରିସର ମଧ୍ୟକୁ । ସେଦିନ ଚାହିଁବା ଓ ପାଇବା ସବୁ ଶେଷ ହୋଇଯିବ ।

ସପ୍ତଦିବସ ବ୍ୟାପୀ ଯୁଦ୍ଧପରେ ଗୋଲକୁଣ୍ଡା ବାହିନୀ ସମ୍ପୂର୍ଣ୍ଣରୂପେ ପରାଜିତ ହେଲେ । ରାଜମାହେନ୍ଦ୍ରୀ ଦୁର୍ଗରେ ଗଜପତିଙ୍କର ବିଜୟ କେତନ ପୁଣି ଉଡ୍ଡୀନ ହେଲା ।

ଦେଶରେ ଶାନ୍ତି ପ୍ରତିଷ୍ଠା ହେବା ସଙ୍ଗେ ସଙ୍ଗେ ମୋହନ ଫେରି ଆସିଲା ନିଜର ନିବାସ ସ୍ଥାନକୁ ।

ପଥ ବହୁଦୂର । ଭୂମି ସମତଳ ନୁହେଁ—ଉଚ୍ଚ, ନୀଚ, ଗଡ଼ାଣିଆ । ମାଟି ଲାଲ୍ ମୋରମ ଓ କଳାପଥର ମିଶା । ତାରି ଭିତରେ ଗତ ପନ୍ଦର ଦିନ ତଳେ ଯେଉଁ ଧାନ, ଗହମ, କଦଳୀ, ହରଡ଼, ମକା ଓ ବାଇଗଣ କ୍ଷେତ ଥିଲା ସେଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ଧ୍ୱଂସ ପାଇଯାଇଛି । ଯବନ ବାହିନୀ ତାହା ଲୁଣ୍ଠନ କରିଛନ୍ତି ନିଜପାଇଁ ଅଥବା ନିଜର ଅଶ୍ୱମାନଙ୍କ ପାଇଁ । ମଝିରେ ମଝିରେ ଥିବା ଜନବସତି ଓ ଶସ୍ୟ କ୍ଷେତ୍ରରେ ଅଗ୍ନି ଲାଗିଛି । କେତେକ ସ୍ଥାନରେ ଏ ପର୍ଯ୍ୟନ୍ତ ପ୍ରଶମିତ ମଧ୍ୟ ହୋଇନାହିଁ ।

ଲୋକାଳୟରେ ଜନ ସମାଗମ ନାହିଁ । ଗୋଟିଏ ଦୁଇଟି ଗୃହପାଳିତ ପଶୁ ଏଣେତେଣେ ମନ ଖୁସିରେ ବୁଲୁଛନ୍ତି । କେଉଁଠିବା ଗୋରୁଟିଏ ଭଙ୍ଗା ଘର ନିକଟରେ ଠିଆହୋଇ ଉଦାସ ଦୃଷ୍ଟିରେ ଚାହିଁ ରହିଛି ଭିତରକୁ ।

ଦୂରରେ ପାହାଡ଼ । ଆଖ ପାଖରେ ଦୁଇ ଚାରିଟି ପଥର କୁଦ । ପଥ ନିବିଡ଼ ଶାଳ, ପିଆଶାଳ ଓ ହରିତକୀ ବୃକ୍ଷ ବିପର୍ଯ୍ୟସ୍ତ ଭାବରେ ମୂକସାକ୍ଷୀ ରୂପେ ଚାହିଁ ରହିଛନ୍ତି । ଶତ୍ରୁ ଅତ୍ୟାଚାରର ବିଭୀଷିକା ସେମାନଙ୍କ ଶରୀରରେ ସୁସ୍ପଷ୍ଟ ।

ସ୍ଥାନେ ସ୍ଥାନେ ମାନବ ରକ୍ତରେ ଭୂମି ଭିଜିଯାଇଛି । ସୂର୍ଯ୍ୟଙ୍କ ଉତ୍ତାପରେ ଲୋହିତବର୍ଣ୍ଣ ଶୋଣିତ କୃଷ୍ଣବର୍ଣ୍ଣ ଧାରଣ କରିଛି । ମୃତ ଶବଗୁଡ଼ିକ ଏଣେତେଣେ ବିକ୍ଷିପ୍ତ ଭାବରେ ପଡ଼ିଛନ୍ତି । ହିନ୍ଦୁ, ମୁସଲମାନ କାହାର ମଧ୍ୟରେ କୌଣସି ପ୍ରଭେଦ ନାହିଁ । ମୃତ୍ୟୁର କିଛି ସମୟ ପୂର୍ବରୁ ଯେଉଁମାନେ ପରସ୍ପରକୁ ଶତ୍ରୁ ଭାବ ହିଂସାର ଅଗ୍ନିରେ ଜଳିପୋଡ଼ି ଯାଉଥିଲେ, ସେମାନେ ଅନ୍ତରଙ୍ଗ ମିତ୍ର ପରି ପରମ ଶାନ୍ତିରେ ଏକସ୍ଥାନରେ ମହାନିଦ୍ରା ଯାଇଛନ୍ତି ।

ଅତୀତ ପ୍ରତି ଭାବନା ନାହିଁ, ଭବିଷ୍ୟତ ପ୍ରତି ଶୋଚନା ନାହିଁ-ବର୍ତ୍ତମାନ ବୁଡ଼ି ରହିଛି ପରମ ଶାନ୍ତିରେ ।

ଗୋଟିଏ ଦୁଇଟି ଗୃଧ୍ର ଚକ୍ରାକାରରେ ତଳକୁ ଓହ୍ଲାଇଆସୁଛନ୍ତି । ଶବ ନିକଟରେ ବସି ଭୁରି ଭୋଜନରେ ବ୍ୟସ୍ତ । କେହିବା ଖାଦ୍ୟ ସଂଗ୍ରହ ଶେଷରେ ଉଡ଼ିଯାଉଛନ୍ତି ଆକାଶକୁ ।

ଗୋମାୟୁଦଳ ନିଜର ଅଧିକାର ନେଇ ପରସ୍ପର ସହିତ କଳହରେ ମାତିଛନ୍ତି । ଠିକ୍ ରାଜ୍ୟଲୋଭରେ ରତ ଏହି ହିନ୍ଦୁ ମୁସଲମାନଙ୍କ କଳହ ପରି ।

ମାତ୍ର ମୃତ୍ୟୁପରେ·········

ବୈରିତା ଧୁଆଁଯାଇଛି । ସମସ୍ତ ସୁଖ, ଦୁଃଖ, ଈର୍ଷା, ଦ୍ୱେଷ ଲୁଚି ଯାଇଛି । ମାତାର କୋଳରେ ସମସ୍ତ ସନ୍ତାନ ସମାନ ଅଧିକାର ପାଇଲା ପରି ମୃତ୍ୟୁପରେ ଜେତା-ବିଜେତା, ଅର୍ଥୀ-ପ୍ରତ୍ୟର୍ଥୀ; ନିର୍ଯ୍ୟାତିତ-ନିର୍ଯ୍ୟାତନାକାରୀ, ସାଧୁ ଓ ଅସାଧୁ ସମସ୍ତେ ସର୍ବଂସହା ଧରିତ୍ରୀ ମାତାଙ୍କ କୋଳରେ ସମାନ ଆସନ ଲଭ କରିଛନ୍ତି । ଧରଣୀ ସେମାନଙ୍କୁ ନିବିଡ ଆଶ୍ଳେଷରେ କୋଳରେ ଧରି ସାମ୍ୟଧର୍ମର ଦୀକ୍ଷା ଦେଇ କହୁଛି—

"ସର୍ବେଷାଂ ଯଃ ସୁହୃନ୍ନିତ୍ୟଂ
ସର୍ବେଷାଂ ଚ ହିତେ ରତଃ
କର୍ମଣା ମନସା ବାଚା
ସଧର୍ମ ବେଦ ଜାଜଲେ ।"

ମନ, ବଚନ ଓ କର୍ତ୍ତବ୍ୟରେ ସର୍ବବ୍ୟାପୀ ପ୍ରେମ ହିଁ ପରମଧର୍ମ ।"

ଦର୍ଶନଶାସ୍ତ୍ର କହେ—ଯାହା ଚଳମାନ ତାର ନାମ ଜଗତ; ଯାହା ଅପସୃୟମାନ—ତାହାର ନାମ ସଂସାର ।

ଦୁଇଟିଯାକ କ୍ଷଣଭଙ୍ଗୁର । ପ୍ରତିଦିନ, ପ୍ରତିକ୍ଷଣ ପ୍ରତି ମୁହୂର୍ତ୍ତରେ ତାହା ପରିବର୍ତ୍ତିତ ହୁଏ । ଜୀର୍ଣ୍ଣ, ପୁରାତନ ପଡ଼ିଯାଏ ପଛରେ, ତା' ଆଡ଼କୁ ଫେରି ଅନାଇବାକୁ ନୂତନକୁ ସମୟ ମଧ୍ୟ ମିଳେ ନାହିଁ ।

ଶୁଖିଲା ପତ୍ର ଝଡ଼ି ପବନରେ ଉଡ଼େ । ନୂତନ ଗଛରେ ନୂତନ ମୁକୁଳ ଧରେ । ଯାହା କଳିକା ଥାଏ, ତାହା ଫୁଲହୋଇ ଫୁଟେ । ସମୟରେ ତାର ପାଖୁଡ଼ା ମଧ୍ୟ ଝଡ଼ିଯାଏ । ରହେ କେବଳ ବୃନ୍ତ । ସେ ମଧ୍ୟ ଦିନେ ଝଡ଼ିପଡ଼େ ।

ମୋହନ ଆଶ୍ରମଦ୍ୱାରରେ ଉପସ୍ଥିତ ହେଲା । ଆଶ୍ରମର ପୂର୍ବ ବିଭବ ଆଉ ନାହିଁ । ବୃକ୍ଷଲତା ଗୁଡ଼ିକ ଶ୍ରୀହୀନ । ଶୁଖିଲା ଶାଖା ପ୍ରଶାଖା ଏଣେତେଣେ ବିକ୍ଷିପ୍ତ ଭାବରେ ପଡ଼ିଛି ।

ଶହ ଶହ ବିଦ୍ୟାର୍ଥୀ ବେଦ, ବେଦାନ୍ତ, କାବ୍ୟ ଓ ଦର୍ଶନ ପ୍ରଭୃତି ଆଲୋଚନା କରି ଯେଉଁ ସ୍ଥାନକୁ ମୁଖରିତ କରି ତୋଳୁଥିଲେ, ତାହା ଆଜି ଶ୍ମଶାନ ପରି ପ୍ରତୀତ ହୁଏ । ସ୍ଥାନେ ସ୍ଥାନେ କୁଟା କୁଟା ପାଉଁଶ, ଆବର୍ଜ୍ଜନା ଓ ଧୂଳିପ ଜମି ରହିଛି ।

ମୋହନର ଅନ୍ତଃସ୍ଥଳରେ କି ଏକ ଅହେତୁକୀ ଭୟ ଜାଗ୍ରତ ହେଲା । ଥରେ ଦୁଇଥର ଛାତିକୁ ଭିତରଟା ଥରି ଉଠିଲା । ତଥାପି ସେ ମନରେ ସାହସ ବାନ୍ଧି ଆଶ୍ରମର ଦେବ ମନ୍ଦିର ନିକଟକୁ ଗମନ କଲା । ଦେଖିଲା—ବୃଦ୍ଧ ଆଚାର୍ଯ୍ୟ ସେ ଶ୍ମଶାନରେ ରୁଦ୍ରଙ୍କ ପରି ଗଭୀର ଧ୍ୟାନରେ ନିମଗ୍ନ । ଦେବ ବିଗ୍ରହ ନାହିଁ, ସିଂହାସନ ଶୂନ୍ୟ ପଡ଼ିଛି ।

ମୋହନର ପଦଶବ୍ଦରେ ଆଚାର୍ଯ୍ୟଙ୍କର ଧ୍ୟାନ ଭାଙ୍ଗିଗଲା । ସେ ଧୀର ଭାବରେ ଚକ୍ଷୁ ଉନ୍ମୀଳନ କରି ତା ଆଡ଼କୁ ଚାହିଁଲେ ।

ମୋହନ ଆଚାର୍ଯ୍ୟଙ୍କୁ ପ୍ରଣାମ କଲା ।

ଆଚାର୍ଯ୍ୟଙ୍କର ଓଷ୍ଠ ଦୁଇଟି କମ୍ପିତ ଥରି ଉଠିଲା । ବୁକୁ ଭିତରେ ଆଲୋଡ଼ନ ସୃଷ୍ଟିହେଲା । ନିଜର ହୃଦୟାବେଗକୁ ସଂଯତ କରି ସେ ଧୀର ଗମ୍ଭୀର ଭାବରେ ପ୍ରଶ୍ନ କଲେ—ମୋହନ ! ଲଳିତା କାହିଁ ?

ମୋହନ ଶ୍ରେଷ୍ଠ ପିଲଙ୍କ ପରି କହିଁ କହିଁ ହୋଇ କାନ୍ଦିଉଠିଲା । ଆଚାର୍ଯ୍ୟ ଅସ୍ଥିର ହୋଇ ପଡ଼ିଲେ । କମ୍ପିତ କଣ୍ଠରେ ପ୍ରଶ୍ନ କଲେ—କୁହ ସେ କାହିଁ ?

ମୋହନ କାନ୍ଦି କାନ୍ଦି ଉତ୍ତର ଦେଲା—ଯବନ ଅତ୍ୟାଚାରରୁ ଉଦ୍ଧାର ପାଇବା ପାଇଁ ସେ ଗୋଦାବରୀକୁ ଲମ୍ଫ ପ୍ରଦାନ କଲା । ମୁଁ ଆଉ ତାର କୌଣସି ସନ୍ଧାନ ପାଇଲି ନାହିଁ ।

ମୋହନ ଆଚାର୍ଯ୍ୟଙ୍କ ଚରଣତଳେ ପତିତ ହେଲା । ଦୁଃଖର ଦାରୁଣ ଆଘାତରେ ତାର ବୁକୁ ଭିତରଟା ଯେପରି ଭାଙ୍ଗି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । ସେ ଜ୍ଞାନଶୂନ୍ୟ ହୋଇ ପଡ଼ିଲା ।

ଆଚାର୍ଯ୍ୟ ଦୀର୍ଘନିଶ୍ୱାସ ତ୍ୟାଗ କରି କହିଲେ—ଆଶ୍ୱସ୍ତ ହେଲି ବତ୍ସ ତାପରେ ଶିଷ୍ୟର ମସ୍ତକରେ ହସ୍ତ ସ୍ଥାପନ କରି ଆଶୀର୍ବାଦ କଲେ—

"ଦୁଃଖେଷ୍ୱନୁଦ୍‌ବିଗ୍ନ ମନାଃ ସୁଖେଷୁ ବିଗତ ସ୍ପୃହଃ
ବୀତରାଗ ଭୟ କ୍ରୋଧଃ ସ୍ଥିତଧୀର୍ମୁନି ରୁଚ୍ୟତେ ।"

ମୋହନ ଧୀରେ ଧୀରେ ସମ୍ବିତ ଫେରିପାଇଲା । ଆଚାର୍ଯ୍ୟ ସେ ପର୍ଯ୍ୟନ୍ତ ତା ମସ୍ତକରେ ଅଭୟ ହସ୍ତ ସ୍ଥାପନ କରି ଚକ୍ଷୁ ଅର୍ଦ୍ଧ ନିମୀଳିତ କରି ରହିଅଛନ୍ତି । ସେ ଉଠି ତାଙ୍କ ନିକଟରେ ଆଣ୍ଠୁ ମାଡ଼ି ବସିରହିଲା ।

ଆଚାର୍ଯ୍ୟ କହିଲେ—ବତ୍ସ ଲଳିତା ଆତ୍ମହତ୍ୟା କରିଥିବା ଜାଣି ଆଶ୍ୱସ୍ତ ହେଲି । ସେ ବରଂ ମରୁ, ମାତ୍ର ଯବନମାନଙ୍କ ଦ୍ୱାରା ଅପହୃତା ନ ହେଉ, ଏହା ହିଁ କେବଳ ଏ ଦୀର୍ଘ ଆଠଦିନ ଧରି ମୁଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛି ।

ମୋହନ ବିସ୍ମୟରେ ଆଚାର୍ଯ୍ୟଙ୍କ ମୁହଁକୁ ଅନାଇଲା । ତାର ମନର ଭାବ ବୁଝିପାରି ଆଚାର୍ଯ୍ୟ କହିଲେ ବତ୍ସ ନାରୀ ଏବଂ କ୍ଷତ୍ରୀୟର ସମ୍ମାନ ହେଉଛି ବଡ଼ ଜିନିଷ । ତାହା ଜାଣେବୋଲି କ୍ଷତ୍ରିୟ ନିଜର ଜୀବନ ଦାନ କରେ ପଛକେ, ଅସମ୍ମାନ ନିକଟରେ ମସ୍ତକ ଅବନତ କରେ ନାହିଁ । ସଲ୍ଲଜ ଓ ସଚେତନ ନାରୀ ମଧ୍ୟ ସେହିପରି ଅସମ୍ମାନରୁ ରକ୍ଷା ପାଇବା ପାଇଁ ଜହରବ୍ରତ ପାଳନ କରେ । କାରଣ ସମ୍ମାନ ଥରେ ନଷ୍ଟହେଲେ ତାହା ଫେରେ ନାହିଁ । ମାତ୍ର ଜୀବନ ଗଲେ ତାହା ନବ ରୂପରେ ନୂତନ ଭାବରେ ଫେରିଆସେ—

"ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋଽପରାଣି ।

ତଥା ଶରୀରାଣି ବିହାୟ ଜୀର୍ଣ୍ଣ—
ନ୍ୟନ୍ୟାନି ସଯାତି ନବାନି ଦେହୀ ।”

ଏହି ଆଦର୍ଶ ଉପରେ ହିନ୍ଦୁର ଜନ୍ମାନ୍ତର ବାଦର ସୃଷ୍ଟି । ତର୍କ ଶାସ୍ତ୍ରରେ ଏ ସମ୍ପର୍କରେ ମୂଳଭୂତର ସ୍ପଷ୍ଟ ନିର୍ଦ୍ଦେଶ ରହିଛି । ତହିଁରେ କୁହାଯାଇଛି ଯେ ଏକ ଅସ୍ତିତ୍ୱ ବା ସତ୍ତ୍ୱରୁ ଅନ୍ୟ ଅସ୍ତିତ୍ୱ ବା ସତ୍ତ୍ୱ ଜନ୍ମଲାଭ କରେ । ଶୂନ୍ୟରୁ କୌଣସି ପଦାର୍ଥ ଉତ୍ପତ୍ତି ହୁଏ ନାହିଁ । ପୁଣି ଯାହା ଉତ୍ପତ୍ତି ହୁଏ ତାହା ମଧ୍ୟ ନଷ୍ଟ ହୁଏ । ଉତ୍ପତ୍ତି ଏବଂ କ୍ଷୟ ପ୍ରତ୍ୟେକ ବସ୍ତୁର ଧର୍ମ ବା ନିସର୍ଗ ଅଟେ କେବଳ ଆତ୍ମା ହିଁ ଅବିନଶ୍ୱର ତାହାର କ୍ଷୟ ବା ବୃଦ୍ଧି ନାହିଁ । ତେଣୁ ତାଙ୍କୁ ବ୍ରହ୍ମବୋଲି କୁହାଯାଇଛି । ଏହାର ପାଞ୍ଚୋଟି ରୂପ ହୋଇଛି—ଅନ୍ନମୟ, ପ୍ରାଣମୟ, ମନୋମୟ, ବିଜ୍ଞାନମୟ ଓ ଆନନ୍ଦମୟ ।

ମୋହନ ନିବାକ୍ ।

କି ଆଶ୍ଚର୍ଯ୍ୟ ଏ ମନୁଷ୍ୟ ! କି ଆଶ୍ଚର୍ଯ୍ୟ ଏହାଙ୍କର ସହନ ଶକ୍ତି

ନିଜର ଏକମାତ୍ର କନ୍ୟାର ମୃତ୍ୟୁରେ ଦୁଃଖନାହିଁ । ମନେହୁଏ, ସତେ ଯେପରି ଏହାଠାରୁ ଆହୁରି ଏକ ସୁନ୍ଦର ଓ ନିରାପଦ ସ୍ଥାନକୁ ସେ ଆତ୍ମଜାକୁ ଶାନ୍ତିରେ ରହିବାପାଇଁ ପଠାଇ ଦେଇଛନ୍ତି । ତେଣୁ ଶାନ୍ତ ଓ ନିର୍ବିକାର ! କୌଣସି ଦୁଃଖ ବା ଶୋକ ତାଙ୍କୁ ସ୍ପର୍ଶ କରିପାରିନାହିଁ ।

ଆଚାର୍ଯ୍ୟ ପୁଣି କହିଲେ-ବତ୍ସ ! “ଉତ୍ତିଷ୍ଠତ, ଜାଗ୍ରତ ପ୍ରାପ୍ୟବରାନ ନିବୋଧନ ।”

ଉଠ, ଜାଗ, ମୋହ ନିଦ୍ରା ପରିହାର କରି ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନପାଇଁ ଅଗ୍ରସର ହୁଅ ! ଯାହା ଚାଲିଗଲା ତାପାଇଁ ଶୋଚନା କାହିଁକି କରୁଛ ? ଯାହା ଆସିବ ତାହାପାଇଁ ପ୍ରସ୍ତୁତ ହୁଅ । ମନେରଖ, ଯେଉଁମାନେ ଉତ୍ତମ ମନୁଷ୍ୟ, ସେମାନେ ସୁଖ ବା ଦୁଃଖ ଉଭୟଙ୍କୁ ଶାନ୍ତ ଭାବରେ ଗ୍ରହଣ କରନ୍ତି । ଯେଉଁମାନେ ମଧ୍ୟମ ସେମାନେ ମୁହୂର୍ତ୍ତିକପାଇଁ ବିଚଳିତ ହୋଇ ପଡ଼ନ୍ତି । ଠିକ୍ ଯେପରି ସ୍ଥିର ଜଳରେ କୌଣସି ଆଘାତହେଲେ ତହିଁରେ ଲହରୀ ସୃଷ୍ଟିହୁଏ ଏବଂ ମୁହୂର୍ତ୍ତିକ ମଧ୍ୟରେ ତାହା ପୁଣି ଉଭେଇଯାଏ । ମାତ୍ର ଯେଉଁମାନେ ସାଧାରଣ ମନୁଷ୍ୟ ସେମାନେ ସୁଖରେ ଯେପରି ଆତ୍ମହରା ହୋଇପଡ଼ନ୍ତି, ଦୁଃଖରେ ମଧ୍ୟ ସେହିପରି ବିଚଳିତ ହୋଇପଡ଼ନ୍ତି । ତେଣୁ ଦୁଃଖ ବା ବିପଦ ସେମାନଙ୍କୁ ନଷ୍ଟ କରିଦିଏ । ଦୁଃଖରୁ ଦୈନ୍ୟତା ଜନ୍ମଲାଭ କରେ ।

ତା ମଧ୍ୟରୁ ଯେଉଁ ସୃଜନଶକ୍ତି ଜାତହୁଏ, ତଦ୍ଦ୍ୱାରେ ଅନ୍ଧାର ନଗରୀ ନିର୍ମିତ ହୁଏ । ଅପହରଣ ପ୍ରବୃତ୍ତି ବଳବାନ ହୁଏ, ମାନବ ବଣର ପଶୁପରି ହେୟ ଅବସ୍ଥାରେ ପହଞ୍ଚେ । ମାତ୍ର ପୁନା ଅଗ୍ନିରେ ପ୍ରଜ୍ଜ୍ୱଳିତ ହେଲପରି ଦୁଃଖର ପ୍ରାବଲ୍ୟରେ ସାଧୁର ଚିତ୍ତ ଶୁଦ୍ଧିହୁଏ । ମୃତ୍ୟୁଭୟ ଜାତ ହୁଏନାହିଁ । ମୃତ୍ୟୁପରେ ପ୍ରାପ୍ତ ପରଲୋକ, ବୈକୁଣ୍ଠ ତଥା ମୋକ୍ଷ ଅପେକ୍ଷା ଇହଲୋକରେ ଏହି ଜୀବନରେ ପ୍ରାପ୍ତ ବୈକୁଣ୍ଠ ଅଥବା ମୋକ୍ଷକୁ ସାଧୁ ପରମାର୍ଥମାନେ । ସନ୍ଥ ନିଜକୁ ବୈକୁଣ୍ଠର ନାଗରିକ ବୋଲି ମନେ କରେ ।

ପ୍ରବଳ ଝଞ୍ଜାର ଆଲୋଡ଼ନପରେ ତରଙ୍ଗ ଶାନ୍ତ ରହିଲେ ଯେପରି ସମୁଦ୍ରର ମହାନତା ଓ ଉଦାରତା ଜଣାପଡ଼େ, ଆଗ୍ୟର୍ଯ୍ୟଙ୍କ ଉପଦେଶରେ ସେହିପରି ମୋହନର ହୃଦୟ ଶାନ୍ତ ହୋଇଗଲା । ସେ ପ୍ରଶ୍ନକଲା—ଗୁରୁଦେବ, ଏ ସଂସାର ଏପରି ଦୁଃଖ, ଶୋକରେ ଭରି କାହିଁକି ?

ଆଚାର୍ଯ୍ୟ ଉତ୍ତରଦେଲେ—ନାଁ ବତ୍ସ, ଏ ସଂସାର ଦୁଃଖ ବା ଶୋକରେ ଭରି ହେବ କାହିଁକି ? ଏହା ଆମ ସ୍ୱଭାବରୁ ଜାତହୁଏ । ଶ୍ରେୟ ଓ ପ୍ରେୟ ଜୀବର ଦୁଇଟି ଧର୍ମ । ବୁଦ୍ଧିର ଜଡ଼ତା କାରଣରୁ ମାନବ ତାତ୍କାଳିକ କ୍ଷଣିକ ସୁଖକୁ ପାଇବା ଅଭିଳାଷରେ ପ୍ରେୟ ପ୍ରତି ଆକୃଷ୍ଟ ହୁଏ । ତେଣୁ ଏ ଦୁଃଖବାଦର ସୃଷ୍ଟି । ଭାରତୀୟ ଦର୍ଶନରେ ବୁଦ୍ଧିକୁ ସାରଥି, ଇନ୍ଦ୍ରିୟମାନଙ୍କୁ ଅଶ୍ୱ, ମନକୁ ବାଗ୍‌ଡ଼ୋର ଏବଂ ଆତ୍ମାକୁ ରଥିବୋଲି କୁହାଯାଇଛି । ଏହାର ଅର୍ଥ ହେଉଛି—ବୁଦ୍ଧି ହିଁ ମନକୁ ସଂଯତ କରି ଇନ୍ଦ୍ରିୟ ମାନଙ୍କୁ ବଶୀଭୂତ କଲେ ଆତ୍ମାର ଜୟ ସୁନିଶ୍ଚିତ । ଯେତେବେଳେ ଯେଉଁ ହିତ ବସ୍ତୁର ଉଦୟ ହୁଏ ତାହାହିଁ ଶ୍ରେୟମାର୍ଗ ଗ୍ରହଣ କରେ ।

ଆଚାର୍ଯ୍ୟ ପୁଣି କହିଲେ—ବତ୍ସ ! ଯେ କୌଣସି ସଂଗ୍ରାମରେ ରଥୀ ଅପେକ୍ଷା ସାରଥିରମୂଲ୍ୟ ଅଧିକ । ସେଇଥିପାଇଁ ତ ମହାଭାରତ ଯୁଦ୍ଧରେ ପ୍ରବଳ ପ୍ରତାପୀ ନାରାୟଣ ସେନାଙ୍କ ବଦଳରେ ଅର୍ଜ୍ଜୁନ କେବଳ ଶ୍ରୀକୃଷ୍ଣଙ୍କୁ ସାରଥି ରୂପରେ ଗ୍ରହିଥିଲେ । ଯଦି ଶ୍ରୀକୃଷ୍ଣ ନ ଥାନ୍ତେ ତେବେ ଭୀଷ୍ମ ଦ୍ରୋଣଙ୍କ ପରି ମହା ମହା ଧନୁର୍ଦ୍ଧାରୀ ମାନଙ୍କୁ ଅର୍ଜ୍ଜୁନ କଣ ଜୟକରି ପାରିଆନ୍ତେ ?

ତେଣୁ ଆମର ଉପନିଷଦ ଯୁଗରେ ଦୁଃଖବାଦର ନାମ ନିଶାଣ ପର୍ଯ୍ୟନ୍ତ ନ ଥିଲା । ବୈଦିକ ମନ ବିଶ୍ୱଶକ୍ତିର ଆରାଧନା ଏବଂ ସାଧନା କରି ସାଂସାରିକ ସମୃଦ୍ଧି ଅର୍ଜ୍ଜନ କରିବାରେ ନିମଗ୍ନ ଥିଲେ । ବାଳକ ତଥା ଯୁବକ ମନରେ ସମାନ ଭାବରେ

ଉତ୍ସାହ କ୍ରୀଡ଼ା କରୁଥିଲା । ଶସ୍ୟ ସମ୍ପନ୍ନାଭୂମି ତାକୁ ସାକ୍ଷାତ ଜନନୀ ପରି ପ୍ରତୀତ ହେଉଥିଲା । ମେଘ ତଥା ବଜ୍ର ନିର୍ମାଣକାରୀ ବାୟୁ ତାର ସୁହୃଦ ଥିଲା । ସୂର୍ଯ୍ୟ ଥିଲା ପରମମିତ୍ର ଏବଂ ସ୍ୱର୍ଗନିବାସୀ ଦେବତା ସଂସାରର ନିର୍ମାଣରେ ନିରନ୍ତର ଯତ୍ନଶୀଳ ଥିବାର ଦୃଷ୍ଟିଗୋଚର ହେଉଥିଲା । ଅନ୍ନ, ପଶୁ, ପ୍ରଜା, ନିରାମୟ ଶରୀର ଦୀର୍ଘାୟୁଷ ଆଦି ଭୌତିକ ସାଧନ ଏବଂ ଦେବତା ଆରାଧନା ମରଣପରେ ସେମାନଙ୍କର ସ୍ୱର୍ଗର କାରଣ ହେଉଥିଲା । ଐହିକ ବିଭବ ତଥା ପାରଲୌକିକ-ସ୍ୱର୍ଗ ଦୁଇଟିର ପ୍ରେରକଶକ୍ତି ବୈଦିକ ମାନବପାଇଁ ଏକ ମନେ ହେଉଥିଲା । ତେଣୁ ବୈଦିକ ବାଙ୍ମୟରେ ଆଧ୍ୟାତ୍ମିକ ଆନନ୍ଦ ତଥା ଆଧିଭୌତିକ ସୁଖ ଦୁଇଟିର ସମ୍ପୂର୍ଣ୍ଣ ସମନ୍ୱୟ ଥିଲା ।

ସମୟରେ କାଳର ରଥଚକ୍ରର ଗତି ପରିବର୍ତ୍ତିତ ହେଲା । ଯାହା ପୁରାତନ ଥିଲା, ତାହା ନୂତନ ରୂପ ନେଲା । ତେଣୁ ପରବର୍ତ୍ତୀଯୁଗର ମାନବ ଘୋଷଣା କଲେ—

"ଯାବତ୍ ଜୀବେତ୍ ସୁଖଂ ଜୀବେତ୍ ।<br>ଋଣଂ କୃତ୍ୱା ଘୃତଂ ପିବେତ୍ ।"

ଫଳରେ ଇନ୍ଦ୍ରିୟ ଲାଳସା ଏବଂ ଭୌତିକ ବିଭବର ଅଭିଳାଷ ବୃଦ୍ଧି ପାଇଲା । ଯୁଦ୍ଧ, ସଂଘର୍ଷ ଓ ରାଜ୍ୟ ବୃଦ୍ଧିର ଲିପ୍ସା ବଢ଼ିଲା । ତେଣୁ ଦୁଃଖବାଦର ସୃଷ୍ଟିହେଲା । ମାତ୍ର ପ୍ରକୃତରେ ମାନବ ହେଉଛି—ଅମୃତର ସନ୍ତାନ । ଏହି ଅମୃତ କଣ ? ଅମୃତର ରକ୍ଷକ ଦେବତା କିଏ ? ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ବାୟୁ, ଆପ, ତେଜ, ପୃଥ୍ୱୀ, ଦ୍ୟୁଲୋକ ଓ ଉଷା ଆଦି ଦେବତା ଅମର କାହିଁକି ? ଏ ପ୍ରଶ୍ନ ଗୁଡ଼ିକର ଉତ୍ତର ପାଇବା ପାଇଁ ବୈଦିକ ମାନବ ଯେତେବେଳେ ଯଜ୍ଞର ସୃଷ୍ଟିକଲା, ସେତେବେଳେ ସେ ଆଧ୍ୟାତ୍ମିକ ଆନନ୍ଦର ସ୍ୱାଦ ଲାଭ କରିପାରିଥିଲା । ତେଣୁ ତାକୁ କୁହାଯାଉଥିଲା— 'ଅମୃତସ୍ୟ ପୁତ୍ରାଃ ।' ଏ ପ୍ରକାର ଆନନ୍ଦ ମାନବକୁ ଶ୍ରେୟ ଆଡ଼କୁ ଆକୃଷ୍ଟ କଲା । ତେଣୁ ତାର ପୂର୍ଣ୍ଣତା ହିଁ ନିଶ୍ଚିତ ରୂପରେ ପରମାର୍ଥ କୁହାଗଲା ଧନ, ସମ୍ମାନ, ତଥା ଇନ୍ଦ୍ରିୟ ସୁଖଦ୍ୱାରା ପ୍ରାପ୍ତ ଆନନ୍ଦ ବିବେକବାନ ଆଖିରେ ଆନନ୍ଦର ଆଭାସମାତ୍ର । କାରଣ ବିଷୟ ସୁଖର ଏହି ଅନୁଭୂତି ମୂଳରେ ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ଭାବରେ ତୃଷ୍ଣାର ଅଗାଧ ଅସ୍ୱଚ୍ଛତା ଜ୍ୱାଳାମୁଖୀ ପାହାଡ଼ ପରି ଲୁଚି ରହିଥାଏ । ତାହା ହିଁ ମାନବକୁ ଅଶାନ୍ତ ଓ ଅସନ୍ତୋଷ ପଥକୁ ଟାଣି ନେଇଯାଏ ।

ଆଗ୍ନର୍ଯ୍ୟ ଆକାଶକୁ ଅନାଇଲେ । ରଜନୀ ଦ୍ୱିତୀୟ ଯାମରେ ଉପନୀତ । ଧବଳ ମେଘଖଣ୍ଡମାନ ଆକାଶରେ ଭାସି ବୁଲୁଛନ୍ତି ।

ସେ ନିର୍ନିମେଷ ନୟନରେ ନକ୍ଷତ୍ରମାନଙ୍କ ଗତିବିଧି ନିରୀକ୍ଷଣ କଲେ । ଦେଖିଲେ—ପୂର୍ବାକାଶରେ ନକ୍ଷତ୍ରଟିଏ ଖସିପଡ଼ି ଅନନ୍ତ ଆକାଶ ବକ୍ଷରେ ବିଲୀନ ହୋଇଗଲା ।

ଆଗ୍ନର୍ଯ୍ୟ ଉଦ୍‌ବିଗ୍ନ ସ୍ୱରରେ ମୋହନକୁ କହିଲେ—ବତ୍ସ ଆକାଶରେ କାଳ ପୁରୁଷ ସ୍ଥାନ ଚ୍ୟୁତ ହୋଇଛୁ । ଏଣେ ଉଲ୍‌କାପାତ ହେଲାଣି । ଫଳରେ ରାଷ୍ଟ୍ର ବିପ୍ଳବ ଅନିବାର୍ଯ୍ୟ । ମୋର ମଧ ଶେଷ ସମୟ ଉପସ୍ଥିତ ହେଲାଣି । ମୁଁ ଆଜି ସମାଧି ଯୋଗରେ ପରମାତ୍ମାଙ୍କ ଶ୍ରୀଚରଣରେ ମନୋନିବେଶ କରୁଛୁ । ପ୍ରଭାତ ହେବା ସଙ୍ଗେ ସଙ୍ଗେ ମୋର ପ୍ରାଣ ପକ୍ଷୀ ଶରୀର ପିଞ୍ଜର ପରିତ୍ୟାଗ କରି ଚାଲିଯିବ । ସେତେବେଳେ ତୁମେ ମୋତେ ସମାଧି ଦେଇ ନିଜ ଇଚ୍ଛା ଅନୁସାରେ କାର୍ଯ୍ୟ କରିବ ।

ମୋହନ ଆଗ୍ନର୍ଯ୍ୟଙ୍କ କଥାଶୁଣି ଚମକି ପଡ଼ିଲା । ସେ ବାଷ୍ପ ଗଦ୍‌ଗଦ କଣ୍ଠରେ କହିଲା—ନାଁ ଗୁରୁଦେବ । ଆପଣ ଦେହତ୍ୟାଗ କରନ୍ତୁ ନାହିଁ, ମୋ ର ମନେହୁଏ ଲଳିତା ବଞ୍ଚି ରହିଛୁ । ସେ ଯେଉଁଠି ଥିଲେ ମଧ ମୁଁ ତାକୁ ଖୋଜି ଆଣିବି ।

ଆଗ୍ନର୍ଯ୍ୟ କ୍ଷୀଣ ହସ ହସି ଉତ୍ତରଦେଲେ—ନାଁ ବତ୍ସ ସେଥିପାଇଁ ଚିନ୍ତିତ ହୁଅନାହିଁ । ମୋର ପ୍ରୟୋଜନ ମେଣ୍ଟି ଯାଇଛୁ । ଆଉ ଏ ଜରାକ୍ଳାନ୍ତ ଶରୀରକୁ ବହନ କରି ବଞ୍ଚି ରହିବାକୁ ଇଚ୍ଛା ହେଉନାହିଁ । ଜନ୍ମ ମୃତ୍ୟୁ ଏ ସଂସାରର ନିତିଦିନର ଖେଳ । ତା ପାଇଁ ଶୋଚନା କାହିଁକି ? ତୁମେ ଆଶ୍ୱସ୍ତ ହୁଅ । ଯଦି କେବେ ଲଳିତାକୁ ଭେଟିବ, ତେବେ ତାକୁ ମୋର ଅନ୍ତରର ଆଶୀର୍ବାଦ ଜଣାଇ ଦେବ । ମୋତେ ଆଉ ମୋର ଲକ୍ଷ୍ୟ ପଥରୁ ଫେରାଇ ଆଣ ନାହିଁ ।

ମୋହନ ଆଗ୍ନର୍ଯ୍ୟଙ୍କ ଚରଣଧୂଳି ନେଇ କହିଲା—ଗୁରୁଦେବ, ମୁଁ କଣ କରିବ, ମୋତେ କହିଦଅନ୍ତୁ । ମୁଁ ଯେ ବର୍ତ୍ତମାନ ସର୍ବଶୂନ୍ୟ ହୋଇପଡ଼ିଲି ।

ମୋହନ ଶ୍ରେଷ୍ଠ ଶିଲ୍ପୀଙ୍କ ପରି କହିଁ କହିଁ ହୋଇ କାନ୍ଦିଉଠିଲା । ଆଗ୍ନର୍ଯ୍ୟ ସସ୍ନେହରେ ତା ମସ୍ତକରେ ହସ୍ତ ସ୍ଥାପନ କରି କହିଲେ—"ବତ୍ସ ଜ୍ଞାନରୂପୀ ପାବକକୁ ଅରଣ୍ୟର ଯଜ୍ଞବେଦୀରୁ ଆହରଣ କରି ଘରର ପ୍ରଦୀପ ଜାଳିବାରେ ବ୍ୟବହାର କର ।" ଅର୍ଥାତ୍ ଆଜିପର୍ଯ୍ୟନ୍ତ ଯେଉଁ ଅଧ୍ୟାତ୍ମଜ୍ଞାନ ଅରଣ୍ୟର ପର୍ଣ୍ଣକୁଟୀରରେ ସିଦ୍ଧ ସାଧକ ମାନଙ୍କ ନିକଟରେ ଆବଦ୍ଧ ଥିଲା ତାହା ତୁମେ ସର୍ବୋତଭାବରେ ଲାଭ କରିଛ ।

ବର୍ତ୍ତମାନ ସେଗୁଡ଼ିକ ଘରେ ଘରେ, ପ୍ରତି ପଲ୍ଲୀରେ; ନଗର ପ୍ରାନ୍ତରରେ ବର୍ଦ୍ଧିତ ଅଛି । ଏ ଜାତି ଜାଗ୍ରତ ହେଉ—ଏ ଦେଶର ଉନ୍ନତି ସାଧିତ ହେଉ ! ମାନବ ପାଶବିକତା ପରିହାର କରୁ । ତୁମେ ସେହି ପବିତ୍ର ପାବକଙ୍କୁ ଆବାହନ କରି କୁହ—

"ଅୟଂ ହୋତା ପ୍ରଥମଃ ପଶ୍ୟତେମ ମିଦଂ
ଜ୍ୟୋତିରମୃତଂ ମର୍ତ୍ତ୍ୟେଷୁ
ଅୟଂ ସ ଯଜ୍ଞେ ଧ୍ରୁବ ଆନିଷତ୍ତୋଽ ମର୍ତ୍ତ୍ୟ-
ସ୍ତନ୍ୱା ବର୍ଦ୍ଧମାନଃ ।"

ହେ ଅଗ୍ନି, ମୁଁ ମର୍ତ୍ତ୍ୟ ଏବଂ ମିତ୍ରତା ପ୍ରେମର ଦୀପ୍ତି ପ୍ରଦର୍ଶକ ତୁମେ ଅମର୍ତ୍ତ୍ୟ । ଆମେ ଦୁହେଁ ଏକ ହୋଇଗଲେ । ଅମର ଦେବତାଙ୍କୁ ନିମନ୍ତ୍ରଣ କରୁଥିବା ହେ ଅଗ୍ନି ତୁମେ ମର୍ତ୍ତ୍ୟ ଓ ମୃତ୍ୟୁକୁ ଭକ୍ଷଣ କରୁଥିବା ଅମରଜ୍ୟୋତି । ତୁମେ ତନୁ ଧାରଣ କରି ଉତ୍ପନ୍ନ ହୁଅ । ଅମର୍ତ୍ତ୍ୟ ସର୍ବତ୍ର ଧ୍ରୁବ ଏବଂ ଅଟଳ । ମୁଁ ମର୍ତ୍ତ୍ୟ ସେହି ଅମର୍ତ୍ତ୍ୟକୁ ଆହ୍ୱାନ କରୁଛି ।

ଆଚାର୍ଯ୍ୟ ସମାଧିରେ ବସିଲେ । ମୋହନ ବିନିଦ୍ର ଭାବରେ ପ୍ରହର ଗଣିବାରେ ଲାଗିଲା । କ୍ରମେ ଅରୁଣାଲୋକ ପୃଥିବୀ ପୃଷ୍ଠରେ ପତିତ ହେଲା । ଉଷା ବନ୍ଦନାର ମଙ୍ଗଳଧ୍ୱନି କର୍ଣ୍ଣ କୁହରରେ ପ୍ରବେଶ ମାତ୍ରେ ଆଚାର୍ଯ୍ୟ ଅନ୍ତିମ ନିଃଶ୍ୱାସ ତ୍ୟାଗ କଲେ ।

ମୋହନ ଆଚାର୍ଯ୍ୟଙ୍କର ଶେଷକୃତ୍ୟ ସମାପନ କରି ନଦୀକୁ ସ୍ନାନ କରିବା ଉଦ୍ଦେଶ୍ୟରେ ଚାଲିଗଲା । ଗୁରୁଙ୍କ ମହାପ୍ରସ୍ଥାନରେ ସମସ୍ତ କାର୍ଯ୍ୟ ଶେଷହେଲେ ସେ ଚାଲିବ ଅନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ।

"କେତେ ରଙ୍ଗେ ଭରିଛି ଏ ସଂସାର
କା'ର ସୁନାରେ ମିଶିଛି ସୋହାଗ ।
କା'ର ଜୀବନଟା ହୁଏ ଅସାର ।"

ବାସ୍ତବରେ ଏ ସଂସାର ବୈଚିତ୍ର୍ୟମୟ । ଏଠାରେ ସ୍ୱପ୍ନବୃକ୍ଷରେ ଯେପରି ଜୀବନର ଫୁଲ ଫୁଟେ, କଳିକା ଅବସ୍ଥାରେ କେତେ କୁସୁମ ସେହିପରି ଭୂଲୁଣ୍ଠିତ ହୁଏ । କେତେ ହୁଏ କୀଟଭ୍ରଷ୍ଟ; କେତେ ବା ଝଡ଼ପଡ଼େ ପ୍ରସ୍ଫୁଟିତ ଯୌବନରେ ।

କେତେ ମାନବ ହସି ହସି ନିତ୍ୟ ନୂତନ ଡାଲି ସଜାଇ ଜୀବନ ବିତାଇ ଦିଅନ୍ତି, କେତେ ହା ହୁତାଶ ଓ ଦୀର୍ଘଶ୍ୱାସରେ ବ୍ୟର୍ଥରେ ପ୍ରହର ଗଣନା କରନ୍ତି । ତେଣୁ ସ୍ଥାନ, କାଳ ଓ ପାତ୍ର ବ୍ୟତୀତ ଆଉଗୋଟିଏ ଜିନିଷକୁ ଆମେ ସ୍ୱୀକାର ନ କଲେ ମଧ୍ୟ ମୁଣ୍ଡପାତି ତାର ଅମୋଘ ନିୟମକୁ ମାନି ନିଅନ୍ତି । ସେ ତା ନିଜ ଇଚ୍ଛାଅନୁସାରେ ମନୁଷ୍ୟକୁ ହସାଏ, କନ୍ଦାଏ, ଉଦ୍‌ବେଳିତ କରେ ଆନନ୍ଦରେ, କେତେବେଳେ ବା ଭୂଲୁଣ୍ଠିତ କରେ ଦାରୁଣ ବେଦନାରେ ।

ମାନବ ତାର ନାମ ଦେଇଛି ନିୟତି ।

ଅଲଂଘ୍ୟ ତାର ଆଦେଶ—ଦୁର୍ନିବାର ତାର ଗତିପଥ । କାହାରି ମୁହଁକୁ ଚାହିଁ ସେ ତାର ଗତିପଥ ବଦଳାଏ ନାହିଁ କି, କାହାରି ହସ-କାନ୍ଦ, ହରଷ-ବିଷାଦରେ ସେ ଅଂଶ ଗ୍ରହଣ କରେ ନାହିଁ । କେତେବେଳେ ସେ ହୁଏ ଫୁଲପରି କୋମଳ, କେତେବେଳେ ବା ବଜ୍ରପରି କଠିଣ । ତା ହାତର ଯାଦୁ ଦଣ୍ଡରେ ସମସ୍ତେ ମୋହିତ । ଯେଉଁ ଅଜ୍ଞାତପୁରରେ ତାର ଗତିପଥ ନିୟନ୍ତ୍ରିତ ହୁଏ, ତାହା ଶିବ ବ୍ରହ୍ମାଙ୍କ ମଧ୍ୟ ଅଗୋଚର ।

ଡାହୁକ ଓ କୁମ୍ଭାଟୁଆର ଧ୍ୱନିରେ ନିଶା ଅବସାନର ସୂଚନା ମିଳିଲା । ପ୍ରଭାତର ସ୍ନିଗ୍ଧ ସମୀରଣ ବହି ଆସିଲା ଗୋଦାବରୀର ତଟଦେଶରୁ ।

ପୂର୍ବ ଆକାଶ ରକ୍ତାଭ । ଉଷା ଆସୁଛି । ରାତ୍ରୀ ଧରିତ୍ରୀର ଆଲିଙ୍ଗନ ଛାଡ଼ି ଚାଲିଯାଉଛି । ମୋହନ ପୂର୍ବ ଆକାଶକୁ ଦୃଷ୍ଟିପାତ କଲା ।

ଦୂର ଦିଗନ୍ତରେ ଯେଉଁଠି ଆକାଶ ଓହ୍ଲାଇ ଆସି ଧରଣୀକୁ ଚୁମ୍ବନ ଦେଉଛି ସେଠାରେ ଆହୁରି ଅଧିକ ଲାଲ ହୋଇ ଉଠିଲା ।

ମୁହୂର୍ତ୍ତେ ବିତିଲା ।

ଦିଗପାଦାଢ଼ ମଝିରୁ ସୀମନ୍ତିନୀର ସିନ୍ଦୂର ବିନ୍ଦୁପରି ଲାଲ ଟିପାଟିଏ ମହୋଦଧି କୂଳରୁ ଆକାଶକୁ ଉଠିଲା । କ୍ରମଶଃ ତାହା ଆହୁରି ଉପରକୁ ଗତିକଲା ।

ମେଘଖଣ୍ଡମାନ ଠେକୁଆ, ବଳୁଆ, ହସ୍ତୀ, ମତ୍ସ୍ୟ ପ୍ରଭୃତି ବିଭିନ୍ନ ରୂପରେ ଆକାଶ ଅଗଣାରେ ଏଣେ ତେଣେ ଉଡ଼ି ବୁଲିଲେ । ପ୍ରଭାତର ଆଗମନରେ ବନ-ବିଥିତଳେ ଆଲୋକ ଛାୟାର ଲୁଚକାଳି ଖେଳ ଚାଲିଲା ।

ଶାନ୍ତ, ସ୍ନିଗ୍ଧ ଓ ମନୋହର ପ୍ରକୃତି । ସୁରଭିମନ୍ଦ ମୃଦୁ ସମୀରଣ ।

ମର୍ମର ଶବ୍ଦରେ ସବୁଜ ପତ୍ରଟିଏ କେଉଁଠି ମୁଣ୍ଡ ହଲାଏ । ପ୍ରଜାପତି ଘୂରିବୁଲେ, ପକ୍ଷୀ ଉଡ଼େ, କାକଳୀ ତୋଳେ, ବନର ପ୍ରାଣୀ ଦୌଡ଼ିବୁଲେ ଅରଣ୍ୟ ମଧ୍ୟରେ ।

ମୋହନ ଆଜି ନିଃସଙ୍ଗ । କାହାରି ସହିତ ପଦେ କଥା କହିବାକୁ ସୁଯୋଗ ନାହିଁ । ବ୍ୟଥା ଓ ବେଦନାରେ ହୃଦୟଟା ଥରଉଠେ । ଅଥଚ କେତେ ମଧୁ ଗନ୍ଧଭରା ଦିବସ ଯେ ଏଠାରେ ବିତିଛି ତାର ହିସାବ ନାହିଁ, ତାହା କେବଳ ଲିପିବଦ୍ଧ ହୋଇରହିଛି ମହାକାଳର ଖାତାରେ ।

କ୍ରମେ କାଳର ଚକ୍ର ଘୂରିଲା । ସେହି ଦୂର୍ଣ୍ଣୀୟମାନ ଚକ୍ରର ଗତିରେ ଆଜି ଚଣ୍ଡାଳ ଉଠୁଛି ଉପରକୁ । ନ୍ୟାୟ, ନିଷ୍ଠ, ସାଧୁ, ଭଦ୍ର ସନ୍ତାନ ବିବେକ ଆଖିରେ ଧୂଳିଦେଇ ଚୌର୍ଯ୍ୟବୃତ୍ତିରୁ ଗୌରବ ଖୋଜି ପାଉଛି । ଅନ୍ନ ବସ୍ତ୍ର ଓ ଆଶ୍ରୟ ଅଭାବରୁ ମାନବର ମାନବିକତା ଲୋପ ପାଉଛି ।

ମାତ୍ର ପଚାଶବର୍ଷ ତଳର କଥା । ସେ ସମୟର ବୃଦ୍ଧମାନେ ଏବେ ମଧ୍ୟ ସେ କାହାଣୀର ସାକ୍ଷୀ ଦେବାକୁ ଜୀବିତ ଅଛନ୍ତି ।

ଖ୍ରୀଷ୍ଟାବ୍ଦ ୧୫୧୫ ।

ଉତ୍କଳ ଗଜପତି ପ୍ରତାପରୁଦ୍ର ଦେବଙ୍କ ସମୟରେ ରାୟ ରାମାନନ୍ଦ ଏଠାରେ ଶାସନକର୍ତ୍ତା ଥିଲେ । ଭକ୍ତିର ପ୍ରବାହ ଗୋଦାବରୀର ତରଙ୍ଗକୁ ଜୟକରି ସମଗ୍ର ପୂର୍ବ ଉପକୂଳରେ ଗଙ୍ଗାପର୍ଯ୍ୟନ୍ତ ପ୍ରବାହିତ ହୋଇଥିଲା । ଉତ୍କଳର ଜଗନ୍ନାଥ ସଂସ୍କୃତି ସମସ୍ତ ଜମ୍ବୁଦ୍ୱୀପର ଆଦର୍ଶ ହୋଇଥିଲା । ଜଗନ୍ନାଥ ପତିତପାବନ ରୂପ ଧାରଣ କରିଥିଲେ । ଆଚଣ୍ଡାଳ ବ୍ରାହ୍ମଣ ପର୍ଯ୍ୟନ୍ତ ସମସ୍ତେ ଭକ୍ତି ଗଦ୍‌ଗଦ କଣ୍ଠରେ ଗାନ କରିଥିଲେ ମହାମନ୍ତ୍ର —

"ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ
ହରେରାମ ହରେରାମ ରାମ ରାମ ହରେ ହରେ ।"

ଧର୍ମର ଏ ସାମ୍ୟତା ଅବଶ୍ୟ ଉତ୍କଳ ବକ୍ଷରେ ନୂଆ ନୁହେଁ । କଳିଙ୍ଗ ସମ୍ରାଟ ମହା ମେଘବାହନ ଖାରବେଳଙ୍କ ରାଜତ୍ୱ କାଳରୁ ଆଜି ପର୍ଯ୍ୟନ୍ତ ଦୀର୍ଘ ଦୁଇ ହଜାର ବର୍ଷଧରି ଉତ୍କଳ ବକ୍ଷରେ ଯେତେ ସ୍ୱାଧୀନ ନରପତି ରାଜତ୍ୱ କରି ଯାଇଛନ୍ତି, ସମସ୍ତେ ମୁକ୍ତ କଣ୍ଠରେ ଓ ଉଦାର ହୃଦୟରେ ଧର୍ମର ସାମ୍ୟତା ସ୍ୱୀକାର କରି ଯାଇଛନ୍ତି । ସେତେବେଳେ ଧର୍ମର ଅର୍ଥ ଥିଲା—ସତ୍ୟ, ଶାନ୍ତି, ଦୟା, କ୍ଷମା ଓ ପରୋପକାର । ତେଣୁ ବେଦ ଯୁଗରେ ଆର୍ଯ୍ୟ ଋଷିମାନେ କହିଲେ—

"ଯା ମା ସତ୍ୟୋକ୍ତିଃ ପରି ପାତୁ ବିଶ୍ୱତୋ-
ଦ୍ୟାବାଚ ଯତ୍ର ତତ ନନ୍ନହାନି ଚ
ବିଶ୍ୱମନ୍ୟନ୍ନି ବିଶତେ ଯଦେଜତି-
ବିଶ୍ୱାହାପୋ ବିଶ୍ୱାହୋଦେତି ସୂର୍ଯ୍ୟଃ ।"

ଯାହା ସାହାଯ୍ୟରେ ଦିନ ରାତିର କ୍ରମ ଅବାଧ ରୂପରେ ଚଳେ, ଯାହା ଉପରେ ସ୍ଥାବର ଜଙ୍ଗମ ପ୍ରାଣୀମାନଙ୍କର ବଞ୍ଚିରହିବା ନିର୍ଭର କରେ, ଯାହାର ନିର୍ଦ୍ଦେଶରେ ଜଳ ନିରନ୍ତର ପ୍ରବାହିତ ହୁଏ ଏବଂ ଯାହାର ପ୍ରେରଣାରେ ସୂର୍ଯ୍ୟଙ୍କର ନିତ୍ୟ ଉଦୟ ଅସ୍ତ ହୁଏ, ସେହି ସତ୍ୟଉକ୍ତି ମୋତେ ସର୍ବଦା ରକ୍ଷା କରୁ । ଅର୍ଥାତ୍ ମାନବର ସତ୍ୟ ହିଁ ପରମ ଧର୍ମ ।

ଏହାପରେ ଆସିଲା ଜୈନ ଧର୍ମର ଯୁଗ । ତାହାର ସାଧନାରେ ତପ ହେଉଛି ମୁଖ୍ୟ । ଜୈନମାନଙ୍କର ଧାରଣା ଯେ ଅନଶନ ପରି କାୟକ୍ଲେଶରେ ପାପ କ୍ଷୟ ଯାଏ । ତପର ତତ୍ତ୍ୱ ଯକ୍ଷରେ ପ୍ରଥମେ ଦେଖାଦିଏ । ଏଣୁ ଶିବଙ୍କ ପରି ସମସ୍ତ ବିଷୟ ବାସନା ପରିତ୍ୟାଗ କରି ଶ୍ମଶାନରେ ସାଧନାରେ ମନୋନିବେଶ କର । ଶିବ ଯେପରି ବିଶ୍ୱର ରକ୍ଷାପାଇଁ ସମୁଦ୍ର ମନ୍ଥନରୁ ଉତ୍ପନ୍ନ ବିଶ୍ୱ ଧ୍ୱଂସକାରୀ ବିଷକୁ ପାନ କଲେ, ସେହିପରି ସଂସାର ସମୁଦ୍ରରୁ ଯେତେ ନିର୍ଯ୍ୟାତନା, ପାପ, ତାପ ଓ ଅସୂୟା ଉତ୍ପନ୍ନ ହେଉଛି, ତାହା ନିଜ ଶିରରେ ବହନ କରି ବିଶ୍ୱର କଲ୍ୟାଣପାଇଁ ଶାନ୍ତିର ଅମୃତ ବାଣ୍ଟି ଦିଅ । ଅର୍ଥାତ୍ ଶାନ୍ତି ହିଁ ମାନବର ପରମ ଧର୍ମ ।

ବୌଦ୍ଧ ଯୁଗରେ ବୁଦ୍ଧଦେବ କହିଲେ—ଲୋକଙ୍କ ଦୁଃଖର ଦୁର୍ଲଂଘ୍ୟ ପାହାଡ ପଛେ ମୋ ଉପରେ ଅଜାଡ଼ି ପଡ଼ୁ, ମାତ୍ର ଲୋକେ ଦୁଃଖରୁ ମୁକ୍ତ ହୁଅନ୍ତୁ । ଏ ପୃଥିବୀରେ ସତ୍ୟ, ଶାନ୍ତି, ଦୟା, କ୍ଷମା ଓ ସହିଷ୍ଣୁତା ହିଁ ମହତ ଗୁଣ । ଆଘାତ

ସନ୍ନ୍ୟାକର, ମାତ୍ର କାହାରିକୁ ଆଘାତ ଦିଅନାହିଁ । ଅର୍ଥାତ୍ କ୍ଷମା ଓ ଦୟା ହିଁ ପରମଧର୍ମ ।

ଏହାପରେ ଆସିଲା ଭାଗବତ ଧର୍ମ । କୃଷ୍ଣ ଗୋରୁ ଓ ଗୋପାଳମାନଙ୍କୁ ରକ୍ଷା କରିବାପାଇଁ ଦାବାନଳକୁ ଗ୍ରାସ କଲେ । ଇନ୍ଦ୍ର ବିବାଦରେ ମନ୍ଦରଗିରି ଧାରଣ କଲେ, ପୁଣି ସାଧୁମାନଙ୍କ ପରିତ୍ରାଣ ପାଇଁ କଂସ, କେଶୀ, ଚାଣୁର, ମୁଷ୍ଟିକ ଆଦି ଦୁର୍ବୃତ୍ତିମାନଙ୍କୁ ବିନାଶ କଲେ । ତେଣୁ ଭାଗବତ ପ୍ରେମୀମାନେ ଘୋଷଣା କଲେ—ଜନତାର ଦୁଃଖରେ ଦୁଃଖିହୋଇ ସମସ୍ତ ଯାତନା ଓ ସମସ୍ତ ବିପଦକୁ ସହର୍ଷ ନିଜ ଶିରରେ ବହନ କରି ସେମାନଙ୍କୁ ଦୁଃଖ ମୁକ୍ତ କର । ଅର୍ଥାତ୍ ସ୍ୱୟଂ ଶ୍ରୀକୃଷ୍ଣ ବିପତ୍ତି ପାରା-ବାରରେ ନିମଗ୍ନ ହୋଇ ପରୋପକାର କରିବା ହିଁ ଭାଗବତ ଧର୍ମର ନୀତି ।

ମୋଟ ଉପରେ ବୌଦ୍ଧ ଧର୍ମର ସାରମର୍ମ ଅନୁସାରେ ପ୍ରତ୍ୟେକ ଧର୍ମର ମୂଳନୀତି ହେଉଛି----

"ଅର୍ପିତ ହୋ ସ୍ୱହ ମାନବ କାୟ
ବହୁଜନ ହିତାୟ, ବହୁଜନ ସୁଖାୟ ।"

ତେଣୁ ପ୍ରାଚୀନ କାଳରେ ଏ ଧର୍ମ ମାନବ ସଂସ୍କୃତିର ପ୍ରବର୍ତ୍ତକ ତଥା ସଂଗଠକ ଶକ୍ତି ରୂପରେ ବିଦ୍ୟମାନ ଥିଲା । ମାନବର ସ୍ୱଭାବ ବିଶ୍ଳେଷଣ କଲେ ଦେଖାଯାଏ ଯେ ଧର୍ମର ଦ୍ୱୈତ ଓ ଅଦ୍ୱୈତ ଦୁଇଟି ଶାଖା ଅଛି । ଦ୍ୱୈତ ବାଦରେ ପୁଣି ଦୁଇଟି ପ୍ରଶ୍ନ—ଗୋଟିଏ ଐହିକ ଓ ଅନ୍ୟଟି ପାରଲୌକିକ ଅଥବା ଭୌତିକ ଓ ନୈସର୍ଗିକ । ଇନ୍ଦ୍ରିୟ ବାସନା, ବସ୍ତୁ ଉପଭୋଗ ପ୍ରତି ଆକର୍ଷଣ, ଦେହ ତଥା ଇନ୍ଦ୍ରିୟ ଦୁଃଖ ପରିହାର ପାଇଁ କରାଯାଉଥିବା ପ୍ରଯତ୍ନ, ଅର୍ଥ ବେ କାମ ପ୍ରଧାନତା, ଜାତିସ୍ପୃହା ତଥା ସାମାଜିକ ସଙ୍କୀର୍ଣ୍ଣତା ଜନିତ ଅହଙ୍କାର ଆଦି ପ୍ରବୃତ୍ତି ମାନବର ଐହିକତା ବା ଭୌତିକତାର ପରିଚାୟକ । ଦ୍ୱେଷ, ମତ୍ସର, ନିଜ ପରଭେଦ, ପ୍ରତିଶୋଧର ଅଭିଳାଷ, ଧନ ସଂଗ୍ରହ କରି ସ୍ୱାର୍ଥ ସାଧନାରେ ନିରତ ରହିବାର ସ୍ୱାଭାବିକ ନିର୍ବୋଧ ପ୍ରବୃତ୍ତି ହେଉଛି ଭୌତିକ ଗୁଣ । ଏହାର ମାନସିକ ପ୍ରବୃତ୍ତିର ମୂଳସ୍ରୋତ ମାନବକୁ ପଶୁତ୍ୱ ଆଡ଼କୁ ନେଇଯାଏ ।

ଭୌତିକ ଏବଂ ପାଶବିକ ପ୍ରବୃତ୍ତି ଏ ଦୁଇଟିଯାକ ଅଜ୍ଞାନରୁ ଜାତ । ଅଜ୍ଞାନରୁ କଳହ, ହିଂସା, ତଥା ପରସ୍ୱାପହରଣର ପ୍ରବୃତ୍ତି ଜାତ ହୁଏ । ଏ ସବୁକୁ ପାପ

କୁହାଯାଏ । ମୃତ୍ୟୁରେ ଯାଇ ଏହାର ପର୍ଯ୍ୟାବସାନ ହୁଏ । ପୁଣି ପାର ଲୌକିକ ବା ସୁନ୍ଦରତାକୁ ଧାର୍ମିକ ଭାବନା କୁହାଯିବା ସମ୍ଭବ । ଈଶ୍ୱରଙ୍କ ବିଷୟରେ ଅଟଳ ଶ୍ରଦ୍ଧା ହେଉଛି ବାସ୍ତବରେ ପରମ ସତ୍ୟର ସ୍ୱାଭାବିକ ଭାବନାର ଆବିଷ୍କାର । ମାନବର ଅସ୍ପଷ୍ଟ ବା ସ୍ପଷ୍ଟରୂପରେ ବିଦ୍ୟମାନ ସତ୍ୟର ଜିଜ୍ଞାସା, ଆକାଂକ୍ଷା ଏବଂ ତାକୁ ପାଇବାର ବ୍ୟାକୁଳ ଇଚ୍ଛା ହିଁ ମାନବ ଜାତିର ଇତିହାସରେ ଧର୍ମ ଭାବନାର ମୂଳସ୍ରୋତ । ଏହି ଇହଲୋକ ଓ ପରଲୋକ ଅଥବା ପଶୁତ୍ୱ ଓ ସୁନ୍ଦରତ୍ୱର ମଧ୍ୟ ପନ୍ଥାରୂପେ ମାନବିକତା ଜନ୍ମ ଲାଭ କରେ । ତେଣୁ ମନୁଷ୍ୟର ଧର୍ମ, ସଂସ୍କାର, ଇତିହାସ ତଥା ଧାର୍ମିକ ପରମ୍ପରାରେ ସକାମତା ପ୍ରବେଶ କରେ । ଅନ୍ୟ ପକ୍ଷରେ ନିଷ୍କାମ ଭକ୍ତି ହିଁ ଅଦ୍ୱୈତବାଦ । ଉପନିଷଦ ତାର ବ୍ୟାଖ୍ୟା କରି କହିଛନ୍ତି—ପରମ ସତ୍ୟପ୍ରତି ତୀବ୍ରତମ ଆକର୍ଷଣ ଅଥବା ଅପାର ପ୍ରେମ ହିଁ ବାସ୍ତବରେ ନିଷ୍କାମ ଭକ୍ତି । ଏହାକୁ ଅନନ୍ୟ ଭକ୍ତି ମଧ୍ୟ କୁହାଯାଏ ।

ମୋହନ ! ମୋହନ ମୋହନ !!!

ମାଳତୀ କୁଞ୍ଜରୁ ସୁଲଳିତ ସ୍ୱରରେ ଧ୍ୱନିଟିଏ ଭାସି ଆସିଲା । ସେ ଶବ୍ଦରେ ସମସ୍ତ ଉଦ୍ୟାନସ୍ଥଳୀ ସ୍ତବ୍ଧ ହୋଇଗଲା ।

ବିସ୍ମିତ ମୋହନ ଚତୁର୍ଦ୍ଦିଗକୁ ଦୃଷ୍ଟିପାତ କଲା । ନାଁ, କେହି କେଉଁଠି ନାହିଁ । ତେବେ ଏ କଣ ପ୍ରେତାତ୍ମାର ପ୍ରତିଧ୍ୱନି ?

ମୁହୂର୍ତ୍ତିକପାଇଁ ସେ ଶିହରିତ ହୋଇ ଉଠିଲା । ପୁଣିଥରେ ମୃଦୁ ସ୍ୱରରେ ଶବ୍ଦ ହେଲା—ଲଳିତା !

ମୋହନ ଆଶ୍ୱସ୍ତ ହେଲା ।

ଏ ସ୍ୱର ଲହରୀ ଭୁଲିବାର ନୁହେଁ । କୌଣସି କାଳରେ ଭୁଲିବା ମଧ୍ୟ ସମ୍ଭବ ନୁହେଁ ।

ପାଦର ଶବ୍ଦ ଏବଂ କଣ୍ଠର ସ୍ୱର କୌଣସି କାଳରେ ମିଳାଇ ଯାଏନାହିଁ କି ମିଳାଇ ଦିବାମଧ୍ୟ ସମ୍ଭବ ନୁହେଁ ।

ମୋହନ ମାଳତୀକୁଞ୍ଜ ନିକଟକୁ ଯାଇ ଡାକିଲା—ମୀନା ମୀନା ଲଳିତାର ପୋଷା ଶାରୀଟି ଉଡ଼ି ଆସି ମୋହନର କାନ୍ଧ ଉପରେ ବସି ଅଳିକଲା—ଖାଇବାକୁ ଦିଅ ।

ମୋହନ କଣ କରିବ କିଛି ସ୍ଥିର କରି ପାରିଲା ନାହିଁ । ଏ ପ୍ରଶ୍ନଟି ସେ ଏକାବେଳକେ ଭୁଲି ଯାଇଥିଲା । ଅନ୍ୟ କିଛି ଉପାୟ ନ ପାଇ ସେ ତାକୁ ଧରିବା-ପାଇଁ ହାତ ବଢ଼ାଇଲା । ମାତ୍ର ଶାରୀଟି ହଠାତ୍ ଗଛ ଉପରକୁ ଉଡ଼ିଯାଇ ଡାକିଲା—ଲଳିତା ଲଳିତା

ମୋହନର ହୃଦୟରେ କି ଏକ ଆଲୋଡ଼ନ ସୃଷ୍ଟି ହେଲା । ପାଖରେ ଥିବା-ବେଳେ ସେ ଯାହା ବିଷୟ ଥରେହେଲେ ଚିନ୍ତା କରି ନ ଥିଲି, ଆଜି ଦୂରକୁ ଚାଲିଯିବା ପରେ ବାର ବାର ତାର ସ୍ମୃତି ମନ ଭିତରେ ଉଙ୍କି ମାରୁଥାଏ । ବିଗତ ଦିବସର କାହାଣୀ ଗୁଡ଼ିକ କେତେ ରଙ୍ଗରେ ମନ ପୃଷ୍ଠାରେ ଆଙ୍କି ହୋଇଯାଏ । ଏହିପରି ବୋଧହୁଏ ସମସ୍ତଙ୍କ ଜୀବନରେ ଘଟେ । ଯେଉଁ ବସ୍ତୁ ଯେତେ ସହଜ ଲଭ୍ୟ ତାର ମୂଲ୍ୟ ବୋଧହୁଏ ସେତେ କମ୍ ।

ବାସ୍ତବରେ ଏ ସଂସାରରେ ମନ ଏକ କର୍ଦ୍ଦମାକ୍ତ ଜଳର ହ୍ରଦ । ଯହିଁରେ ତରଙ୍ଗ ନାହିଁ, ସ୍ରୋତ ନାହିଁ—ସ୍ୱଚ୍ଛ ଜଳର ଏକାନ୍ତ ଅଭାବ । ବାହାରରୁ ଲୋଷ୍ଟ୍ର ନିକ୍ଷିପ୍ତ ହେଲେ ତାହା ଆନ୍ଦୋଳିତ ହୋଇ ଉଠେ, ମାତ୍ର ଅନ୍ୟ ସମୟରେ ନିସ୍ତରଙ୍ଗ !

ଏହି ନିଃଶବ୍ଦ ଉଦାସ ଦ୍ୱିପ୍ରହରରେ ସମସ୍ତ ଜୀବନଟା ଯେପରି ଆଗରେ ଆସି ଠିଆ ହୁଏ । ପାଇବା ନ ପାଇବାର ହିସାବ ନେଇ ନିଜକୁ ବିଶ୍ଳେଷଣ କରିବାକୁ ଇଚ୍ଛା ହୁଏ ।

ନିର୍ଜ୍ଜନ ଦ୍ୱିପ୍ରହର । ପବନର ସ୍ପର୍ଶ ନାହିଁ । କେଉଁଠି ଗୋଟାଏ ଗଛର ପତ୍ର ବି ହଲୁ ନାହିଁ । ଅନେକ ଦୂରରୁ କ୍ଳାନ୍ତ କାକର କର୍କଶ ସ୍ୱର ଭାସି ଆସୁଛି ।

ଏହିପରି ସମସ୍ତ ଜୀବନ ବୋଧହୁଏ କଟିଯିବ···

···ନିସ୍ତରଙ୍ଗ, ବୈଚିତ୍ର୍ୟହୀନ ।

ପ୍ରତ୍ୟାଖ୍ୟାନ ମଧ୍ୟରେ ଯେ ପରାଜୟର ବେଦନା ଥାଏ ମୋହନ ତାହା ଏତେଦିନେ ଅନୁଭବ କଲା ।

ଆଖିଆଗରେ ନାଚିଉଠେ ସୁନ୍ଦର ଏକ ନାରୀମୂର୍ତ୍ତି । ପ୍ରାଣ ମନ୍ଦିରରେ

ଉଚ୍ଛ୍ୱସିତ—ପୂର୍ଣ୍ଣ ଯୌବନ—ସୁଗଠିତ ଦେହ । ସେ ସୌନ୍ଦର୍ଯ୍ୟ ଉଗ୍ର, କିନ୍ତୁ ପରିପୁଷ୍ଟ ଅଧର ଓ ହର୍ଷ ଚିବୁକରେ ଅନନ୍ତ କୋମଳତା । ଅତି ନିକଟରେ ଥିଲେ ମଧ ମୋହନ ତାହା ଲକ୍ଷ୍ୟ କରିନାହିଁ । ଆଜି ବିଚ୍ଛେଦ ପରେ ସେ ରୂପ ଦେଖିବା ପାଇଁ ବ୍ୟାକୁଳ ହୋଇ ପଡ଼ୁଛି ।

ମୋହନ ଆଖିବୁଜି ମୁହୂର୍ତ୍ତେ ଚିନ୍ତା କରେ……

ଦୀର୍ଘ ଗ୍ରୀବା ତାହାର ରଜନୀଗନ୍ଧାର ଦଣ୍ଡ ପରି ସରଳ । ମାତ୍ର ଚକ୍ଷୁ ଦୁଇଟି ସୁସ୍ପର, ନମ୍ର ଓ କରୁଣାସ୍ନ । ବାଳହରିଣୀର ନେତ୍ର ପରି ତାହା କଜ୍ଜଳ ଓ ଚଞ୍ଚଳ । ମୋହନ ଧଳା କଳା, ଓ ନାଳ ରଙ୍ଗର ମୁରୁକରେ ଲଳିତାର ଚିତ୍ର ଅଙ୍କନ କରେ । ଆଜି ତାର ଏ ଚିତ୍ର ଦେଖି ଆଉ କେହି ପରିହାସ କରିବାକୁ ନ ହାନ୍ତି କି କୌତୁହଳ ଦୃଷ୍ଟିରେ ଦେଖିବାକୁ ମଧ କେହି ନାହାନ୍ତି । ଯେଉଁ ଉଦ୍ୟାନର ବୃକ୍ଷ, ଶାଖା-ପ୍ରଶାଖା ଓ ପଲ୍ଲବରେ ବେଦ ଓ ବେଦାନ୍ତର ଭାଷ୍ୟମାନ ମଧୁର ଗୁଞ୍ଜନ ତୋଳୁଥିଲା; ଯାହାର ଅଧିବାସୀ ଶୁକ ଶାରୀମାନେ ମଧ ପ୍ରଭାତରୁ ବେଦଗାନ କରୁଥିଲେ ସେ ଆଜି ସମ୍ପୂର୍ଣ୍ଣରୂପେ ନିସ୍ତବ୍ଧ—ଶ୍ମଶାନତୁଲ୍ୟ ପ୍ରତୀତ ହୁଏ ।

ମୋହନର ମନେ ହୁଏ ସତେ ଯେପରି ଲଳିତାର ସଙ୍ଗେ ସଙ୍ଗେ ଏଠାରୁ ଲକ୍ଷ୍ମୀ ଅନ୍ତର୍ହିତ ହୋଇ ଯାଇଛନ୍ତି । ସେ ତାର କେତେ ଆପଣାର ଏବଂ ହୃଦୟର କେଉଁ ନିଭୃତତମ ପ୍ରଦେଶରେ ଯେ ସେ ନିଜର ସ୍ଥାନ ଅଧିକାର କରିଥିଲା ମୋହନ ଏତେଦିନେ ତାହା ହୃଦୟଙ୍ଗମ କରୁଛି । ମାତ୍ର ଏ ଦୀର୍ଘ ପାଞ୍ଚଟି ବର୍ଷ ମଧରେ ସେ ଥରେହେଲେ ତାକୁ ଭଲଭାବରେ ଅବଲୋକନ କରିପାରି ନାହିଁ ।

ମୋହନ ଫେରିଯାଏ ଅତୀତକୁ । ବାର ବାର ମନ ପୃଷ୍ଠାରେ ଆଙ୍କି ହୋଇ-ଯାଏ ଅତୀତ ଦିନର କାହାଣୀ । ସେ ବିକଳ ହୋଇପଡ଼େ । ଆଚାର୍ଯ୍ୟଙ୍କର ଶୁଦ୍ଧିକ୍ରିୟା ସମାପନ ପାଇଁ ଏ ଦ୍ୱାଦଶଟି ଦିବସ କିପରି ନିଃସଙ୍ଗରେ ବିତାଇବ ତାହାହିଁ ତାର ଏକମାତ୍ର ଚିନ୍ତା ହୋଇପଡ଼ିଛି ।

କେବଳ ସ୍ମୃତିର ରୋମନ୍ଥନ ।



ସେଦିନ ଥିଲା ବାଲି ବିଧନ୍ତର ମନୋରମ ପ୍ରଭାତ । ଗୋଟିଏ ଦିଗରେ

କିଶଳୟ କୁଞ୍ଜରେ ବସନ୍ତଦୂତ ଏବଂ ଅନ୍ୟ ଡଗରେ କୋଇଲି ବସନ୍ତର ମନୋହର କୂଜନ ସମଗ୍ର ବିଶ୍ୱକୁ ମୋହମୟ କରି ତୋଳୁଥିଲା । ସମୟେ ସମୟେ ମଧୁପର ଝଙ୍କାର ଭାସି ଆସୁଥିଲା ମୃଦୁ ସମୀରଣରେ । ମୋହନ ଅଗ୍ରଯାଏଙ୍କ ଦ୍ୱାରରେ ଉପସ୍ଥିତ ହୋଇ ମୃଦୁ ସ୍ୱରରେ ଉଚ୍ଚାରଣ କରିଥିଲା—ଭିକ୍ଷାଂଦେହି ।

ମୁହୂର୍ତ୍ତେ ବିତିଲା ।

ସେ ପୁଣିଥରେ କହିଲା— ଭିକ୍ଷାଂଦେହି ।

ବାର ତେର ବର୍ଷର କିଶୋରୀଟିଏ ଗୃହ ମଧ୍ୟରୁ ଭିକ୍ଷା ନେଇ ଦ୍ୱାର-ଦେଶକୁ ଆସିଥିଲା ।

କିଶୋରୀଟିର ପାଦର ଗତି ମନ୍ଥର, ମାତ୍ର ଚକ୍ଷୁର ଗତି ପ୍ରଖର । ଯୌବନ ବସନ୍ତ ତାର ପହିଲି ପରଶ ତନୁଲତାରେ ଢାଳି ଦେଇଛି । ବର୍ଣ୍ଣ ଉଜ୍ଜ୍ୱଳ । ପରିଧାନ କଳିଙ୍ଗର ଏକ ସୂକ୍ଷ୍ମ ଗୈରିକ ବସ୍ତ୍ର, ବକ୍ଷରେ କାଞ୍ଚଳି, ସୁହାଣୀ ହାସ୍ୟମୟ କଳୁ ଭାସ୍ୱର—ଆକାଶପରି ଉଜ୍ଜ୍ୱଳ ଏବଂ କରୁଣମୟ । ମୁଖ ବିମ୍ବ ମଣ୍ଡିତ । ଅଯତ୍ନ ରକ୍ଷିତ ଅଳକଗୁଚ୍ଛ ମୁଖର ଚତୁର୍ଦ୍ଦିଗରେ ବିକ୍ଷିପ୍ତ ହୋଇ ପଡ଼ିଛି । ଦେଖିଲେ ମନେହୁଏ—ସତେ ଯେପରି ଶୈବାଳଦାମ ଆଚ୍ଛାଦିତ ଅର୍ଦ୍ଧସ୍ଫୁଟ ପଙ୍କଜ କଳିକା ।

କିଶୋରୀ ଦ୍ୱାରଦେଶରେ ଉପସ୍ଥିତ ହୋଇ ଆଗନ୍ତୁକ ଭିକ୍ଷୁକକୁ ଟିକିଏ ବକ୍ରଦୃଷ୍ଟିରେ ଚାହିଁଦେଲା । ସେହି ମୁହୂର୍ତ୍ତିକ ଦୃଷ୍ଟିପାତରେ ସେ ଯେପରି ଭିକ୍ଷୁକର ସମସ୍ତ ଅନ୍ତର ବେଦନା ଜାଣିନେଲା । ତାର ମନେହେଲା—ଏ ଯେପରି ପ୍ରକୃତ ଭିକ୍ଷୁକ ନୁହେଁ ।

ଯୌବନ ଶାଣରେ ଶାଣିତ ଅଙ୍ଗ ଯଷ୍ଟି—ସବଳ ଓ ସୁଗଠିତ । ସ୍କନ୍ଧରେ ଉପବୀତ । ସୁଗୌର ମୁଖ ମଣ୍ଡଳରେ ଗୋଟିଏ ଦୁଇଟି କୃଷ୍ଣ କେଶ ନାସିକାର ନିମ୍ନ ଭାଗରେ ବିଦ୍ୟମାନ, ପ୍ରଥମ ଯୌବନର ପାବଚ୍ଛରେ ବୋଧହୁଏ ପାଦ ଥୋଇଛି । ପ୍ରଶସ୍ତ ବକ୍ଷ, ବଳିଷ୍ଠ ବାହୁ । ପରିଧାନ ଜୀର୍ଣ୍ଣ ଗୈରିକ ବାସ ।

କିଶୋରୀର କୋମଳ ହୃଦୟରେ ସନ୍ଦେହ ଜାଗରୁକ ହେଲା । ସେ ସନ୍ଦଗ୍ଧ ଭାବରେ ପ୍ରଶ୍ନ କଲା—ମହାଶୟ କଣ ପ୍ରକୃତରେ ଭିକ୍ଷୁକ ।

ଯୁବକ ବିସ୍ମିତ ଭାବରେ କିଶୋରୀର ମୁଖକୁ ଦୃଷ୍ଟିପାତ କରି ମୁହୂର୍ତ୍ତିକରେ ଚକ୍ଷୁ ଫେରାଇ ନେଲା । ଏପ୍ରଶ୍ନର ସେ କି ଉତ୍ତରଦେବ ସ୍ଥିର କରିପାରିଲା ନାହିଁ ।

ଆଜି ପର୍ଯ୍ୟନ୍ତ ଏପରି ତାକୁ କେହି ପ୍ରଶ୍ନ କରିନାହିଁ । କିଏ ଭିକ୍ଷା ଦେଇଛି

ଅବଜ୍ଞାରେ, କେବେବା ତାଚ୍ଛଲ୍ୟଭରା ବାକ୍ୟ ପ୍ରୟୋଗ କରୁଛ । କୌଣସି ଉଦାର ହୃଦୟା ରମଣୀ ପାଖରେ ଠିଆହୋଇ ସମଦୁଃଖି ଭାବରେ ପ୍ରଶ୍ନ କରୁଛ—ବାବୁ, ତୁମର କିଏ ଅଛି ? ପୁଣି ମନ୍ତବ୍ୟ କରୁଛ ଏଭଳି ପୁଅକୁ ମା ଭିକ୍ଷାପାଇଁ କିପରି ପଠାଇଛି ? ମନ୍ତ୍ର କାହାର ବ୍ୟଙ୍ଗ ବିଦ୍ରୂପ ଅଥବା ସହାନୁଭୂତିରେ ସେ ବିଚଳିତ ହୋଇନାହିଁ; ନିଜର ଲକ୍ଷ୍ୟ ଓ କର୍ତ୍ତବ୍ୟରେ ଦୃଢ଼ ରହିଛି । ଆଜି ଏ କିଶୋରୀର ପ୍ରଶ୍ନ ଯେପରି ତାହୃଦୟର ନିଭୃତତମ ପ୍ରଦେଶରେ କି ଏକ ଲହରୀ ସୃଷ୍ଟିକଲା ।

କିଶୋରୀ ପୁଣି ପ୍ରଶ୍ନକଲା—ତୁମର ନାମ କଣ ?

ମୋହନ—ଏକ ସଂକ୍ଷିପ୍ତ ଉତ୍ତର ।

କିଶୋରୀର ଫେରିବାରେ ବିଳମ୍ବ ହେବାରୁ ଆଗନ୍ତୁକ ଦ୍ୱାରଦେଶକୁ ଆସିଲେ । ଦୀର୍ଘ ଦେହ, ବଳିଷ୍ଠ, ବୃଦ୍ଧ । ବଦନ ମଣ୍ଡଳ ସୌମ୍ୟ ଓ ପ୍ରଶାନ୍ତ । ଶ୍ୱେତ ଶ୍ମଶ୍ରୁରାଜି ଓହ୍ଲାଇପଡ଼ିଛି ବକ୍ଷଦେଶକୁ ।

କିଶୋରୀ ସେତେବେଳେ ତାର କ୍ଷୁଦ୍ର ମସ୍ତିଷ୍କରେ ଯେତୋଟି ପ୍ରଶ୍ନ ସମ୍ଭବ, ତାହା ନିର୍ମାଣ କରିବାରେ ବ୍ୟସ୍ତ ।

ବୃଦ୍ଧ ପ୍ରଶ୍ନକରେ—ମା' କାହା ସହିତ ଆଳାପ କରୁଛୁ କି ?

କିଶୋରୀ ଲଜ୍ଜ୍ୟା ବିନମ୍ର ସ୍ୱରରେ ଉତ୍ତରଦେଲା—ବାପା, ଦେଖନ୍ତୁତ, କେତେବଡ଼ ଯୁବକଟିଏ ଭିକ୍ଷା ମାଗିବାକୁ ଆସିଛି ?

ବୃଦ୍ଧ ମୋହନର ଆପାଦ ମସ୍ତକ ଥରେ ଦୃଷ୍ଟି ବୁଲାଇନେଲେ । ତାପରେ ଧୀର ଓ ଶାନ୍ତ ଭାବରେ ପ୍ରଶ୍ନ କଲେ—ବାବୁ, ତୁମେ କଣ ପ୍ରକୃତରେ ଭିକ୍ଷୁକ ନାଁ, ଅନ୍ୟ କୌଣସି କାରଣରୁ ଗୃହ ପରିତ୍ୟାଗ କରି ନିରୁପାୟ ଅବସ୍ଥାରେ ଭିକ୍ଷାବୃତ୍ତି ଅବଲମ୍ବନ କରିଛ ?

ବୃଦ୍ଧଙ୍କର ଏପ୍ରକାର ସ୍ନେହସିକ୍ତ ପ୍ରଶ୍ନରେ ମୋହନର ଚକ୍ଷୁରୁ ଦର ଦର ଧାରେ ଅଶ୍ରୁ ବିଗଳିତ ହେଲା ।

ବୃଦ୍ଧ ତା ନିକଟକୁ ଯାଇ ଆଦରରେ ତା ମସ୍ତକରେ ହସ୍ତ ନିବେଶ କଲେ । ମୋହନ ହୃଦୟର ଯେତେ ଦୁଃଖ, ଶୋକ ଓ ବେଦନା ସବୁ ଯେପରି ଅଶ୍ରୁରୂପରେ ବାହି ଯିବାକୁ ଲାଗିଲା ।

କେତେ ସମୟ ନୀରବରେ କଟିଗଲା । କିଶୋରୀ ବିସ୍ମିତ ଦୃଷ୍ଟିରେ ଥରେ ପିତାଙ୍କ ଆଡ଼କୁ ଓ ଥରେ ଆଗନ୍ତୁକ ଯୁବକ ଆଡ଼କୁ ଚାହିଁବାରେ ଲାଗିଲା ।

ବୃଦ୍ଧଙ୍କ ଆଶ୍ୱାସନାରେ ମୋହନ ଶାନ୍ତ ହେଲା । ତାପରେ ଆଗ୍ନେୟଙ୍କ ନିକଟରେ ବର୍ଣ୍ଣନା କଲା—ତାର ଦୁଃଖ, ଦାରିଦ୍ର୍ୟ ପ୍ରପୀଡ଼ିତ ଜୀବନର କାହାଣୀ ।

ମନୁଷ୍ୟର ମନ ବିଚଳିତ ହୁଏ ସେହି ଗୋଟିଏ ସ୍ଥାନରେ, ଯେଉଁଠି ସ୍ନେହ ଓ ସହାନୁଭୂତିର ଏକତ୍ର ସମାବେଶ ଥାଏ । ଜଣକର ହୃଦୟକୁ ଆଉ ଜଣେ ଜୟକରେ; ଯେଉଁଠି ଦୟା ଓ କୋମଳତାର ସ୍ପର୍ଶଲାଗେ—ଠିକ୍ ଯେପରି ଚୁମ୍ବକର ଆକର୍ଷଣରେ ଲୌହ ଆପେ ଆପେ ଆକର୍ଷିତ ହୁଏ ।

ମୋହନର ଘର ସୁଦୂର ଦକ୍ଷିଣରେ, କୌଣସି ଏକ ଅଜ୍ଞାତ ପଲ୍ଲୀରେ । ପିଲାଟି ଦିନରୁ ସେ ପିତୃ ମାତୃହୀନ । ନିଜର ଜଣେ ନିକଟ ସଂପର୍କୀୟ ଆତ୍ମୀୟଙ୍କ ନିକଟରେ ତାର ବାଲ୍ୟଜୀବନ ଅତିବାହିତ ହୋଇଛି । ବିଦ୍ୟାଶିକ୍ଷାପାଇଁ ପିଲାଟି ଦିନରୁ ତାର ଏକାନ୍ତ ଆଗ୍ରହ ଥିବାରୁ ସେ ଗୃହତ୍ୟାଗ କରିଛି ।

ଆଗ୍ନେୟ ମୋହନର ବିଦ୍ୟାଲାଭ ପ୍ରତି ଆଗ୍ରହ ଦେଖି ତାକୁ ନିଜ ଘରେ ଆଶ୍ରୟ ଦେଇ ବିଦ୍ୟାଦାନ କରିଥିଲେ ।

ଲଳିତା ଆଗ୍ନେୟଙ୍କର ଏକାମାତ୍ର କନ୍ୟା । କିଛିଦିନ ପୂର୍ବରୁ ମାତୃହରା ହୋଇଛି । ଆଗ୍ନେୟ ବୃଦ୍ଧ ବୟସରେ ପତ୍ନୀର ବିୟୋଗ ଦୁଃଖ ଏକମାତ୍ର କନ୍ୟାର ମୁଖ ଚାହିଁ ସହ୍ୟ କରିଛନ୍ତି । କନ୍ୟା ଯେପରି ମାତାର ଅଭାବ ଅନୁଭବ ନ କରେ, ସେଥିପ୍ରତି ବୃଦ୍ଧଙ୍କର ତୀକ୍ଷ୍ଣ ଦୃଷ୍ଟି । ଶେଷ ଜୀବନରେ ବାନପ୍ରସ୍ଥ ବ୍ରତ ଅବଲମ୍ବନ କରି ନିର୍ଜ୍ଜନରେ ଭଗବାନଙ୍କର ଆରାଧନା କରିବାକୁ ତାଙ୍କର ଏକାନ୍ତ ଇଚ୍ଛା । ମାତ୍ର କନ୍ୟା ପାଇଁ ତାଙ୍କର ସେ ଇଚ୍ଛା ପୂରଣ ହୋଇପାରେ ନାହିଁ । ତେଣୁ ଗତ ପାଞ୍ଚ ବର୍ଷ-ଧରି ସେ ଗୋଦାବରୀର ତଟ ଦେଶରେ ଆଶ୍ରମ ରଚନା କରି ଗୃହସ୍ଥ ଧର୍ମ ଓ ବାନପ୍ରସ୍ଥ ଧର୍ମ ଏକ ସଙ୍ଗରେ ପାଳନ କରୁଛନ୍ତି । ସଙ୍ଗରେ ଅଛନ୍ତି କେତେଜଣ ଶିଷ୍ୟ । ଆଗ୍ନେୟ ସେମାନଙ୍କୁ ଶିକ୍ଷାଦାନ କରିବା ସଙ୍ଗେ ସଙ୍ଗେ ନିଃସଙ୍ଗ ଜୀବନରୁ ରକ୍ଷାପାଇଛନ୍ତି ।

ଯେଉଁ ଜୀବନ ଝଡ଼ ଝଞ୍ଜା ଓ ବଜ୍ରର ଆଘାତରେ କ୍ଷତ ବିକ୍ଷତ ହୋଇଥାଏ, ସେ ପୃଥ୍ୱୀ ସମୟରେ ହୁଏ ସୁନ୍ଦର । ନିତ୍ୟ ନୂତନ ଡ଼ାଳି ସଜାଏ ଚକ୍ଷୁ ଆଗରେ । ଜନ୍ମ-

ମୃତ୍ୟୁ, ଜରା ଓ ବ୍ୟାଧିକୁ ଅସ୍ୱୀକାର କରି ମହାକାଳର ହାତଧରି ଧାବମାନ ହୁଏ ପରମ ଲକ୍ଷ୍ୟରେ । ସୁନ୍ଦରତା ପ୍ରତି ଜାତହୁଏ ବିଶୁଦ୍ଧ ନୈତିକ ଅଭିଳାଷ । ନିସର୍ଗ ତାକୁ ସୁନ୍ଦର ପ୍ରତୀତ ହୁଏ—କୌଣସି ଅକାଳ ମୃତ୍ୟୁହୁଏ ତାପକ୍ଷେ ବିଷାଦକର । ନାରୀ ଜାତି ପ୍ରତି ଦାକ୍ଷିଣ୍ୟ ଆଦରଣୀୟ ହୁଏ । ସୁନ୍ଦର ବସ୍ତୁର ଦର୍ଶନରେ ତାହୃଦୟରେ ଫୁଟିଉଠେ ଆଦରର ଭାବନା । ବିପଦରେ ପଡ଼ିଥିବା ଜୀବକୁଦେଖି ତାକୁ ଉଦ୍ଧାର କରିବାପାଇଁ ସେ ଡେଇଁପଡ଼େ ବିପତ୍ତି ଆଗକୁ । ବିଶ୍ୱବ୍ୟାପୀ ସୌନ୍ଦର୍ଯ୍ୟର ଅନୁଭୂତି ତଥା ବିଶ୍ୱ ବ୍ୟାପୀ ସତ୍ୟର ଜିଜ୍ଞାସା, ତାକୁ ଉନ୍ନତ କରିତୋଳେ ।

ମୋହନ ଆଚାର୍ଯ୍ୟଙ୍କ ଆଶ୍ରମରେ ରହିଗଲା । ଯେଉଁ ପୃଥିବୀ ତାକୁ ନୀରସ ଓ ଶୁଷ୍କ ପ୍ରତୀତ ହେଉଥିଲା, ତାହା ହୋଇଉଠିଲା—ରୂପ, ରସ ଓ ଗନ୍ଧମୟ । ମର୍ତ୍ତ୍ୟ ତା ନିକଟରେ ହୋଇଉଠିଲା ଅମର୍ତ୍ତ୍ୟ । ଆଶ୍ରମର ଉଦ୍ୟାନ ତା ଚକ୍ଷୁରେ ଅମରାବତୀର ନନ୍ଦନ କାନନ ରୂପେ ପ୍ରତିଭାତ ହେଲା ।

ମୋହନ ସହିତ ଆଉ କେତୋଟି ଛାତ୍ରମଧ୍ୟ ସେଠାରେ ଅଧ୍ୟୟନ କରୁଥିଲେ । ପ୍ରତିଦିନ ସୂର୍ଯ୍ୟୋଦୟ ପୂର୍ବରୁ ଶିକ୍ଷାର୍ଥୀମାନେ ବେଦଗାନ କରନ୍ତି । ତାପରେ ସ୍ନାନ ଓ ଉପାସନା ।

ଆଚାର୍ଯ୍ୟ ବ୍ରାହ୍ମମୂହୂର୍ତ୍ତରୁ ନିତ୍ୟସ୍ନାତ ହୋଇ ଯଜ୍ଞକୁଣ୍ଡ ନିକଟରେ ଉପବେଶନ କରନ୍ତି । ଲଳିତା ତା ପୂର୍ବରୁ ସ୍ଥାନଟି ପରିଷ୍କାର କରି ମୁରୁଜ ପକାଇ ସାରିଥାଏ । ଆଚାର୍ଯ୍ୟ ଯଜ୍ଞ କୁଣ୍ଡ ନିକଟରେ ଉପସ୍ଥିତ ହେବା ମାତ୍ରେ ସେ ପୂଜାର ବାସନ, ନାମାବଳୀ ପାଞ୍ଜି, ପୋଥି, ପୁଷ୍ପପାତ୍ର, କୁଶାସନ ଓ ଅନ୍ୟାନ୍ୟ ତୈଜସପତ୍ର ଥୋଇ ଦେଇ ଯାଏ ।

ପୂଜା ପାଠପରେ ହୋମ । ଶିଷ୍ୟମାନେ ପୂର୍ବଦିବସର ସଂଗୃହିତ ସମିଧ ଅଗ୍ନି କୁଣ୍ଡରେ ନିକ୍ଷେପ କରି ଘୃତାହୁତି ଦିଅନ୍ତି । ଗବ୍ୟଘୃତର ମନୋରମ ସୁଗନ୍ଧିରେ ଚତୁର୍ଦ୍ଦିଗ ଆମୋଦିତ ହୋଇ ଉଠେ । ଋକ୍‌ବେଦର ଏକ ମଧୁମୟ ସ୍ୱର ଝଙ୍କାରରେ ଉଦ୍ୟାନସ୍ଥଳୀ ଝଂକୃତ ହୁଏ ।

"ତ୍ୱମଗ୍ନ ଇନ୍ଦ୍ରୋ, ବୃଷଭ ସତ ମସିତ୍ୱଂ
ବିଷ୍ଣୁରୁରୁ ଗାୟୋ'ନମସ୍ୟଃ
ତ୍ୱଂବ୍ରହ୍ମା ରୟିବିଦ୍ ବ୍ରହ୍ମଣସ୍ପତେ ତ୍ୱଂ
ବିଧର୍ତ୍ତଃ ସଚ ସେ ପୁରନ୍ଧ୍ୟା
ତ୍ୱମଗ୍ନେ ରାଜା ବରୁଣୋ ଧୃତ ବ୍ରତ ସ୍ତ୍ୱଂ

ମିତ୍ରୋ ଭବସି ଦମ୍ନ ଈଡ୍ୟଃ

ତ୍ୱମଗ୍ନେ ରୁଦ୍ରୋ ଅସୁରୋ ମହୋଦିବଃ ।''

'ହେ ଅଗ୍ନି, ତୁମେ ବୀରଙ୍କ ମଧ୍ୟରେ ଶ୍ରେଷ୍ଠ ଇନ୍ଦ୍ର । ବିଶାଳମାର୍ଗରେ ଗମନ-କାରୀ ବନ୍ଦନୀୟ ବିଷ୍ଣୁ, ହେ ବ୍ରହ୍ମଣସ୍ପତି ତୁମେ ଧନର ଜ୍ଞାତା ବ୍ରହ୍ମା, ତୁମେ ଧୃତ ବ୍ରତ ରାଜା ବରୁଣ । ତୁମେ ଶୂର ଓ ପ୍ରଶଂସାର ପାତ୍ର ମିତ୍ର········ତୁମେ ପୃଥିବୀ ସ୍ୱର୍ଗର ମହିମା ରୁଦ୍ର ।''

ଯଜ୍ଞ ସମାପ୍ତ ପରେ ଗାୟତ୍ରୀ ପାଠ ହୁଏ । ତା'ପରେ ବେଦ-ବେଦାନ୍ତର ଭାଷ୍ୟ ଓ ଉପନିଷଦର ମନ୍ତ୍ରମାନ ଶିକ୍ଷା ଦିଆଯାଏ । ଦିବସର ପ୍ରଥମ ପ୍ରହର ଉତ୍ତୀର୍ଣ୍ଣ ହେବାପରେ ଶିଷ୍ୟମାନେ ଭିକ୍ଷା ସଂଗ୍ରହ କରିବାକୁ ଯାଆନ୍ତି । କ୍ରମେ ମଧ୍ୟାହ୍ନ ହୁଏ, ଶିଷ୍ୟମାନେ ଆହାର ପରେ ବିଶ୍ରାମ କରନ୍ତି ।

ମଧ୍ୟାହ୍ନ ବିରତି ପରେ ଇଚ୍ଛାଧୀନ ବିଷୟର ଶିକ୍ଷା । ତନ୍ମଧ୍ୟରେ ଚିତ୍ରବିଦ୍ୟା, ଚିକିତ୍ସା ବିଜ୍ଞାନ, ପଶୁଶାଳନ, ବସ୍ତ୍ରବୟନ ଓ ସ୍ଥାପତ୍ୟ ପ୍ରଭୃତି ଶିକ୍ଷା ଦିଆହୁଏ । ଦିବସର ଚତୁର୍ଥ ପ୍ରହର ବେଳକୁ ଶିଷ୍ୟମାନେ ସମିଧ, କୁଶ, ଫଳ ଓ ମୂଳ ସଂଗ୍ରହ କରି ଶିକ୍ଷ ସ୍ଥାନକୁ ଫେରି ଆସନ୍ତି ତପନଦେବଙ୍କର ଶେଷ କିରଣ ବନବିଥିତଳେ ଲୁଚିଯିବା ସଙ୍ଗେ ସଙ୍ଗେ ଦେବ ମନ୍ଦିରରେ ଶଙ୍ଖ, ଘଣ୍ଟା ଓ ମୃଦଙ୍ଗର ଆରତ୍ରିକ ଧ୍ୱନି ଭାସି ଆସେ । ଶିଷ୍ୟମାନେ ସମବେତ ପ୍ରାର୍ଥନା ପରେ ଅଧ୍ୟୟନରେ ମନୋନିବେଶ କରନ୍ତି ।

ଲଳିତା ମଧ୍ୟ ସେମାନଙ୍କ ସହିତ ବିଦ୍ୟାଶିକ୍ଷା କରେ । ତାର ପ୍ରଥମ କାର୍ଯ୍ୟ ବ୍ରାହ୍ମ ମୂହୂର୍ତ୍ତିରୁ ଉଠି ଯଜ୍ଞ ସ୍ଥାନ ପରିଷ୍କାର କରିବା । ତା'ପରେ ସ୍ନାନ ଓ ପୁଷ୍ପ-ଚୟନ । ଏହାରି ମଧ୍ୟରେ ସେ ନିଜର ପାଳିତ ଶୁକଶାରୀମାନଙ୍କୁ ପରିଚର୍ଯ୍ୟା ମଧ୍ୟ କରିନିଏ । ଅଧ୍ୟୟନ ସମାପନାନ୍ତେ ଶିଷ୍ୟମାନେ ମାଧୁକରୀ ବୃତ୍ତି ଅବଲମ୍ବନ କରିବାକୁ ଗଲପରେ ଲଳିତା ପାଳିତ ପକ୍ଷୀମାନଙ୍କୁ କଥା କୁହାଇବା ଶିଖାଏ ଏବଂ ସେମାନଙ୍କ ସହିତ ଖେଳରେ ମାତିଯାଏ ।

ଯେତେବେଳେ ବୁଦ୍ଧିମାନ ମନୁଷ୍ୟ ଅପ୍ରମାଦରୂପୀ ସାଧନାରେ ପ୍ରମାଦ ଉପରେ ବିଜୟ ପ୍ରାପ୍ତ ହୁଏ, ସେତେବେଳେ ସେ ପ୍ରଜ୍ଞାବାନ, ଶୋକ ରହିତ ତଥା ଧୈର୍ଯ୍ୟବାନ ହୁଏ । ତେଣୁ ପ୍ରଜ୍ଞା ରୂପକ ପ୍ରାସାଦ ଉପରେ ଆରୂଢ଼ ହୋଇ ସେ

ନିଜର ଶୋକଗ୍ରସ୍ତ ଅତୀତ ଜୀବନ ପ୍ରତି ଦୃଷ୍ଟିପାତ କଲେ, ତାହା ଏପରି ଦୃଷ୍ଟିରେ ଦେଖେ—ଯେପରି କୌଣସି ପର୍ବତ ଉପରେ ସ୍ଥିତବ୍ୟକ୍ତି ତଳେ ଗୁମ୍ଫାରେ ଥିବା ମନୁଷ୍ୟଙ୍କୁ ଦେଖେ ।

ମୋହନ ଦୁଃଖ, ଶୋକ-ତାପପୂର୍ଣ୍ଣ ଜୀବନ ଭଲଭାବରେ ହୃଦୟଙ୍ଗମ କରିପାରିଥିଲି । ବର୍ତ୍ତମାନ ଆଗ୍ରହୀଙ୍କ ସ୍ନେହ ଶୀତଳ ଛାୟାରେ ଉପବେଶନ କଲାପରେ ଆଉଥରେ ପୂର୍ବର ଜୀବନ ଭୋଗ ନ କରିବାକୁ କଠୋର ସାଧନା ଆରମ୍ଭ କଲି । ତାର ଏ ସାଧନାରେ ସେ ସମ୍ପୂର୍ଣ୍ଣରୂପେ ବିଜୟପ୍ରାପ୍ତ ହେଲି । ଆଗ୍ରହୀ ତାର ପ୍ରଜ୍ଞାରେ ଯେପରି ବିସ୍ମିତ ହେଲେ, ସହପାଠୀମାନେ ମଧ୍ୟ ସେହିପରି ତାର ଅଲୌକିକ ମେଧାରେ ମୁଗ୍ଧ ହୋଇ ଅନୁଗତ ହୋଇ ପଡ଼ିଲେ ।

ସବୁଠାରୁ ବେଶୀ ଆନନ୍ଦିତା ହେଲି ଲଳିତା । ସେ ନିଜେ ମୋହନକୁ ଅନ୍ଧକାରରୁ ଆଲୋକକୁ ଟାଣି ଆଣିଥିବାରୁ ଗର୍ବ ଅନୁଭବ କରେ କ୍ରମେ ଦୁହିଁଙ୍କର ସାନ୍ନିଧ ବୃଦ୍ଧି ପାଇବାରେ ଲଗିଲା ।

ଜୀବର ଉଚ୍ଛ୍ୱାସ ହେଉଛି ଜୀବନର ଲକ୍ଷଣ । ଏହି ଉଚ୍ଛ୍ୱାସ ବଳରେ ଶୁଖିଲା ଡାଳରେ ଆସେ ନବ କିଶଳୟ । ତା'ପରେ ତହିଁରୁ ଜାତ ହୁଏ ମୁକୁଳ । କଳିକା ପୁଣି ପ୍ରସ୍ଫୁଟିତ ହୁଏ ଏବଂ ବିସ୍ତୃତ ହୁଏ ପରାଗ ।

ମାନବ ଜୀବନରେ ମଧ୍ୟ ସେହି ଏକାକଥା ଘଟେ । ସେ ସମୟରେ ମନରେ ଯେଉଁ ଉତ୍ତେଜନା ଆସେ କୁସୁମ ବୃଦ୍ଧିପାରେ ନାହିଁ; ମାନବ ତାହା ଅନୁଭବ କରେ ବୁଦ୍ଧିରୁ । ମାତ୍ର ତାହା ସହିତ ଜଡ଼ିତ ସମସ୍ତ ଦେହ ଓ ମନରେ ଯେଉଁ ପରମ ମଣ୍ଡିତ ମୋହାବେଶ ଜାତ ହୁଏ ତାର ଅର୍ଥ ସେ ଖୋଜି ପାଏ ନାହିଁ । ବୁଦ୍ଧିପାରେ ନାହିଁ—ଶିରାରେ ଶିରାରେ ଏକ ପ୍ରବାହ । ଆନନ୍ଦ, ବେଦନା—ନାଁ—ଦୁହେଁଯାକ । ସମୟେ ସମୟେ ତହିଁରୁ ଜାତ ହୁଏ ଆଶାତୀତ ଆନନ୍ଦ—କେତେବେଳେ ବା ବୁକୁ ଥରି ଉଠେ ଅଶଙ୍କାରେ ।

କଳିକା ଲଳିତା କ୍ରମେ ପ୍ରସ୍ଫୁଟିତ ଶତଦଳରେ ପରିଣତ ହେଲି । ମୋହନ ପ୍ରତି ତାର ଯେଉଁ ଅନୁରାଗ ଥିଲି ତାହା ମଧ୍ୟ ନବ ପଲ୍ଲବରେ ପଲ୍ଲବିତ ହେଲି ।

ସ୍ନେହ ଓ ମମତାର ଜଳରେ ସେ ବୃକ୍ଷଟି ବର୍ଦ୍ଧିତ ହୋଇ କ୍ରମେ ଶାଖା ପ୍ରଶାଖା ବିସ୍ତାର କଲା ।

ସୁସଙ୍ଗୀତଜ୍ଞ, ସୁବେଶଧାରୀ, ଅଭୀଷ୍ଟବସ୍ତୁଦାତା, ପ୍ରିୟଭାଷୀ, ରୂପବାନ ଓ ଅଳଂକୃତ ପୁରୁଷ ଚିରଦିନ ରମଣୀର ରମଣୀୟ । ଲଜ୍ଜିତା ତାହିଁରୁ ବ୍ୟତିକ୍ରମ ହେବ କିପରି ?

ମୋହନ ନିଜର ଶିକ୍ଷା ସଙ୍ଗେ ସଙ୍ଗେ ଆଚାର୍ଯ୍ୟଙ୍କର ଗୋଚାରଣ ଏବଂ କୃଷିକ୍ଷେତ୍ରର ମଧ୍ୟ ଯତ୍ନ ନିଏ । ସମୟେ ସମୟେ ପୁଷ୍ପ ଚୟନରେ ଲଜ୍ଜିତାକୁ ସାହାଯ୍ୟ କରେ । ପ୍ରତିଦିନର ଆଳାପ ଆଲୋଚନାରୁ ଦୁହେଁ ଦୁହିଁଙ୍କୁ ଭଲଭାବରେ ବୁଝି ପାରିଲେ । ସମସ୍ତ ଲଜ୍ଜା ଓ ସଙ୍କୋଚ କ୍ରମେ ଦୂରୀଭୂତ ହେଲା ।

ମଧ୍ୟାହ୍ନର ଅବସର ସମୟରେ ମୋହନ ଯେତେବେଳେ ବୃକ୍ଷମୂଳରେ ବସି ବେଦାଧ୍ୟୟନ କରେ, ଲଜ୍ଜିତା ସେତେବେଳେ ତାର ପାଦଲଗ୍ନ ତୃଣାସନରେ ଶୟନ କରି ଅର୍ଦ୍ଧ ନିମୀଳିତ ଚକ୍ଷୁରେ ମୋହନ ମୁଖକୁ ତଦ୍‌ଗତ ଭାବରେ ଚାହିଁ ରହିଥାଏ । ସାଥିମାନେ ପରିହାସରେ କହନ୍ତି—ଜୀବନ୍ତ ଶ୍ଳୋକ ପାଦରେ ଟୀକା ।

ଛାତ୍ରମାନଙ୍କର ଏ ମନ୍ତବ୍ୟ ଶୁଣି ଲଜ୍ଜିତାର ମୁଖ ଲଜ୍ଜାରେ ଆରକ୍ତିମ ହୋଇଯାଏ, ମାତ୍ର ତାହା ମୁହୂର୍ତ୍ତିକ ପାଇଁ । ପର ମୁହୂର୍ତ୍ତରେ ସେ ତାହା ଭୁଲିଯାଏ । ବେଦପାଠ ସମୟରେ ଛନ୍ଦ ଓ ବିରତି ଅନୁକ୍ରମେ ମୋହନର ମୁଖର ଗତି, ଚକ୍ଷୁ ଓ ନାସିକାର କୁଞ୍ଚନ ଏବଂ ପ୍ରସାରଣ ଏକାଗ୍ରତା ସହକାରେ ଲକ୍ଷ୍ୟ କରିବାକୁ ତାକୁ ଖୁବ୍ ଭଲଲାଗେ । ଠିକ୍ ଯେପରି ବନର ହରିଣ ମୋହମୟ ଅରଣ୍ୟ ପରିବେଶରେ ଚାହିଁ ରହିଥାଏ କୃଷ୍ଣସାରକୁ ।

ନିବିଡ଼ ଅରଣ୍ୟର ମଧ୍ୟଭାଗରେ ଯେଉଁଠି ଟିକିଏ ଖୋଲାସ୍ଥାନ ଥାଏ, ସେଠାରେ କଣ୍ଟକ ଗୁଳ୍ମର ଛାଇତଳେ ଶୋଇ କୃଷ୍ଣସାର ନିଜର ଲମ୍ବଗ୍ରୀବା ଉତ୍ତୋଳନ କରି ନିବିଷ୍ଟ ଭାବରେ ଗୋଟିଏ ଦୁଇଟି ପତ୍ର ତୋଳି ଅଣୁଥାଏ । ବନ ହରିଣୀ ମୁଗ୍‌ଧ ଦୃଷ୍ଟିରେ ଚାହିଁ ରହିଥାଏ ତା ଆଡ଼କୁ । କେତେବେଳେ ବା ସୋହାଗରେ ନିଜର ମସ୍ତକଟି କୃଷ୍ଣସାରର ଦେହରେ ସାମାନ୍ୟ ଘଷିଦିଏ । କୃଷ୍ଣସାରର ଶରୀର ରୋମାଞ୍ଚିତ ହୁଏ, ସମସ୍ତ ଶରୀର ବ୍ୟାପୀ ଏକ ମୃଦୁ ଶିହରଣ ଖେଳିଯାଏ । ସେ ବୁଝିପାରେ ନାହିଁ—କଣ ଏ ଶିହରଣ ।

ଏହାହିଁ ବୋଧହୁଏ ଯୌବନର ଉଚ୍ଛ୍ୱାସ ଯେତେବେଳେ ନୀରବତା ଠାରୁ ଚଞ୍ଚଳତା ଭଲ ଲାଗେ, ପୁଣି ଜୀବନ ମରୁରେ କେତେ ଆଶାର ସ୍ରୋତସ୍ୱତୀ

ପ୍ରବାହିତ ହୋଇଥାଏ ।

ଜ ଗେ ମମତା ଏବଂ ଅନ୍ୟର ବେଦନା ବୁଝିବାର ଶକ୍ତି ।

ନୟନ ହୁଏ ଅବନମିତ—ସୃଷ୍ଟି ହୁଏ ବନ୍ଧ ଗୃହାଣି

ମନର କଥା ଚକ୍ଷୁର ନୀରବ ଇଙ୍ଗିତରେ ଆତ୍ମପ୍ରକାଶ କରେ । ସମୟେ ସମୟେ ଦେହରେ ଚମକ ଲଗେ । ତାହା ନିଜକୁ ଯେପରି ଆନନ୍ଦ ଦିଏ, ଅପରକୁ ମଧ୍ୟ ସେହିପରି ଉଦ୍‌ବେଳିତ କରେ ।

ଏହା ମଧ୍ୟରେ ଯୌବନ ଯେ କେତେବେଳେ ଅସି ତାର ଅଲୌକିକ ମାଧ୍ୟାଦଣ୍ଡ ଲଳିତାର ଦେହରେ ଛୁଆଁଇ ଦେଇ ଯାଇଛି, ତାହା ମୋହନକୁ ଜଣା ନାହିଁ ।

ସେଦିନ ଥିଲା ହେମନ୍ତର ଏକ ଶିଶିରସିକ୍ତ ପ୍ରଭାତ । ବିନ୍ଦୁ ବିନ୍ଦୁ ତୁଷାରକଣା ଝରିପଡ଼ୁଛି ବୃକ୍ଷ ଲତାର ସବୁଜ ପତ୍ରରୁ । କୁହେଳି ଘେରା ଦିଗନ୍ତ—ଦୁରନ୍ତ ହିମ ପ୍ରଭାବ ।

ଲଳିତା ପ୍ରଭାତରୁ ସ୍ନାନ ସାରି ପୁଷ୍ପ ଚୟନରେ ବ୍ୟସ୍ତ । ବାମହସ୍ତରେ ପୁଷ୍ପର ଗୁଚ୍ଛ ଏବଂ ଦକ୍ଷିଣ ହସ୍ତରେ ବୃନ୍ତଚ୍ୟୁତ କୁସୁମ । ମନେହୁଏ ସତେ ଯେପରି ତାର ଶରୀର ଶୋଭା ଦେଖି କୁସୁମ ଲଜ୍ଜିତ ହୋଇ ଗୁଚ୍ଛା ମଧ୍ୟରେ ଆତ୍ମ ଗୋପନ କରିଛି ।

କଣ୍ଠରେ ସଙ୍ଗୀତ ର ମୂର୍ଚ୍ଛନା, ସେ ସ୍ୱର ଲହରୀ ଉଦ୍ୟାନରେ ମଧୁମୟ ଆବେଶ ସୃଷ୍ଟି କରୁଛି । ଲଳିତା ଗାଉଛି—

ବଣପକ୍ଷୀ ସାରିକା ମୁଁ ଜନମିଲି ବନେ
ଗହନ କାନନେ
ବୃକ୍ଷ କୋରଡ଼ରେ ଥିଲି ଜନନୀର କୋଳେ
ଅନ୍ଧାର ଭୁବନେ ।
କେ ଆଣିଲି ଧରି ମୋତେ ନ ଦେଖିଲି ତାରେ
କଳା ପରଦା ମଧ୍ୟରେ ରୁଦ୍ଧ ପିଞ୍ଜରାରେ
ଦୁନିଆର ଭଲ ମନ୍ଦ କିଛି ମୁଁ ନ ଜାଣେ ।
ନ ଦେଖିଲି ଶଶୀ ତାରା ତପନ କିରଣ
ଖାଇ ପିଇ ଗୀତ ଗାଇ କଟାଇଲି ଦିନ
ଅନ୍ଧକାରେ ସୁଖ ଦୁଃଖେ ଶୟନେ ସ୍ୱପନେ ।

ଝନ ଗଲ ବନ୍ଧ ଶେଷେ ବର୍ଷିଲ ବରଷ
ଘରଦ୍ୱାର ଫାଙ୍କେ ଝନେ ଦେଖିଲ ଆକାଶ
ମନେ ହେଲ ହାତ ଠାର ଡାକେ କେ ବସିନେ ।
ଉଇଁଲ ସେ କାଳେ ଚନ୍ଦ୍ର ଝରିଲ ଜୋଚ୍ଛନା
ଉଛୁଳା ହୁଅଇ ମନ କଥାଁ ମୁଁ ଜାଣେନା ।
(ଭଲ ଲଗେନା, ଏ ବନ୍ଧନ ଭଲ ଲଗେନା)
ସୁନେଲି କାମନା କେତେ ଜାଗି ଉଠେ ମନେ ।

ଲଳିତାର ସଙ୍ଗୀତ ବାୟୁମଣ୍ଡଳରେ ମିଳାଇ ଯିବା ପୂର୍ବରୁ ଚକ୍ର କରବୀ ବୃକ୍ଷ ମୂଳରୁ ନାଗ ସାପଟିଏ ଗର୍ଜ୍ଜନ କରି ଉଠିଲ । କୁସୁମ ଗୁଚ୍ଛଗୁଡ଼ା ହସ୍ତଚ୍ୟୁତ ହେଲ । ଲଳିତା ଭୟରେ ଚିତ୍କାର କରି ଉଠିଲ ।

ପ୍ରେମ, ପ୍ରଣୟ—ପ୍ରତ୍ୟାଖ୍ୟାନ
ଭାଗ୍ୟ, ଭବିତବ୍ୟ—ଭଗବାନ

ପ୍ରେମ ଯେପରି ପ୍ରଣୟ ବା ପ୍ରତ୍ୟାଖ୍ୟାନର ଅପେକ୍ଷା ରଖେ, ଭାଗ୍ୟ ସେହିପରି ଭବିତବ୍ୟ ବା ଭଗବାନଙ୍କ ଉପରେ ନିର୍ଭର କରେ ।

ମାନବ ଜୀବନ ବୃକ୍ଷର ଗୋଟିଏ ବୃନ୍ତରେ ଝିନଟି କୁସୁମ ।

ଅଦୃଶ୍ୟ ଅନାଘ୍ରାତ ଏବଂ ଅମଳିନ ।

ସେ ତା ନିଜ ଇଚ୍ଛାରେ ଫୁଟେ, ନିଜ ଇଚ୍ଛାରେ ସୁବାସ ବିତରଣ କରେ, ପୁଣି ନିଜ ଇଚ୍ଛାରେ ମଉଳି ପଡ଼େ । ବେଳେ ବେଳେ ଜୀବନର ଅନୁକୂଳରେ ତାହାର ସୁବାସ ଭାସିଆସେ । ମାନବ ଜୀବନ ସାର୍ଥକ ହୁଏ । ସେ ସୁବାସରେ ଦିଗ ଦିଗନ୍ତ ମହକି ଉଠେ । ମାତ୍ର ପ୍ରତିକୂଳ ସମୟରେ ପବନରେ ହାହାକାର କରୁଥିବା ଶୁଖିଲ ବୃନ୍ତ ପରି ତାହା ନୀରସ ଓ ଶୁଷ୍କ ପ୍ରତୀତ ହୁଏ । ମନୁଷ୍ୟ ନିଜକୁ ଧିକ୍‌କାର ଦେଇ ସାନ୍ତ୍ୱନା ପାଏ । ହା' ହୁତାଶରେ ତାର ଜୀବନ ଦୀପ ପ୍ରମୀଳିତ ହୋଇଯାଏ । ତଥାପି ମାନବ ଆଶା ରଖେ, ନବ ମୁକୁଳ ଦେଖିବାକୁ ବଞ୍ଚିରହେ ।

ଲଳିତାର ଚିତ୍କାରରେ ମୋହନ ଆସି ଘଟଣାସ୍ଥଳରେ ଉପସ୍ଥିତ ହେଲ । ଦେଖିଲ—ମାଧବୀ ଲତା ତଳେ ଲଳିତା ଠିଆ ହୋଇଛି । ତାର ହଜ ସବୋଜ

ବଦନ ଭୟରେ ପାଂଶୁ ଓ ବିବର୍ଣ୍ଣ ।

ମୋହନ ପ୍ରଶ୍ନ କଲା—କଣ ହେଲା, ଏପରି ଚିତ୍କାର କଲ କାହିଁକି ? ଲଳିତା ଭୀତ ବିହ୍ୱଳ କଣ୍ଠରେ ଉତ୍ତର ଦେଲା—ସାପ ତା ପରେ ସେ ମୋହନ ନିକଟକୁ ଆସି ସାପ ଦେଖାଇବାକୁ ନେଇଗଲା । ମାତ୍ର ସାପ ସେତେବେଳକୁ ଅଦୃଶ୍ୟ ହୋଇ ଯାଇଥିଲା । ମୋହନ ଏବଂ ଲଳିତା ଉଭୟେ ବହୁସ୍ଥାନରେ ଅନ୍ୱେଷଣ କରି ତାର କୌଣସି ସନ୍ଧାନ ପାଇଲେ ନାହିଁ ।

ଲଳିତା ଟିକିଏ ଆଶ୍ୱସ୍ତା ହେଲାପରେ ତାର ମନେ ପଡ଼ିଲା କୁସୁମ ଗୁଚ୍ଛ ଗୁଡ଼ା କଥା । ପୁଷ୍ପଗୁଡ଼ିକ ଏଣେତେଣେ ବିଞ୍ଚି ହୋଇ ପଡ଼ିଛି । ଲଳିତା କାତର କଣ୍ଠରେ ପଚାରିଲା—ଫୁଲ ଗୁଡ଼ିକ ତଳେ ପଡ଼ିଗଲା, କଣ କରିବ ?

ମୋହନ ଲଳିତାର ମୁହଁକୁ ଅନାଇଲା ।

ବ୍ୟାଧ ଭୟଭୀତା ମୃଗୁଣୀ ପରି ତାର ଚାହାଣୀ ସ୍ନିଗ୍‌ଧ ଏବଂ ଛଳ ଛଳ । ଏତେ ପରିଶ୍ରମରେ ସଂଗୃହୀତ ପୁଷ୍ପଗୁଡ଼ିକ ନଷ୍ଟ ହୋଇଯାଇଛି । ଲଳିତା ନିର୍ବାକ ଏବଂ ନିଷ୍ପନ୍ଦ ଭାବରେ ସେ ଆଡ଼କୁ ଚାହିଁ ରହିଛି । ନିଶ୍ୱାସର ତାଳେ ତାଳେ ଗୁଚ୍ଛଟା ଉଠୁଛି ଏବଂ ପଡ଼ୁଛି । ମନେହୁଏ ସତେ ଯେପରି ବୁକୁର ସମସ୍ତ ବେଦନା ମୂର୍ତ୍ତି ପରିଗ୍ରହ କରି ବକ୍ଷ ମଧ୍ୟରୁ ବାହାରି ଆସିବାକୁ ଉଦ୍ୟତ ।

ଉଦ୍ଧତ-ଉନ୍ନତ କୁମାରୀ ବକ୍ଷ ।

ଯାହାର ଦର୍ଶନରେ ଶରୀରରେ ଉଷ୍ଣ ରକ୍ତସ୍ରୋତ ପ୍ରବାହିତ ହୁଏ, ଚିତ୍ତ ଆତ୍ମହରା ହୋଇପଡ଼େ ।

ମୋହନର ହୃଦୟରେ ଆର୍ଯ୍ୟଙ୍କ ବାଣୀ ଧ୍ୱନିତ ହେଲା । ଆସକ୍ତି ତଥା ତୃଷ୍ଣାରୁ ଉତ୍ପନ୍ନ ସମସ୍ତ ପ୍ରବୃତ୍ତି ଦୁଃଖମୟ ତଥା ଦୋଷଯୁକ୍ତ । ମାନବର ମନକୁ ତୃଷ୍ଣାର ଜ୍ୱାଳାରୁ ଏବଂ ଆସକ୍ତିର ସଂକୀର୍ଣ୍ଣ ବନ୍ଧନରୁ ମୁକ୍ତ କରିବା ନିବୃତ୍ତିବାଦର ପ୍ରଧାନ ଉଦ୍ଦେଶ୍ୟ ।

ମୋହନ ନିଜକୁ ଅସ୍ୱସ୍ଥ କରି କହିଲା—ତୁମେ ଅପେକ୍ଷା କର, ମୁଁ ଫୁଲ ତୋଳି ଦେଉଛି । ତାପରେ ସେ ଉତ୍ତରର ଅପେକ୍ଷା ନ ରଖି ଗୁଚ୍ଛ ଗୁଡ଼ା ଧରି ଗଛ ଉପରକୁ ଉଠି ଫୁଲ ତୋଳିବାରେ ଲାଗିଲା ।

ଲଳିତା ତଳେ ବସି ବିକ୍ଷିପ୍ତ କୁସୁମ ଗୁଡ଼ିକ ଏକତ୍ରିତ କରି ମାଳା ଗୁନ୍ଥିବାରେ ମନୋନିବେଶ କଲା । ମୋହନ ଫୁଲତୋଳି ତଳକୁ ଓହ୍ଲାଇ ଆସିବା ବେଳକୁ

ଲଳିତାର ମାଳାଗୁନ୍ଥା ଶେଷ ହୋଇ ଯାଇଥିଲା ।

ପୁଷ୍ପଭରା ଗୁଚ୍ଛଟା ଦେଖି ଲଳିତା ପ୍ରଥମେ ବିସ୍ମିତା ହୋଇ ପଡ଼ିଲା । ତାପରେ ସେ ଆଶ୍ଚର୍ଯ୍ୟ ଚକିତ ଭାବରେ ପ୍ରଶ୍ନ କଲା—ଇସ୍, ଏତେ ଅଳ୍ପ ସମୟ ମଧ୍ୟରେ ଏତେ ଗୁଡ଼ାଏ ଫୁଲ ?

ମୋହନ କେବଳ ମୃଦୁ ମୃଦୁ ହସିବାରେ ଲାଗିଲା । ତାର ସେ ହସରେ କି ମୋହନ ଶକ୍ତି ଥିଲା କେଜାଣି, ଲଳିତା ମୁହୂର୍ତ୍ତକରେ ଆତ୍ମ ବିସ୍ମୃତା ହୋଇ କହିଲା—'ଆପଣଙ୍କ ପରିଶ୍ରମ ସ୍ୱରୂପ ଏ ମାଳାଟି ଗ୍ରହଣ କରନ୍ତୁ ।'

ଲଳିତା ମାଳାଟି ମୋହନ ହାତକୁ ବଢ଼ାଇ ଦେଲା । ମାତ୍ର ମୋହନ ଉକ୍ତ ହାରଟିକୁ ନେଇ ଲଳିତାର ଗଳାରେ ପିନ୍ଧାଇ ଦେଇ କହିଲା—'କାନନ ଲକ୍ଷ୍ମୀଙ୍କ ଫୁଲହାର ଶୋଭା ପାଏ ସିନା, ମୋ ପକ୍ଷେ ତାହା କଣ ଉପଯୁକ୍ତ ?

ଲଳିତା ବଙ୍କ ଗ୍ରୀବାଣୀରେ କପଟ କୋଧ ପ୍ରକାଶ କରି ଉତ୍ତର ଦେଲା—'ଇସ୍, ତୁମେ ବଡ଼ ଦୁଷ୍ଟ ହୋଇଗଲଣି ।'

ମୋହନ ମୁଗ୍ଧ ଦୃଷ୍ଟିରେ ଗୁହିଁ ରହିଲା ।

ଯୌବନର ପ୍ରଥମ ଉଚ୍ଛ୍ୱାସ ଯାହାର ଅପର ନାମ ପ୍ରେମ । ଏ ପ୍ରେମ ପୁଣି ବନ୍ଧନହୀନ । ଏହାର କୌଣସି ନିର୍ଦ୍ଦିଷ୍ଟ ରୂପରେଖ ନାହିଁ କି କୌଣସି ସ୍ୱତନ୍ତ୍ର ଧାରା ମଧ୍ୟ ନାହିଁ । ଶିଶୁ ଯେପରି ପ୍ରକୃତି ବଶରେ ହାତ ବଢ଼ାଏ ଏବଂ ଖାଇବାକୁ ମୁଖ ବଢ଼ାଏ—ପ୍ରେମ ଠିକ୍ ସେହିପରି ମାନବ ହୃଦୟରେ ଆତ୍ମପ୍ରକାଶ କରେ ଏବଂ ନୂଆ ନୂଆ ଅନୁଭୂତି ଶିଖାଏ । ବଡ଼ଶୀପରି ମନ—ମୀନକୁ ବଳେ ବଳେ ଆକର୍ଷଣ କରେ ।

ନାରୀମାନଙ୍କ ପକ୍ଷେ ଏ ଆକର୍ଷଣ ସ୍ୱାଭାବିକ । ପ୍ରିୟ ପୁରୁଷର ସାନ୍ନିଧ୍ୟ ପାଇଁ ତାହା ପୁଣି ନାରୀକୁ ବ୍ୟାକୁଳ କରି ତୋଳେ । ଜଳନ୍ତିରେ ଦୁରନ୍ତ କାମନାର ବହ୍ନି । କୌଣସି ପ୍ରଲେପରେ ତାହା ଶୀତଳ ହୁଏ ନାହିଁ । ଯେଉଁଠି ଭୟ, ସଙ୍କୋଚ ବା ମର୍ଯ୍ୟାଦା ହାନିର ସମ୍ଭାବନା ଥାଏ, ସେଠାରେ ଆଡ ଉହାଡ଼ରେ କିମ୍ବା ଅନ୍ୟ କୌଣସି ଛଳନାରେ ସେମାନେ ପ୍ରିୟର ଦର୍ଶନ ଲାଭ କରନ୍ତି, ଏବଂ ଯେ କୌଣସି ଉପାୟରେ ହେଉ ନିଜର ଉପସ୍ଥିତି ଜଣାଇ ଦିଅନ୍ତି । ସନ୍ଧିର ଅଧିକାଂଶ ଛଳନାରେ ପରିପୂର୍ଣ୍ଣ । ଏଇଥିପାଇଁ ବୋଧହୁଏ ନାରୀକୁ କୁହାଯାଏ-ଛଳନାମୟୀ ।

ଲଳିତାର ଚକ୍ଷୁ ଦୁଇଟିରେ ବିଦ୍ୟୁତର ଦୀପ୍ତି—ଓଷ୍ଠ ପ୍ରାନ୍ତରେ ମୃଦୁ ହାସ୍ୟ । ସେ ନୀରବରେ ମୋହନର ହାତଟିକୁ ନିଜର ହାତରେ ତୋଳି ନେଲା ।

ତାର ସ୍ପର୍ଶରେ ମୋହନର ଶରୀରରେ ଉତ୍ତପ୍ତ ଅଗ୍ନି ସ୍ରୋତ ପରି ରକ୍ତ ପ୍ରବାହିତ ହେଲା ।

ପୃଥିବୀର ଆଦିମ କାଳରୁ ଯେଉଁ ଅଦୃଶ୍ୟରେ ତରଳ ଲାଭାସ୍ରୋତ ପୃଥିବୀର ଶିରା ଉପଶିରାରେ ପ୍ରବାହିତ ହେଉଥିଲା, କମ୍ପିତ କରୁଥିଲା ଧରିତ୍ରୀକୁ; ଆଦିମ ଯୁଗ ପର୍ଯ୍ୟନ୍ତ ଶୀତଳ କଠିଣ ତୁଷାରକୁ ଯେ ତରଳ କରି ଜୀବନ ଦାନ କରିଥିଲା, ଲାଲବର୍ଣ୍ଣ ସେହି ତରଳ ଅଦୃଶ୍ୟ ଅଗ୍ନି ତାର ଶିଖାରେ ମୋହନର ସମସ୍ତ ଶରୀରରେ ନୃତ୍ୟ ଆରମ୍ଭ କଲା ।

ନୀରବରେ କେତେ ସମୟ ଅତିବାହିତ ହେଲା । ଉଦ୍ୟାନର କେଉଁ ଏକ ବୃକ୍ଷ ଶାଖାରୁ ଲଳିତାର ପୋଷା ସାରୀ ଡାକିଲା—ଲଳିତା, ଲଳିତା !

ଲଳିତା ଆଜି ସେମାନଙ୍କୁ ଖାଇବାକୁ ଦେବା ଭୁଲି ଯାଇଛି । ସେ ତରବରରେ ମୋହନର ହାତ ଛାଡ଼ି ଦେଇ କହିଲା—ବିଳମ୍ବ ହେଲାଣି, ଯାଉଛି ।

ହୃଦୟରେ ଆନନ୍ଦର କୂଳ ପ୍ଲାବୀ ବନ୍ୟା । ଆନନ୍ଦ ଓ ଆତଙ୍କମିଶା ରୋମାଞ୍ଚ ।

ପ୍ରିୟ ପୁରୁଷର ସାନ୍ନିଧ୍ୟରେ ନାରୀମାନଙ୍କର ଦେହ ମନ ବୋଧହୁଏ ଏହିପରି ଉଦ୍‌ବେଳିତ ହୋଇଉଠେ ।

ଲଳିତା ମୃଦୁ କଟାକ୍ଷ ସହିତ ଫୁଲ ଗୁଚ୍ଛ ଧରି ଅଗ୍ରସର ହେଲା । ମାତ୍ର ତାର ମନେ ହେଲା—ସତେ ଯେପରି ସେ କି ଏକ ଦୁର୍ଲ୍ଲଭ ବସ୍ତୁ ଛାଡ଼ି ଯାଉଛି । ତେଣୁ ଦୃଷ୍ଟି ପଛକୁ ବାରବାର ଫେରି ଯାଉଛି ।

ଦୂରକୁ ଯିବାର ନାମ ଧରି ପାଖକୁ ଆସିବାର ଛଳନା । ଏ ଧରାବୁଆଁ ଯେପରି ଯୁଗଯୁଗାନ୍ତ ଧରି ପୃଥିବୀ ବୁକୁରେ ଚାଲିଛି ।

ମୋହନ ବାହ୍ୟଜ୍ଞାନ ଶୂନ୍ୟ । ତାର ବହୁ ସାଧନା ଲବ୍‌ଧ ବେଦ ଓ ବେଦାନ୍ତର ଜ୍ଞାନୀମାନ ଯେପରି ମାନବର ଏହି ଆଦିମ କ୍ଷୁଧା ନିକଟରେ ପରାଜୟ ସ୍ୱୀକାର କଲା ।

ଲଳିତା ସଙ୍ଗୀତରେ ସ୍ୱର ତୋଳି ଚାଲିଛି—

ବଣପକ୍ଷୀ ସାରୀ ମୁଁ ଜନମିଲି ବନେ<br>
ଗହନ କାନନେ<br>
ବୃକ୍ଷ କୋରଡ଼ରେ ଥିଲି ଜନନୀର କୋଳେ<br>
ଅନ୍ଧାର ଭୁବନେ ।

ଶୀତ ଶେଷ ହୋଇ ବସନ୍ତର ସୂଚନା । ପବନ ସ୍ନିଗ୍ଧ । ନବ ବିବାହିତା ବଧୂ ଓଢ଼ଣୀତଳୁ ଉଙ୍କି ମାରି ଗୃହାଙ୍ଗଣ ମଳୟ ପବନର ମୃଦୁ ପ୍ରବାହ ସମୟେ ସମୟେ ବହି ଯାଉଛି । ନବବଧୂର କଟାକ୍ଷ ପାତରେ ଶରୀର ରୋମାଞ୍ଚିତ ହୋଇ ପଡ଼ି ଦେହ ଶିହରି ଉଠେ । ଶସ୍ୟଶାଳୀ କେଦାର ବିଧବା ନାରୀ ପରି ଶ୍ରୀହୀନ । ସହକାର ବୃକ୍ଷରେ ନବ ମୁକୁଳ । ଶାଳ, ପିଆଶାଳ ଓ ମହୁଲ ବୃକ୍ଷରେ ନବ ପଲ୍ଲବର ସଞ୍ଚାର । ବିଗତଯୌବନା ନାରୀ ପରି ଅଶ୍ୱତ୍ଥ ବୃକ୍ଷ ହା ହାକାର କରୁଛି । ପୁନ୍ନାଗ ବୃକ୍ଷ ନିଜର ଚହଟ ଚକ୍‌ମକ ରୂପ ଦେଖାଇ ଆନନ୍ଦରେ ଆତ୍ମହରା । ଧୀର ପବନରେ ଗୋଟିଏ ଦୁଇଟି ଶୁଖିଲା ପତ୍ର ଗଛରୁ ଝଡ଼ି ଚକ୍ରାକାରରେ ନୃତ୍ୟ କରି କରି ତଳକୁ ଖସି ଆସୁଛି ।

ମୋହନ ସେଦିନ ଗୋଚାରଣ କାର୍ଯ୍ୟରେ ନିଯୁକ୍ତ ଥିଲା । ଗୋଦାବରୀତଟ ଘନ ଅରଣ୍ୟର ଏକ ପ୍ରାନ୍ତରେ ସେ ଗାଈଟିକୁ ଛାଡ଼ି ଦେଇ ନଦୀକୂଳର ଏକ ବଟବୃକ୍ଷ ମୂଳରେ ଉପବେଶନ କଲା । ଗାଈଟି ନିଶ୍ଚିନ୍ତ ଭାବରେ ନବ କିଶଳୟ ଭକ୍ଷଣ କରିବାରେ ଲାଗିଛି । ମୋହନ ନିଶ୍ଚିନ୍ତ ଭାବରେ ଗୋଦାବରୀର ପ୍ରବାହକୁ ଚାହିଁ ରହିଲା ।

ବଟବୃକ୍ଷର ବିରାଟ ଶାଖାଗୁଡ଼ିକ ଗୋଦାବରୀର ବକ୍ଷଦେଶକୁ ଲମ୍ବି ଯାଇଛି । ତହିଁରୁ ଜାତ ହୋଇଥିବା ଓହଳଗୁଡ଼ିକ ଗୋଦାବରୀର ସ୍ୱଚ୍ଛନୀର ଭେଦ କରି ତଳେ ଭୂମିକୁ ସ୍ପର୍ଶ କରିଛି । ଏହାରି ନାମ ଜୀବନ ସଂଗ୍ରାମ । ଅର୍ଥାତ୍ ବଞ୍ଚି ରହିବାର ଦୁର୍ବାର ବାସନା ଏବଂ ତାର ପୂର୍ତ୍ତି ପାଇଁ କରାଯାଉଥିବା ସଂଗ୍ରାମ ।

ଏ ସଂଗ୍ରାମ ଯୁଗେ ଯୁଗେ ଲାଗି ରହିଛି । କୌଣସି ଯୁଗରେ ତା'ର ବ୍ୟତିକ୍ରମ ହୋଇନାହିଁ—କେବଳ ରୀତି ଓ ନିୟମ ବ୍ୟତୀତ । ଏହା କେହି ଅସ୍ୱୀକାର କରି ପାରିବେ ନାହିଁ ।

ପୁତ୍ର ଶ୍ୱେତକେତୁ ପିତାଙ୍କୁ ପ୍ରଶ୍ନ କରିଥିଲେ—ମନ ଓ ପ୍ରାଣ ଏ ଦୁଇଟି ଜିନିଷ କ'ଣ ?

ଆଚାର୍ଯ୍ୟ ଉଦ୍ଦାଳକ ଉତ୍ତର ଦେଇଥିଲେ—ମନ ଅନ୍ନମୟ ଏବଂ ପ୍ରାଣ ଆପ ଅର୍ଥାତ ଜଳମୟ ।

ଶ୍ୱେତକେତୁଙ୍କ ମନରେ ସନ୍ଦେହ ଜାଗିଥିଲା । ତେଣୁ ଏ ସିଦ୍ଧାନ୍ତକୁ ସତ୍ୟ ପ୍ରମାଣିତ କରିବା ପାଇଁ ଉଦ୍ଦାଳକ ପୁତ୍ରକୁ ଷୋଳଦିନ ସମ୍ପୂର୍ଣ୍ଣ ଅନଶନ କରାଇଥିଲେ । ଫଳରେ ଶ୍ୱେତକେତୁଙ୍କର ସ୍ମୃତି ନଷ୍ଟ ହୋଇଗଲା ଓ କଣ୍ଠସ୍ଥ ବେଦ ସ୍ମରଣ ହେଲା

ନାହିଁ । ଏହାପରେ ସେ ଷୋଳଧନ ପୁତ୍ରକୁ ଜଳ ଗ୍ରହଣ କରିବାକୁ ନିଷେଧ କରିଥିଲେ । ତତ୍ପରେ ଶ୍ୱେତକେତୁଙ୍କ ଜ୍ଞାନ ଲୋପ ପାଇଗଲା । ଶ୍ୱେତକେତୁ ବୁଝି-ପାରିଲେ ଯେ, ପ୍ରକୃତରେ ଖାଦ୍ୟ ଅଭାବରେ ମନ ସ୍ଥିର ରହେ ନାହିଁ କି ଜଳ ଅଭାବରେ ପ୍ରାଣ ଧାରଣ କରିବା ସମ୍ଭବ ନୁହେଁ । ତେଣୁ ଏହି ଖାଦ୍ୟ ଓ ଜଳ ସଂଗ୍ରହ ପାଇଁ ପ୍ରତ୍ୟେକ ଜୀବଜନ୍ତୁ ଓ ବୃକ୍ଷଲତା ପ୍ରଭୃତି କଠୋର ପରିଶ୍ରମରେ କାଳପାତ କରୁଛନ୍ତି ।

ମୋହନ ଅପଲକ ଦୃଷ୍ଟିରେ ନଦୀ ଗର୍ଭକୁ ଚାହିଁ ରହିଛି । ମୃଦୁ ପବନ ସଂଘାତରେ ନଦୀ ଜଳରେ କ୍ଷୁଦ୍ର କ୍ଷୁଦ୍ର ଲହରୀ ସୃଷ୍ଟି ହୋଇ ମୁହୂର୍ତ୍ତିକରେ କେଉଁଆଡ଼େ ବିଲୀନ ହୋଇଯାଉଛି । ନଦୀର ପ୍ରବାହ ବଂଶୀ ଖାରେ ବାଧାପ୍ରାପ୍ତ ହୋଇ କଳ କଳ ଧ୍ୱନିରେ ଜଳଦେବୀଙ୍କ କଙ୍କଣ ନିକ୍ୱଣ ପରି ଉଦ୍ଭାସିତ ହେଉଛି । ମୋହନ ଅପଲକ ଦୃଷ୍ଟିରେ ଚାହିଁ ରହିଛି ସେ ଆଡ଼କୁ । ବାହ୍ୟ ଜଗତ ପ୍ରତି ତାର ସ୍ମରଣ ନାହିଁ । ମନ ଯେ କେଉଁ ଅଜଣା ରାଜ୍ୟରେ ବୁଡ଼ି ରହିଛି ତାହା କେବଳ ସେହି ଜାଣେ

କ୍ରମେ ସୂର୍ଯ୍ୟାସ୍ତ ହେଲା । ଶୀତଳ ପବନ ଗୋଦାବରୀ ନଦୀରୁ ଜଳକଣା ସଂଗ୍ରହ କରି ତା ଉପରେ ବର୍ଷି ଦେଇଗଲା । ମୋହନ ବାସ୍ତବତାକୁ ଫେରି ଆସିଲା ଦେଖିଲା ତପନ ଦେବଙ୍କର ଶେଷ ରଶ୍ମିରେଖା ଆକାଶ ବକ୍ଷରେ ଲୁପ୍ତ ହୋଇ-ଗଲାଣି । ଘନ ଶ୍ୟାମ ଶୋଭାରେ ଆକାଶ ଧରଣୀ ରଞ୍ଜିତ ହୋଇ ଅଛୁଛି । ମହାକବି କାଳିଦାସଙ୍କର ସନ୍ଧ୍ୟା ବର୍ଣ୍ଣନା ମନେ ପଡ଼ିଲା—

"ସ ପଲ୍ୱଲୋତ୍ତୀର୍ଣ୍ଣବରାହଯୂଥା—
ନ୍ୟାବାସବୃକ୍ଷୋନ୍ମୁଖ ବର୍ହିଣାନି
ଯଯୌଧ୍ୟାସିତ ଶାଦ୍ୱଲାନି
ଶ୍ୟାମାୟମାନାନି ବନାନି ପଶ୍ୟନ୍ ।"

କ୍ରମେ ସନ୍ଧ୍ୟାର ଛାୟା ପୃଥିବୀ ପୃଷ୍ଠରେ ପତିତ ହେଲା । ବରାହଯୂଥ କର୍ଦ୍ଦମରୁ ଉଠି ତଟ ଦେଶ କୃଷ୍ଣବର୍ଣ୍ଣ କରିଦେଲେ । ମୟୂରଗଣ ରାତ୍ରୀଯାପନ ପାଇଁ ଆବାସ ବୃକ୍ଷ ଅଭିମୁଖେ ଉଡ଼ି ଆସିବାରୁ ବନାକାଶ ଶ୍ୟାମବର୍ଣ୍ଣ ଧାରଣ କଲା । ତୃଣାର୍ଥୀ କୃଷ୍ଣସାରଗଣ ଶସ୍ୟକ୍ଷେତ୍ରରେ ପଶିବାରୁ ତାର ହରିତ ବର୍ଣ୍ଣ ଲୁଚିଯାଇ କୃଷ୍ଣବର୍ଣ୍ଣ ଦୃଶ୍ୟ-ମାନ ହେଲା । ଏହିପରି ବନଶ୍ରୀ ସର୍ବାଙ୍ଗରେ ଶ୍ୟାମବର୍ଣ୍ଣ ଧାରଣ କଲା ।

ମୋହନ ଆଶ୍ରମକୁ ଫେରିବାକୁ ଉତ୍କଣ୍ଠିତ ହୋଇ ପଡ଼ିଲା । ସେ ବସିବା ସ୍ଥାନରୁ ଉଠି ଆଶ୍ରମ ଧେନୁ ପ୍ରତି ଦୃଷ୍ଟିପାତ କଲା । ମାତ୍ର ଗାଭୀ ସେତେବେଳକୁ

ତାର ଦୃଷ୍ଟିର ଅଭ୍ୟନ୍ତରରୁ ଚାଲିଯାଇଥିଲା । ମୋହନ ହୃଦସ୍ତରେ ଗଭୀର ଆଶଙ୍କା ଜାତ ହେଲା । ସେ ଧେନୁ ଅନ୍ୱେଷଣରେ ତାର ପଦ ଚିହ୍ନ ଅନୁସରଣ କରି ଗଭୀର କାନନ ମଧ୍ୟରେ ପ୍ରବେଶ କଲା ।

ସେଦିନର ସ୍ମୃତି ମନେ ପଡ଼ିଲେ ଆଜି ମଧ୍ୟ ଶରୀର ରୋମାଞ୍ଚିତ ହୋଇଯାଏ । କ୍ରମେ ରାତ୍ରି ଅଧିକ ହେବାରୁ ସେ ନିରୁପାୟ ଅବସ୍ଥାରେ ବୃକ୍ଷଶାଖାରେ ରାତିଯାପନ କରିଥିଲା । ପରଦିନ ପ୍ରଭାତରୁ ଧେନୁର ସନ୍ଧାନ ପାଇ ତା ସହିତ ଆଶ୍ରମକୁ ଫେରିଲା ।

ସେହି ବ୍ରାହ୍ମ ମୁହୂର୍ତ୍ତରେ ସେ ଦେଖିଲା— ଆଶ୍ରମ ଉଦ୍ୟାନର ଶେଷ ସୀମାରେ ଲଳିତା ଏକ ବୃକ୍ଷ ଶାଖାରେ ହସ୍ତ ନିବେଶ କରି ଅପଲକ ଦୃଷ୍ଟିରେ ତା ଆଡ଼କୁ ଚାହିଁ ରହିଛି । ଚକ୍ଷୁରେ ରାତ୍ରୀ ଜାଗରଣର କ୍ଲାନ୍ତ । ନୟନ ଜବାକୁସୁମ ପରି ରକ୍ତବର୍ଣ୍ଣ । ତାର ମନେ ହେଲା—

"ବଶିଷ୍ଠଧେନୋରନୁଯାୟିନଂ ତମା ବର୍ତ୍ତମାନଂ
ବନତା ବନାନ୍ତାତ୍
ପପୌ ନିମେଷାଲସ ପକ୍ଷ୍ମପଙ୍କ୍ତି ରୂପୋଷିତାଭ୍ୟା-
ମିବ ଲୋଚନାଭ୍ୟାମ ।"

ବନ ପ୍ରାନ୍ତରୁ ପ୍ରତ୍ୟାଗମନ କରୁଥିବା ଆଗୃର୍ଯ ବଶିଷ୍ଠଙ୍କ ଧେନୁ ସୁରଭି ତନୟା ନନ୍ଦିନୀର ଅନୁଚର ଦିଲ୍ଲୀପଙ୍କୁ ବନିତା ସୁଦକ୍ଷିଣା ନିଷ୍ପଲକ ଭାବରେ ଉଦାସୀ ଚକ୍ଷୁରେ ଯେପରି ପାନ କରୁଛନ୍ତି ।

ମାତ୍ର ମୁହୂର୍ତ୍ତକରେ ମୋହନ ସେ ଭାବ ଦମନ କରିନେଲା । କାରଣ ଲଳିତା ତାର ଗୁରୁକନ୍ୟା, ତେଣୁ ଭଗ୍ନୀ ସଦୃଶା । ଏପରି ଅନ୍ୟ ସ୍ୱ ଚିନ୍ତା କରିବା ମହାପାପ । ସେ କୋମଳଭାବରେ ପ୍ରଶ୍ନ କରିଥିଲା— ଏପରି ପ୍ରଭାତରୁ ଆସି ଏଠାରେ ଠିଆ ହୋଇଛ କାହିଁକି ?

ଲଳିତାର ମୁଖ ମଣ୍ଡଳରେ ପ୍ରିୟ ଦର୍ଶନ ଜନିତ କ୍ଷୀଣ ହାସ୍ୟରେଖା । ସରମ ମଣ୍ଡିତ ଭାବାବେଶରେ ତାର ପାଣ୍ଡୁର ମୁଖ ଅବିର ବର୍ଣ୍ଣ ଧାରଣ କଲା । ସେ ପ୍ରଶ୍ନକଲା— କାଲି ରାତ୍ରିରେ କେଉଁଠି ରହିଲ ?

ମୋହନ ଉତ୍ତର ଦେଲା— ଅସାବଧାନତାରୁ ଗାଭୀ ଗଭୀର ଅରଣ୍ୟ ମଧ୍ୟକୁ ଚାଲିଯାଇଥିଲା । ତାକୁ ଖୋଜିବାକୁ ଯାଇ ବୃକ୍ଷଶାଖାରେ ରାତ୍ରି ଯାପନ କରିବାକୁ ବାଧ୍ୟ ହେଲି ।

ଲଳିତା'ର ଚକ୍ଷୁ ଦୁଇଟି ବିସ୍ଫାରିତ ହୋଇଗଲା—ସେ କହିଲା— ତୁମକୁ ଡର ଲାଗିଲା ନାହିଁ ? ଗାଭୀକୁ ଛାଡ଼ି ଚାଲି ଆସି ପୁଣି ପ୍ରଭାତରୁ ତ ଯାଇପାର ଥାଆନ୍ତ ?

ମୋହନ କ୍ଷୀଣ ହସ ହସି ଉତ୍ତର ଦେଇଥିଲା—କର୍ତ୍ତବ୍ୟରେ ଅବହେଳା କଲେ ଏପରି କଷ୍ଟ ସହ୍ୟ କରିବାକୁ ହୁଏ ।

ଉଭୟେ ଆଶ୍ରମ ଅଭିମୁଖେ ପ୍ରତ୍ୟାଗମନ କରିଥିଲେ । ମାତ୍ର ମୋହନ ଅନୁଭବ କଲା—ସେହିଦିନରୁ କିପରି ଏକ ଅକର୍ଷଣ ପରସ୍ପରକୁ ମୋହାବିଷ୍ଟ କରି-ଦେଉଛି । ଏ ଆକର୍ଷଣ ଆସକ୍ତି ଜନିତ କି ନୁହେଁ, ତାହା ସେ ସେତେବେଳେ ଜାଣି ପାରି ନଥିଲା ।

ପ୍ରକୃତରେ ସେ ଏତେଦିନ ଯାଏ ତାକୁ ଅବହେଳା ଦେଖାଇ ଆସିଛି । ସାଥି. ବନ୍ଧୁ ବା ପ୍ରଣୟୀପରି ପାଖକୁ ଡ଼ାକି ନାହିଁ । ତାର ବିଚିତ୍ର ମନ ଗତି; ଜଗତ୍ରୁ ରହସ୍ୟ ବିଷୟରେ ସେ କେବେ ଚିନ୍ତା କରିନାହିଁ ।

ମାତ୍ର ମୋହନ ଲକ୍ଷ୍ୟ କରିଛି—ସେ ଚାହିଁଥିଲା ନିବିଡ଼ ସାନ୍ନିଧ୍ୟ, ଏକ ମଧୁମୟ ସମ୍ପର୍କ ଯେଉଁ ସମ୍ପର୍କ କି ମନୁଷ୍ୟକୁ ମନୁଷ୍ୟର ଅନ୍ତରଙ୍ଗ କରିଦିଏ । ଜଣକର ଅଙ୍ଗକୁ ଆଉଜଣକର ଅଙ୍ଗ ସ୍ପର୍ଶ କରିବାକୁ ଦିଏ । ସ୍ପର୍ଶକରି ଆନନ୍ଦ ଦିଏ ଏବଂ ଆନନ୍ଦ ପାଏ ।

ଅନ୍ତରର ସ୍ପର୍ଶ ଏହି ବାହାରର ସ୍ପର୍ଶ ବ୍ୟତୀତ ସମ୍ଭବ ନୁହେଁ । ପୁଣି ଦୁଇଟି ବହି-ରଙ୍ଗକୁ ଅନ୍ତରର ଆବେଗହିଁ ପାଖକୁ ଟାଣି ଆଣେ । ସେ ଆବେଗ ନ ରହିଲେ ସେ ସ୍ପର୍ଶଟା ନିତାନ୍ତ କାଠ ସଙ୍ଗେ କାଠର ସ୍ପର୍ଶ ବା ବସ୍ତୁସଙ୍ଗେ ବସ୍ତୁର ସ୍ପର୍ଶ ସହିତ ସମାନ; ପ୍ରାଣ ସହିତ ପ୍ରାଣର ନୁହେଁ । ମୋହନ୍ ଜାଣି ଶୁଣି ତା ନିକଟରୁ ଦୂରେଇ ଯିବାକୁ ଚେଷ୍ଟା କରିଥିଲା, ମାତ୍ର ଲଳିତା ଠିକ୍ ତାର ବିପରୀତ ଆଚରଣ କରିଥିଲା । ଅର୍ଥାତ୍ ସେ ଯେମିତିକି ଅପସରି ଯିବାକୁ ଚାହିଁଥିଲା; ନିଜର ସ୍ନେହ, ମାୟା ଓ ମମତାରେ ଲଳିତା ତାକୁ ଠିକ୍ ସେତିକି ପାଖକୁ ଟାଣି ଆଣୁଥିଲା । ଦୁଇଟି ପ୍ରାଣରେ ଆବେଗ ଏହିପରି ସଂଘର୍ଷରେ ମାତିଥିବାବେଳେ ହଠାତ୍ ଏହି ଦାରୁଣ ଦୁର୍ଯୋଗ ଉପସ୍ଥିତ ହେଲା ।

ଲଳିତାର ଆଜି କୌଣସି ସମ୍ବାଦ ନାହିଁ । ପ୍ରତି ନିୟତ ଲଳିତାରଛବି ତାର ମାନସ ପଟରେ ଉଙ୍କିମାରି ତାକୁ ଉନ୍ମନା କରିଦିଏ ମୋହନ ଗୁରୁଙ୍କର ଶ୍ରାଦ୍ଧକ୍ରିୟା ସମାପନ କରି ସ୍ଥିର କଲା—ମୃତ ହେଉ ବା ଜୀବିତ ହେଉ, ଲଳିତାର ସମ୍ବାଦ ସେ ଯେ କୌଣସି ପ୍ରକାରରେ ସଂଗ୍ରହ କରିବ ।

"ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍ ।"



ଗ୍ରହୁଁ ଗ୍ରହୁଁ ଗ୍ରୀଷ୍ମ ଋତୁ ଧରାପୃଷ୍ଠରୁ ବିଦାୟ ନେଲା । ଆକାଶରେ ଦେଖା-ଦେଲା—ଖଣ୍ଡ ଖଣ୍ଡ କଳା ମେଘ । ବନରୁ ଦାବାଗ୍ନି ଲିଭିଗଲା । ନବ ମୁଦିର ଦେଖି ଚାତକ ଆକାଶକୁ ଚାହିଁ ଜଳ ମାଗିଲା । ମୟୂର ଗିରି ବନରେ ନୃତ୍ୟ ଆରମ୍ଭ କଲା । ଭେକର ଧୈବତ ଓ ମୟୂରର ଷଡ଼ଜ ସ୍ୱରରେ ବନାକାଶ ପ୍ରକମ୍ପିତ ହେଲା । ରିମି ଝିମି ମନ୍ଦ ତାନରେ ବର୍ଷାର ଧାରା ଭୂମିରେ ପତିତ ହେଲା । ଗ୍ରୀଷ୍ମର ପ୍ରଚଣ୍ଡ ତାପରେ ତରୁ ବ୍ରତତି ଶୁଷ୍କ ହୋଇ ଯିବାରୁ ଧରଣୀ ବିକଳ ହୋଇ ପଡ଼ିଥିଲା । ବର୍ଷଣଯୁକ୍ତ ଶୀତଳବାୟୁ ଯେପରି ସଦ୍ୟ ସନ୍ତାନ ହରା ଅଭାଗିନୀ ମାତାର ବୁକୁ ଫଟା ଆର୍ତ୍ତନାଦ ରୋଳରେ ହା ହା କାର କରି ଉଠିଲା । ବୃଷ୍ଟିପାତର ଅବିଶ୍ରାନ୍ତ ଶବ୍ଦ ଆତ୍ମୀୟ ବର୍ଗର ପରିତାପ ବାଣୀ ପରି ପ୍ରତୀତ ହେଲା । ଆକାଶ ରୂପକ ଚକ୍ଷୁର ଜଳରେ ମାତା ବସୁ-ନ୍ଧରାର ବକ୍ଷର ବସନ ଭିଜି ଧାରା ପ୍ରବାହିତ ହେଲା । ସାନ୍ତ୍ୱନା ଦେବାର ଭାଷା ନ ପାଇ ଦଶାଙ୍ଗନାଗଣ ନୀରବ ହୋଇଗଲେ । ମାତ୍ର ସମସ୍ତେ ବିଷାଦାଚ୍ଛନ୍ନ । ମଧ୍ୟେ ମଧ୍ୟେ ଦାତ୍ୟୁହ ଦମ୍ପତ୍ତିଙ୍କର କୋଳାହଳ ଶ୍ମଶାନବନ୍ଧୁଙ୍କ ପରି ଯାହା ଟିକିଏ ଶ୍ରୁତିଗୋଚର ହେଲା ।

ଚାତୁର୍ମାସ୍ୟା ବ୍ରତ ସମୟ ଉପସ୍ଥିତ ହେଲା । ଦୁଷ୍ଟ ନେଳରେ ସାଧୁ ଲୋକମାନେ ନୀରବ ରହିଲାପରି ମଣ୍ଡୁକମାନଙ୍କର ରଡ଼ି ଶୁଣି କୋକିଳମାନେ ମୌନବ୍ରତ ଧାରଣ କଲେ । ପ୍ରବାସୀ ଫେରି ଆସିଲା ଗୃହକୁ । ସାଧୁ, ସନ୍ନ୍ୟାସୀ ଓ ବ୍ରହ୍ମଚାରୀମାନେ ବ୍ରତ ପାଳନ ଉପଲକ୍ଷେ ପର୍ବତ, ଗୁମ୍ଫା, ମଠ ଓ ମନ୍ଦିରରେ ଅଶ୍ରୟନେଲେ । ସୈନିକମାନେ ଯୁଦ୍ଧକ୍ଷେତ୍ରରୁ ଫେରି ଆସିଲେ ।

ତାମ୍ରଲିପ୍ତ ବନ୍ଦରରେ ଉତ୍ସବ ।

ସମସ୍ତ ବଣିଜ ବୋଇତ ବିଦେଶରୁ ଫେରି ଆସିଛି । ବଣିକମାନେ ମାଲପତ୍ର ନେଇ ଭଣ୍ଡାରଘରେ ସାଇତିରଖିଲେଣି । ଏ ଉତ୍ତାରେ ବିଭିନ୍ନ ପେଣ୍ଠସ୍ଥାନମାନଙ୍କୁ ନଦୀପଥରେ ଏବଂ ଭାରବାହୀ ପଶୁମାନଙ୍କ ଦ୍ୱାରା ଆବଶ୍ୟକୀୟ ଦ୍ରବ୍ୟ ପ୍ରେରଣ କରିବେ ।

ସେଠାରେ ଆସନ୍ତା ଗ୍ରୀଷ୍ମମାସ ଯାଏ ବିକ୍ରୟ ଲାଗିବ । ଏହାପରେ ବିଦେଶ ବଣିକ ପାଇଁ ଆବଶ୍ୟକୀୟ ଦ୍ରବ୍ୟ ସଂଗ୍ରହ କରି ସେମାନେ କାର୍ତ୍ତିକ ପୂର୍ଣ୍ଣିମା ବେଳକୁ ପୁଣି ବୋଇତ ବଣିଜରେ ଯାତ୍ରା କରିବେ ।

ଚତୁର୍ମାସ୍ୟରେ କାର୍ଯ୍ୟକ୍ଷେତ୍ର ମାନ୍ଦା । ଏକ ପ୍ରକାର ବିଶ୍ରାମ କହିଲେ ଚଳେ । ବଣିକମାନେ ଶ୍ରେଷ୍ଠ ଶ୍ରେଷ୍ଠ ନୌକା ସାହାଯ୍ୟରେ ରାଜ୍ୟର ଅଭ୍ୟନ୍ତରକୁ ଗମନ କରି ବିଭିନ୍ନ ପେଣ୍ଠସ୍ଥାନ ପରିଦର୍ଶନ କରନ୍ତି ଏବଂ କେଉଁଠି କେଉଁ ଦ୍ରବ୍ୟ ସୁଲଭରେ ମିଳେ ତାହାର ସନ୍ଧାନ ନିଅନ୍ତି । ବିଦେଶ ଯାଉଥିବା ବୋଇତ ଗୁଡ଼ିକର ଏହି ସମୟରେ ମରାମତି କାର୍ଯ୍ୟ ହୁଏ । ନୂତନ ବୋଇତ ମଧ୍ୟ ନିର୍ମାଣ କରାଯାଏ । ଆଜିର ଉତ୍ସବ କେବଳ ବିଦେଶାଗତ ବଣିକ ଓ ସେମାନଙ୍କ ସାର୍ଥମାନଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଉଦ୍ଦିଷ୍ଟ । କାହାରି ମନରେ ଦୁଃଖ ନାହିଁ କି ଚିନ୍ତା ନାହିଁ । ସମସ୍ତେ ଆନନ୍ଦ କୋଳାହଳରେ ନିମଗ୍ନ ।

ଗୃତ୍ରପ୍ୟ ବନ୍ଦରୀ ଅପୂର୍ବ ଆଲୋକ ସଜ୍ଜାରେ ସଜ୍ଜିତ । ନଦୀକୂଳର ଝାଉଁ ଓ ଦେବ ଦାରୁ ବଣର ବିଭିନ୍ନ ସ୍ଥାନରେ ପ୍ରମୋଦକୁଞ୍ଜମାନ । କାନନର ପ୍ରବେଶ ଦ୍ୱାରରେ ଲତା, ପୁଷ୍ପ ଓ ବିଭିନ୍ନ ରଙ୍ଗର ବସ୍ତ୍ରରେ ତୋରଣମାନ ନିର୍ମିତ । ଲତାକୁଞ୍ଜରେ ଅସଂଖ୍ୟ ପ୍ରଦୀପ ଓ ସ୍ଥାନେ ସ୍ଥାନେ ମଶାଲର ତୀବ୍ର ଆଲୋକ ।

ଉତ୍ସବରେ ପୂର୍ବ ଦିବସରୁ ଦର୍ଶକ, ବ୍ୟବସାୟୀ ଓ କଳାକାର ଗଣ ଉପସ୍ଥିତ ହେଲେ । ବନ୍ଦରର ଏକ ମୁକ୍ତ ପ୍ରାନ୍ତରରେ ବ୍ୟବସାୟୀମାନେ ନିଜ ନିଜର ଦ୍ରବ୍ୟ ସମ୍ଭାର ସୁସଜ୍ଜିତ କରି ବିକ୍ରୟ ନିମନ୍ତେ ଗଚ୍ଛିତ ରଖିଲେ । ହାତୀଦାନ୍ତର ବିଭିନ୍ନ କାରୁକାର୍ଯ୍ୟ ପୂର୍ଣ୍ଣ ଚିତ୍ର, ପଥରର ବାସନ ଓ ଦେବ ଦେବୀ ମୂର୍ତ୍ତି, କଂସା ଓ ପିତଳର ବିଭିନ୍ନ ଆବଶ୍ୟକୀୟ ସାମଗ୍ରୀ, ସୂକ୍ଷ୍ମ ବସ୍ତ୍ର, ଲୌହଜାତ ଦ୍ରବ୍ୟ ଏବଂ ଖାଦ୍ୟ ପଦାର୍ଥର ବିପଣୀମାନ ପୂର୍ବ ଦିବସରୁ ସୁସଜ୍ଜିତ ହୋଇଥିଲା । ଶିଶୁ, କିଶୋର ଏବଂ ବାଳକ ବାଳିକାମାନେ ନବ ବସ୍ତ୍ର ପରିଧାନ କରି ଆନନ୍ଦ ଉତ୍ସବରେ ମତ୍ତହେଲେ ।

ଦେବ ସ୍ନାନ ପୂର୍ଣ୍ଣିମା । ପତିତ ପାବନ ଶ୍ରୀ ଜଗନ୍ନାଥ ଆଜି ସ୍ନାନ ମଣ୍ଡପରେ ବିଜେ କରି ଅର୍ଥୀ, ପ୍ରତ୍ୟର୍ଥୀ, ଭକ୍ତ, ଆର୍ତ୍ତ, ଦୀନ-ଦୁଃଖି, ଅଚଣ୍ଡାଳ ବ୍ରାହ୍ମଣ ପର୍ଯ୍ୟନ୍ତ ସମସ୍ତଙ୍କୁ ଦର୍ଶନ ଦେଇ ନିଜର ପତିତପାବନ ନାମ ସାର୍ଥକ କରିବେ । ସର୍ବ ଧର୍ମ ସମନ୍ୱୟ ସ୍ଥଳ ଶ୍ରୀ ପୁରୁଷୋତ୍ତମ ଧାମରେ ପ୍ରାସାଦରୁ କୁଟୀରବାସୀ ପର୍ଯ୍ୟନ୍ତ ସମସ୍ତେ ଏକତ୍ରିତ ହୋଇ ଦାରୁବ୍ରହ୍ମଙ୍କର ଉପାସନା କରିବେ । ନୀଳସିନ୍ଧୁ ତୀର

ନୀଳପର୍ବତର ଶିଖରରେ ପତିତପାବନବାନା ଆନାଶର ସୁନୀଳ ବକ୍ଷରେ ଧୀର ସମୀରଣରେ କ୍ରୀଡ଼ା କରି ସାମ୍ୟ ଧର୍ମ ପ୍ରଚାର କରି କହୁଛି—"ଏକ ବ୍ରହ୍ମ ଦ୍ୱିତୀୟ ନାସ୍ତି"।

ଭଗବାନ ଭାସ୍କର ଅସ୍ତାଚଳ ଶିଖର ସ୍ପର୍ଶ କରିବା ସଙ୍ଗେ ସଙ୍ଗେ ଅସଂଖ୍ୟ ଦୀପ ତାରକାରେ ଗୃହଦ୍ୱାରଦେଶ ଉଦ୍ଭାସିତ ହୋଇ ଉଠିଲା । କ୍ରମେ ଅନ୍ଧକାର ମାଡ଼ି ଆସିଲା । ଗୋଟିଏ ଦୁଇଟି ତାରା ଆକାଶ ବକ୍ଷରେ ଦେଖାଦେଲେ । ଉତ୍ସବ ଦର୍ଶନାକାଂକ୍ଷୀ ନରନାରୀଗଣ ନବୀନ ସାଜସଜ୍ଜାରେ ସଜ୍ଜିତ ହୋଇ ନିର୍ଦ୍ଦିଷ୍ଟ ସ୍ଥାନରେ ଏକତ୍ରିତ ହେଲେ ।

ଆକାଶରେ ପୂର୍ଣ୍ଣଚନ୍ଦ୍ର ସମୁଦିତ । ତାଙ୍କର ସ୍ନିଗ୍ଧ କିରଣ ସ୍ପର୍ଶରେ ଜଳ, ସ୍ଥଳ ଓ ଆକାଶ ଉଦ୍ଭାସିତ । ସମୀରଣ ମୃଦୁ ।

କ୍ଷୀର ସିନ୍ଧୁର ଶାନ୍ତିମୟ କୋଡ଼ ପରିତ୍ୟାଗ କରି ଚନ୍ଦ୍ରଦେବ କ୍ରମେ ଆକାଶର ଊର୍ଦ୍ଧ୍ୱଭାଗକୁ ଗମନ କଲେ ।

ଚନ୍ଦ୍ରୋତ୍ପଳା ବକ୍ଷରେ ଅସଂଖ୍ୟ ମଶାଲର ଉଜ୍ଜ୍ୱଳ ଆଲୋକ । ବିଭିନ୍ନ ପ୍ରକାରର ସୁସଜ୍ଜିତ ବୋଇତଗୁଡ଼ିକ ଚନ୍ଦ୍ରୋତ୍ପଳାର ନୀଳ ନୀରରେ ଫେନିଳ ତରଙ୍ଗ ସୃଷ୍ଟି କରି ଅନିର୍ଦ୍ଦିଷ୍ଟ ଭାବରେ ଗତି କରୁଛନ୍ତି । କେଉଁ ବୋଇତ ଜଳହସ୍ତୀର ଆକାର ଧାରଣ କରିଛି ତ, କିଏ ସମସ୍ତ ମୟୂର ପରି ଲୀଳାୟିତ ଛନ୍ଦରେ ଗତି କରୁଛି । ଆଉ କେଉଁ ବୋଇତ ବା ରାଜହଂସ ପରି ଧବଳ ବର୍ଣ୍ଣରେ ନିଜର ରୂପ ସଜାଇ ଅଳସ ଗତିରେ ଚନ୍ଦ୍ରୋତ୍ପଳା ବକ୍ଷରେ ମୃଦୁ ବୁଲୁଛି । ବୋଇତର ଆକାର ପ୍ରକାର ଅନୁସାରେ ସେମାନଙ୍କୁ ହାତୀ ବୋଇତ, ମୟୂରପକ୍ଷୀ ଓ ରାଜହଂସ ପ୍ରଭୃତି ନାମକରଣ କରା-ଯାଇଛି । ପ୍ରତ୍ୟେକ ବୋଇତର ମାସ୍ତୁଲ ଦଣ୍ଡ ଉପରେ କଳିଙ୍ଗର ଜାତୀୟ ପତାକା ଉଡ଼ୁଛି ।

ସାଧବମାନେ ନିଜ ନିଜର ପ୍ରେମିକାମାନଙ୍କ ସହ ଜଳକେଳିରେ ପ୍ରମତ୍ତ । କେଉଁ ନାୟିକା ନିଜର ଅଳସ ତନୁଲତା ପ୍ରେମିକର ବକ୍ଷରେ ଢାଳି ଦେଇଛି ତ, କିଏ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଛି ପୂର୍ଣ୍ଣଚନ୍ଦ୍ର ଆଡ଼େ । କଣ୍ଠରେ ଅବ୍ୟକ୍ତ ସଙ୍ଗୀତ ।

ହର୍ଷ, ଉଲ୍ଲାସ ଓ ଆନନ୍ଦ କୋଳାହଳରେ ଚନ୍ଦ୍ରୋତ୍ପଳା ମୋଦମୟୀ ହୋଇ ଉଠିଛି । କେଉଁଠି ନାଗରୀର ମନରେ ଜାଗିଛି ଅଭିମାନ । ପ୍ରେମିକ ନାଗର ବକ୍ଷରେ ସେ ମୁହଁ ଲୁଚାଇଛି । ଅଭିମାନ ଭାଙ୍ଗିବା ପାଇଁ ପ୍ରେମିକ ନିଜର ଦୁଇ ହାତରେ

ତାର ମୁଖକୁ ତୋଳି ଧରି କହୁଛି—ଏଣେ ଚନ୍ଦ୍ର ଆଡ଼େ ଚାହିଁଲ ? ଚନ୍ଦ୍ରରେ କଳଙ୍କ ଅଛି, ମାତ୍ର ତୁମର ଏ ମୁଖଚନ୍ଦ୍ର ସମ୍ପୂର୍ଣ୍ଣ ନିଷ୍କଳଙ୍କ ।

ତାର ଏ ଧୃଷ୍ଟ ଶୁଣି ନାଗରୀ କପଟ କ୍ରୋଧରେ ଉତ୍ତର ଦେଲା—ତୁମେ କେବଳ ଚକୋର ଭାବରେ ମୟୂଖ ପାନ ପାଇଁ ଚାହିଁ ରହିଛ ?

—ନିଶ୍ଚୟ, ଚନ୍ଦ୍ରରୁ ମୟୂଖପାନ କରିବା ତ ଚକୋରର ଧର୍ମ ।

ବକ୍ର କଟାକ୍ଷ ହାଣି ପ୍ରେମିକା ପ୍ରଶ୍ନ କଲା—ମାତ୍ର ଯେଉଁଦିନ ଚନ୍ଦ୍ର ଉଦିତ ନ ହୁଏ, ଅଥବା ଚନ୍ଦ୍ରମାଙ୍କୁ ରାହୁ ଗ୍ରାସ କରେ, ସେଦିନ ତ କାହିଁ ଚକୋର ଟିକିଏ ହେଲେ ଦୁଃଖ ପ୍ରକାଶ କରେ ନାହିଁ ?

ପୁରୁଷ ନିରୁତ୍ତର । ଏ ପ୍ରଶ୍ନର କି ଉତ୍ତର ଦେବ କିଛି ସ୍ଥିର କରିପାରେ ନାହିଁ । ନିଜର ବଳିଷ୍ଠ ବାହୁରେ ପ୍ରିୟାକୁ କୋଳକୁ ଟାଣି ନେଇ ଆଙ୍କିଦିଏ ଅଜସ୍ର ଚୁମ୍ବନ ।

ଥର ଥର କଣ୍ଠରେ ଶବ୍ଦ ଶୁଭେ—ଇସ୍, କି ଦୁଷ୍ଟ ତୁମେ ।

ତୃତୀୟ ଦିବସ ବ୍ୟାପୀ ସଙ୍ଗୀତ ନୃତ୍ୟର ପ୍ରତିଯୋଗିତା । ରାତ୍ରିର ଦ୍ୱିତୀୟ ପ୍ରହରରେ ସାଧବମାନେ ନିଜ ନିଜର ପ୍ରେମିକା ନର୍ତ୍ତକୀମାନଙ୍କ ସହିତ ସଭାସ୍ଥଳରେ ଉପସ୍ଥିତ ହେଲେ । ସ୍ୱର ମଣ୍ଡଳରୁ ସ୍ୱର ଲହରୀ ଭାସି ଆସିଲା । ଦର୍ଶକମାନେ ନିଜ ନିଜ ସ୍ଥାନରେ ନିଷ୍ପଳକ ନୟନରେ ନୃତ୍ୟ ମଞ୍ଚ ଆଡ଼େ ଚାହିଁ ରହିଲେ । ଘୋଷକ ନର୍ତ୍ତକୀମାନଙ୍କର ପରିଚୟ ଘୋଷଣା କଲା ।

ପ୍ରଥମ ପାଳି ପଡ଼ିଲା—ଇନ୍ଦୁଲେଖାର । ସେ ଶ୍ରେଷ୍ଠୀ ଧନଞ୍ଜୟଙ୍କର ସଭ ନର୍ତ୍ତକୀ ଷୋଡ଼ଶୀ—ତନ୍ୱୀ । ଯୌବନର ନବ ରାଗରେ ଅଙ୍ଗ ଯଷ୍ଟି ରଞ୍ଜିତ । ପ୍ରସ୍ଫୁଟିତ ଇନ୍ଦୀବର ଭଳି ଆୟତ ନେତ୍ର ଯୁଗଳ । ଶୁକ ଚଞ୍ଚୁ ନାସିକା । ବିମ୍ବୋଷ୍ଠୀ । ଡାଳିମ୍ବ ବୀଜଦଶନା । ସ୍ୱର୍ଣ୍ଣଗୌର ମୁଖମଣ୍ଡଳରେ ଲୋଧ୍ର ରେଣୁ ଲେପିତ । କପୋଳରେ ଗୋରୋଚନା । ଚିବୁକରେ ରକ୍ତ ଚନ୍ଦନର ମକରୀ । କରତଳ ଓ ପଦଯୁଗଳ ଆଳକ୍ତ ରାଗରେ ରଞ୍ଜିତ । ନିରାଭରଣା ମାତ୍ର ପ୍ରତି ଅଙ୍ଗରୁ ସୌନ୍ଦର୍ଯ୍ୟର ଦ୍ୟୁତି ବିଚ୍ଛୁରିତ ହେଉଛି ।

ଇନ୍ଦୁଲେଖା ମଞ୍ଚ ଉପରକୁ ଅସି ଦର୍ଶକମାନଙ୍କ ଉଦ୍ଦେଶ୍ୟରେ ଲୀଳାୟିତ ଭଙ୍ଗୀରେ ଦୁଇହାତ ଟେକି ନମସ୍କାର କଲା । ତାପରେ ଆରମ୍ଭ କଲା ମତ୍ତମୟୂର ନୃତ୍ୟ ।

ଅଳେକର ବିଭିନ୍ନ ବର୍ଣ୍ଣାଳୀରେ ମନେ ହେଲା—ସତେ ଯେପରି ନବ ମୁଦିର ଦେଖି ନବଡ଼ ଅରଣ୍ୟରେ ମୟୂର ପ୍ରମତ୍ତ ହୋଇଉଠିଛି । ଊର୍ଦ୍ଧ୍ୱ ଦୃଷ୍ଟିରେ ଗୁହିଁ ରହିଛି ଆକାଶକୁ । କେକାରବରେ ଆହ୍ୱାନ କରୁଛି ପ୍ରିୟାକୁ । ତାର ଏ ଅହ୍ୱାନରେ ବନାକାଶ ପ୍ରକମ୍ପିତ ।

ସୁର ମଣ୍ଡଳରୁ ମେଘ ମନ୍ଦ୍ର ତାନରେ ଝମି ଝିମି ଶବ୍ଦ ଭାସି ଆସିବା ସଙ୍ଗେ ସଙ୍ଗେ ନୃତ୍ୟର ବେଗ ବୃଦ୍ଧି ପାଇବାରେ ଲାଗିଲା ।

ଦର୍ଶକଗଣ ସ୍ତବ୍ଧ ଓ ବିସ୍ମିତ ।

ଦ୍ୱିତୀୟ ପାଳି ପଡ଼ିଲା—ଶ୍ରେଷ୍ଠୀ ବୀରଭଦ୍ରଙ୍କ ପ୍ରେମିକା ନୃତ୍ୟ କୁଶଳା ମାଳବିକାର । ସେ ବନ୍ଦୀ ବଳକା ନୃତ୍ୟ ପ୍ରଦର୍ଶନ କଲା । ନୃତ୍ୟଟିର ସାରମର୍ମ ହେଉଛି—

କେଉଁ ଏକ ବୃକ୍ଷ ଶାଖାରେ ବଳକା ଦମ୍ପତି ବାସ କରୁଥିଲେ । ତାଙ୍କୁ ଦେଖି ବ୍ୟାଧ ଜାଲ ବିଛାଇ ଦେଲା । ସେ ଜାଲରେ ବନ୍ଦୀ ହେଲା ବଳାକା । ବ୍ୟାଧ ତାକୁ ନେଇ ପିଞ୍ଜରା ମଧ୍ୟରେ ଆବଦ୍ଧ କରି ବୃକ୍ଷ ଶାଖାରେ ଓହଳାଇ ଦେଲା । ବଳାକା ଉଦାସ ଦୃଷ୍ଟିରେ ଗୁହିଁ ରହିଛି ଆକାଶକୁ । ବୃକ୍ଷ ଶାଖାରେ ପ୍ରିୟା ତାର ତା ଆଡ଼କୁ ଆକୁଳ ନୟନରେ ଗୁହିଁ ରହିଛି । ଚକ୍ଷୁ କୋଣରେ ଛଳ ଛଳ ଲୋତକ ବିନ୍ଦୁ । ପ୍ରିୟାର ଦୁର୍ଦ୍ଦଶା ଦେଖି ବଳାକା ବନ୍ଦୀରୁ ମୁକ୍ତ ହେବା ଉଦ୍ଦେଶ୍ୟରେ ପିଞ୍ଜରା ମଧ୍ୟରେ ଆରମ୍ଭ କରିଛି—ଚଣ୍ଡ ନୃତ୍ୟ ।

କ୍ରମେ ଅନ୍ୟ ନୃତ୍ୟ ପଟିୟସୀମାନେ ସେମାନଙ୍କର ନୃତ୍ୟକଳା ପ୍ରଦର୍ଶନ କଲେ । ସେଗୁଡ଼ିକ ମଧ୍ୟରେ ନଟରାଜ, କାମଦହ, ଅଭିସାରିକା ନୃତ୍ୟ ଉଲ୍ଲେଖ-ଯୋଗ୍ୟ ।

ପରିଶେଷରେ ପାଳି ପଡ଼ିଲା କାଦମ୍ବିନୀର । ସେ ଶ୍ରେଷ୍ଠୀ ବିକ୍ରମଙ୍କର ନୃତ୍ୟ ସୁନ୍ଦରୀ । କାଦମ୍ବିନୀ ଅପରୂପ ରୂପସୀ । ମୁକ୍ତଶ୍ରୀ ବିଭା ମଣ୍ଡିତ । କଟାକ୍ଷରେ ବିଶ୍ୱ ବିମୋହନ ଶକ୍ତି । ପ୍ରସ୍ଫୁଟିତ ଶ୍ୱେତ ପଦ୍ମ ପରି ବଦନ ମଣ୍ଡଳ । ଆଜାନୁଲମ୍ବିତ ଭୁଜ ଯୁଗଳରେ ଚମ୍ପକ କଳିକା ସଦୃଶ କରାଙ୍ଗୁଳି । ପାଦରେ ରକ୍ତ କୋକନଦର

ଛବ । ପରିଧାନ କଳିଙ୍ଗର ସୂକ୍ଷ୍ମ ଶ୍ୱେତ ବସ୍ତ୍ର । ମସ୍ତକରେ ପୁଷ୍ପ ଗୁଚ୍ଛ । ଗଳାରେ ବନମାଳ । ବାହୁଟୀ, କଙ୍କିଣୀ, ବଳୟ--ସମସ୍ତ ପୁଷ୍ପର ଆଭରଣ ।

କାଦମ୍ବିନୀ ଦଶ ଅବତାର ନୃତ୍ୟ ଆରମ୍ଭ କଲା । ପୁର ମଣ୍ଡଳରୁ ବାଦ୍ୟ ଯନ୍ତ୍ରର ଧ୍ୱନି ଭାସି ଆସିବା ସଙ୍ଗେ ସଙ୍ଗେ କାଦମ୍ବିନୀ ରାଧାମାଧବଙ୍କ ଚନ୍ଦ୍ରପଟ୍ଟ ସମ୍ମୁଖରେ କରଯୋଡ଼ି ଦଣ୍ଡାୟମାନ ହେଲା । ଚନ୍ଦ୍ରପଟ୍ଟରେ ପୁଷ୍ପମାଳ୍ୟ ଅର୍ପଣ କରି ଅର୍ଘ୍ୟଥାଳୀ ଧରି ଆରତି କଲା । ପରିଶେଷରେ ଆଣ୍ଠୁମାଡ଼ି ବସି ଲୀଳାୟିତ ଛନ୍ଦରେ ବଙ୍କ-କରପୃଷ୍ଠରେ ଆରମ୍ଭ କଲା—ଭକ୍ତ କବି ଜୟଦେବଙ୍କ ଦଶ ଅବତାର ଗୀତ—

"ବେଦାନୁଦ୍ଧରତେ ଜଗନ୍ନିବହତେ
ଭୂଗୋଳ ମୁଦ୍‌ବିଭ୍ରତେ
ଦୈତ୍ୟାନ ଦାରୟତେ ବଳିଂ ଛଳୟତେ
କ୍ଷତ୍ର କ୍ଷୟଂ କୁର୍ବତେ ।
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ
କାରୁଣ୍ୟ ମାତନ୍ୱତେ
ମ୍ଳେଚ୍ଛାନ୍ ମୂର୍ଚ୍ଛୟତେ ଦଶାକୃତି କୃତେ
କୃଷ୍ଣାୟ ତୁଭ୍ୟଂ ନମଃ ।"

ପ୍ରାର୍ଥନା ପରେ ଆରମ୍ଭ ହେଲା ନୃତ୍ୟ । ନୃତ୍ୟର ତାଳେ ତାଳେ ନୂପୁରର ଝୁଣୁଝୁଣୁ ସ୍ୱନରେ ସଭାସ୍ଥଳ ନିସ୍ତବ୍ଧ ହୋଇଗଲା । ଦର୍ଶକଗଣ କ୍ରମେ ହତ । ଶୁଖିଲା ପତ୍ରର ମର୍ମର ଧ୍ୱନି ଯାହା ଟିକିଏ ଶ୍ରୁତି ଗୋଚର ହୁଏ ।

କାଦମ୍ବିନୀ ଅନିନ୍ଦିତା । ମନେହୁଏ--ସେ ଯେପରି ତାର ଭକ୍ତି, ମତି, ପ୍ରୀତି ଧୃତି ସମସ୍ତ କିଛି ଟେକି ଧରିଛି ଶ୍ରୀରାଧା ମାଧବଙ୍କ ଚରଣାରବିନ୍ଦରେ । ତାର ଅଙ୍ଗ ପ୍ରାଚୀନ କୌଣସି ମନ୍ଦିରର ପ୍ରସ୍ତରରେ ନିର୍ମିତ । ତାହା ହଲୁ ନାହିଁ, ଘୂନ୍ଲୁ ନାହିଁ, ଉତପ୍ତ ହୋଇ ନାହିଁ କି ବିଗଳିତ ହୋଇନାହିଁ । ସେ ସ୍ଥିର, ଅକମ୍ପ ଓ ଅବିଚଳ ।

କ୍ରମେ ନୃତ୍ୟର ବେଗ ବୃଦ୍ଧି ପାଇବାରେ ଲାଗିଲା । ବାଦ୍ୟକାରମାନଙ୍କର ହସ୍ତର ଗତି ଶିଥିଳ ହୋଇ ପଡ଼ିଲା । ନୃତ୍ୟରତା କାଦମ୍ବିନୀର କେଶ ଗୁଚ୍ଛରୁ ପୁଷ୍ପରାଶି ସ୍ଥାନଚ୍ୟୁତ ହୋଇ ବିକ୍ଷିପ୍ତ ଭାବରେ ଭୂମିରେ ପତିତ ହେଲା ।

ମନେ ହେଲା—ସତେ ଯେପରି ଆକାଶର ତାରା ଫୁଲ ହୋଇ ପୃଥିବୀ ଉପରେ ବୃଷ୍ଟି ହେଲା ଅଥବା ସୂର୍ଯ୍ୟର କିରଣ ମୃଦୁପ୍ରଭ ହୋଇ ଇନ୍ଦ୍ରଧନୁ ପରି ବିଚିତ୍ର

ରଙ୍ଗ ବେରଙ୍ଗର ଆଭା ବିତରଣ କରିଦେଲା ।
ରଜତ ଶୁଭ୍ର ଆକାଶ—ସ୍ୱର୍ଣ୍ଣବର୍ଣ୍ଣା ଧରିତ୍ରୀ ।
ବାଦ୍ୟଯନ୍ତ୍ରର ମନୋହର ଧ୍ୱନିରେ ସଭାସଦଗଣ ଆତ୍ମ ବିସ୍ମୃତ ।

ଭାରତୀୟ ସଂସ୍କୃତିରେ ଦୁଇଟି ବିଭାଗ ଅଛି । ଗୋଟିଏ ହେଉଛି—ଭାରତୀୟ ଆର୍ଯ୍ୟ ସଂସ୍କୃତି ଏବଂ ଅନ୍ୟଟି ହିନ୍ଦୁର ନିଜସ୍ୱ ସଂସ୍କୃତି । ହିନ୍ଦୁ, ମୁସଲମାନ ଏବଂ ଖ୍ରୀଷ୍ଟିଆନ ଭାରତୀୟ ଆର୍ଯ୍ୟ ସଂସ୍କୃତିର ଅନ୍ତର୍ଗତ । ମାତ୍ର ହିନ୍ଦୁ ସଂସ୍କୃତି କେବଳ ଶିଖ, ଜୈନ, ବୌଦ୍ଧ, ଶାକ୍ତ, ପରମାର୍ଥ ଏବଂ ବୈଷ୍ଣବ ପ୍ରଭୃତି ହିନ୍ଦୁ ଧର୍ମର ବିଭିନ୍ନ ଶାଖା ଏବଂ ପ୍ରଶାଖାକୁ ନେଇ ଗଠିତ । ସବୁ ହିନ୍ଦୁଙ୍କର ଜୀବନ ସମ୍ବନ୍ଧୀୟ ଦୃଷ୍ଟିକୋଣ ବେଦାନ୍ତର ଅଧ୍ୟାତ୍ମବାଦ ଦ୍ୱାରା ପ୍ରଭାବିତ ତଥା ପ୍ରତିଷ୍ଠିତ । ଏ ସଂସ୍କୃତିର ପୁଣି ଦୁଇଟି ଦିଗ ଅଛି । ଗୋଟିଏ ହେଉଛି—ଆଧ୍ୟାତ୍ମ ଏବଂ ଅନ୍ୟଟି ଭୌତିକ । ଏହାର ଆଧ୍ୟାତ୍ମ ଅଂଶ—ଧର୍ମ, ନୀତି, ବିଧିବିଧାନ, ବିଦ୍ୟା, କଳା, ସାହିତ୍ୟ ଆଦି ସଦ୍‌ଗୁଣ ଓ ଶିଷ୍ଟାଚାର ଏବଂ ଭୌତିକ ଅଂଶ—କୃଷି, ପଶୁପାଳନ, ସ୍ଥପତି, କଳା, ଯନ୍ତ୍ର ନିର୍ମାଣ ଓ ଅର୍ଥୋତ୍ପାଦନ ଇତ୍ୟାଦି । ମୋଟ ଉପରେ ହିନ୍ଦୁ ଧର୍ମର ନିୟମ ଅନୁସାରେ ମାନବିକତାର ବିକାଶ ହିଁ ଯଥାର୍ଥ ସଂସ୍କୃତି । ଏହାକୁ ଶିବ, ବିଷ୍ଣୁ, ରାମ, ବୁଦ୍ଧ, ଜୀନ ପ୍ରଭୃତି ମହାପୁରୁଷମାନେ ବିକଶିତ କରିଛନ୍ତି ଏବଂ ଶୁକ, ସନକ, ବ୍ୟାସ, ବାଲ୍ମୀକି, ବଶିଷ୍ଠ ପ୍ରଭୃତି ସିଦ୍ଧ ସାଧକମାନେ ବେଦ, ବେଦାନ୍ତ, ଉପନିଷଦ ଏବଂ ଗୀତାର ମହିମାରେ ମଣ୍ଡନ କରି ଯାଇଛନ୍ତି । ଏହାରି ମଧ୍ୟରୁ ଦଶ ଅବତାରର ସୃଷ୍ଟି ।

ବେଦରେ ଅବଶ୍ୟ ମତ୍ସ୍ୟ, କୂର୍ମ, ବରାହ, ନରସିଂହ, ବାମନ ଏବଂ ପରଶୁରାମ ଏ ଛଅଟି ଅବତାର ବିଷୟ ଉଲ୍ଲେଖ ଅଛି । ମାତ୍ର ଭକ୍ତକବି ଜୟଦେବ ପରବର୍ତ୍ତୀ ଆଉ ଚାରିଟି ଅବତାର ସଂଯୋଗ କରି ଦଶ ଅବତାରର ବର୍ଣ୍ଣନା କରିଛନ୍ତି । ସେ ତାଙ୍କ ପ୍ରାର୍ଥନାରେ କହିଛନ୍ତି—

ହେ ଶ୍ରୀକୃଷ୍ଣ ! ତୁମେ ମତ୍ସ୍ୟ ରୂପରେ ବେଦ ଉଦ୍ଧାର କରିଛ, କୂର୍ମ ରୂପରେ ପୃଥିବୀକୁ ବହନ କରିଛ, ବରାହ ଅବତାରରେ ପ୍ରଳୟ ଜଳରେ ବୁଡ଼ି ଯାଇଥିବା ପୃଥିବୀକୁ ଉଦ୍ଧାର କରିଛ, ପୁଣି ନୃସିଂହ ରୂପରେ ହିରଣ୍ୟ କଶିପୁ ବିଦାରଣ କରି

ବାମନ ରୂପରେ ବଳୀକୁ ଛଳିଛ । ପରଶୁରାମ ଅବତାରରେ କ୍ଷତ୍ରୀୟମାନଙ୍କ ସଂହାର କରିଛ, ରାମ ରୂପରେ ରାବଣକୁ ଜୟ କରିଛ, ବଳରାମ ଅବତାରରେ ହଳକୁ ଅସ୍ତ୍ରରୂପେ ଧାରଣ କରିଛ । ବୁଦ୍ଧ ରୂପରେ କରୁଣା ପ୍ରଦର୍ଶନ କରିଛ, ପୁଣି କଳ୍କୀ ରୂପରେ ମ୍ଳେଚ୍ଛମାନଙ୍କ ସଂହାର କରିଛ ।

ସମୁଦାୟ ନୃତ୍ୟଟି ଏକ ସ୍ତବ ବନ୍ଦନା । ଅନାଦି ଅନନ୍ତ କାଳରୁ ଯୁଗେ ଯୁଗେ ଏହା ଚାଲି ଆସୁଛି । ଜାୟା, ଜନନୀ, ଭଗିନୀ ଓ କନ୍ୟା ଭାବରେ ନାରୀ ପୁରୁଷ ନିକଟରେ ହୃଦୟର ଯେଉଁ ନୈବେଦ୍ୟ ଅର୍ପଣ କରି ଆସୁଛି ଏହା ତାର ଏକ ବହିଃ ପ୍ରକାଶ । ମାତ୍ର ପ୍ରଭେଦ ଏତିକି—ଦେବତା ନିକଟରେ ଆତ୍ମ ସମର୍ପଣ ଏକ ସାତ୍ତ୍ୱିକ ଭାବ ଏଥିରେ କାମନା ବାସନାର କଳ୍ପନା ପର୍ଯ୍ୟନ୍ତ ନାହିଁ

ଦର୍ଶକ ଗଣ ସ୍ତବ୍ଧ ଓ ବିସ୍ମିତ ।

ଘନ ଘନ କରତାଳି ଶବ୍ଦରେ ସଭା ମଞ୍ଚ ମୁଖରିତ ।

ଚତୁର୍ଦ୍ଦିଗରେ ଅଖଣ୍ଡ ନୈଶ ନିସ୍ତବ୍ଧତା । କେବଳ ଝାଉଁ ଓ ଦେବଦାରୁ ପତ୍ରରେ ମର୍ମର ଧ୍ୱନି ତୋଳି ସ୍ନିଗ୍ଧ ସମୀରଣ ବହି ଗଲାଣି । ସମୟେ ସମୟେ ଝିଲ୍ଲିର ଝଙ୍କାର

ବିଭିନ୍ନ ମୁଦ୍ରା, ଛନ୍ଦ ଓ ଅଙ୍ଗ ଭଙ୍ଗୀରେ କାଦମ୍ବିନୀ ନୃତ୍ୟ ପ୍ରଦର୍ଶନ କରୁଛି । ଚଳିତ ବର୍ଷର ନୃତ୍ୟ ପ୍ରତିଯୋଗୀତାରେ ସେ ଯେ ପ୍ରଥମ ବିବେଚିତା ହେବେ, ଏଥିରେ ସମସ୍ତେ ନିଃସନ୍ଦେହ ।

ମାତ୍ର···

ମନୁଷ୍ୟର ସମସ୍ତ ଇଚ୍ଛାଶକ୍ତି, ସାଧ-ସାଧନା, କୁଣ୍ଠ-ମୀନତି ଏବଂ ଗର୍ବ ଓ ଅଭିମାନପରେ ପୃଥିବୀରେ ଆଉ ଗୋଟିଏ ବଡ଼ ଶକ୍ତି ଥିବାର ସମୟେ ସମୟେ ଅନୁଭୂତ ହୁଏ । ସେ ନିଜ ଇଚ୍ଛାରେ ମନୁଷ୍ୟକୁ ହସାଏ, କନ୍ଦାଏ ଏବଂ ପରିଚାଳନା କରେ । କେତେବେଳେ ଉଦ୍‌ବେଳିତ କରେ ଆନନ୍ଦରେ, କେତେବେଳେ ବା ବକ୍ଷ ରୁଦ୍ଧ କରେ ବୁକୁଫଟା ଆର୍ତ୍ତନାଦରେ ।

ସେ ଅଦୃଶ୍ୟ ଏବଂ ଅଣାକାର । ତାର ରୂପ, ରସ, ଗନ୍ଧ, ବର୍ଣ୍ଣ କିଛି ନାହିଁ । ତଥାପି ମାନବ ତାର ଅସ୍ତିତ୍ୱକୁ ସ୍ୱୀକାର କରେ । ନିଜର ଭାଗ୍ୟ ଦେବତା ବୋଲି ସମ୍ମାନ ଜଣାଏ ।

କାଦମ୍ବିନୀ ଯେତେବେଳେ ଦର୍ଶକମାନଙ୍କର ଘନ ଘନ କରତାଳିରେ

ଉତ୍ସାହିତ ହୋଇ ନୃତ୍ୟର ତାଳେ ତାଳେ ନିଜକୁ ଢଳେ ଢଳେ ଉତ୍ସର୍ଗ କରୁଥିଲା, ସେତେବେଳେ ତାର ଭାଗ୍ୟ ଦେବତା ହସୁଥିଲେ କି ଏକ ଅଲକ୍ଷିତ ସମ୍ଭାବନାରେ ।

ନାରୀ ମହୀୟସୀ

ସେବା, ତ୍ୟାଗ, ଧର୍ମ ଓ ସାମାଜିକ ସ୍ୱାର୍ଥ ମାତରେ ସେ ଦେବୀ ।

ସର୍ବସ୍ୱ ସମର୍ପଣରେ ସେ ମହିମାମୟୀ ।

ମାତ୍ର ଗୋଟିଏ ଦୋଷରେ ସେ ବିଚ୍ୟୁତ ହୁଏ ସ୍ୱର୍ଗର ଦ୍ୱାର ଦେଶରୁ । ଚାଲିଯାଏ ତ୍ରିଶଙ୍କୁର ସ୍ୱର୍ଗରେ । ପୃଥିବୀର ମାଟି ଏବଂ ସ୍ୱର୍ଗର ପାରିଜାତ ଉଭୟଙ୍କୁ ସେ ସ୍ପର୍ଶ କରିପାରେ ନାହିଁ ।

ତାହା ହେଉଛି—ଈର୍ଷା ।

ଏ ବସ୍ତୁଟି ତାହାର ଅସ୍ଥି ମଜ୍ଜାଗତ । ଅନ୍ୟ କାହାରି ନିକଟରେ ସେ ନ୍ୟୁନ ହେବାକୁ ଚାହେଁ ନାହିଁ । ଅନ୍ୟ ନାରୀର ପ୍ରଶଂସା ସେ ସହ୍ୟ କରି ପାରେ ନାହିଁ । ମନରେ ଭାବେ ସେ ଏକ ଏବଂ ଅଦ୍ୱିତୀୟା । ଅନ୍ୟମାନେ ତା ନିକଟରେ ହେୟ । ରୂପ, ଗୁଣ ଏବଂ ବୁଦ୍ଧି ବୃତ୍ତିରେ ସେ ଅନୁପମା । ତାର ଏ ଧାରଣା ଯଦି ବ୍ୟାହତ ହୁଏ ତେବେ ସେ ହିଂସ୍ର ହୋଇ ଉଠେ । ସମସ୍ତ ପାରିପାର୍ଶ୍ୱିକ ଅବସ୍ଥା ଭୁଲିଯାଏ । ବିଶେଷତଃ ନିଜର ପ୍ରେମିକ ଯଦି ଅନ୍ୟ ନାରୀର ପ୍ରଶଂସା କରେ କିମ୍ବା ଲୋଭନୀୟ ଦୃଷ୍ଟିରେ କୌଣସି ନାରୀକୁ ଚାହେଁ, ତେବେ ତା ନିକଟରେ ତାହା ଅସହ୍ୟ ହୋଇ-ଉଠେ ସେତେବେଳେ ସେ ଆଉ ମନୁଷ୍ୟ ହୋଇ ରହେ ନାହିଁ । ବନ୍ୟ କୁକୁର କିମ୍ବା ବନ୍ୟ ବ୍ୟାଘ୍ର ଭଳି ଉନ୍ମତ୍ତ ହୋଇଉଠେ । ହିତାହିତ ଜ୍ଞାନଶୂନ୍ୟା ହୋଇଯାଏ ।

ଶ୍ରେଷ୍ଠୀ ଧନଞ୍ଜୟ ଯେତେବେଳେ କାଦମ୍ବିନୀର ନୃତ୍ୟ କୌଶଳରେ ବିମୋ-ହିତ ହୋଇ କରତାଳି ଦେଉଥିଲେ, ସେତେବେଳେ ଇନ୍ଦୁଲେଖା ବକ୍ର ଦୃଷ୍ଟିରେ ତାଙ୍କ ଆଡ଼େ ଚାହିଁଥିଲା । ନେତ୍ର କୋଣରେ ଫୁଟି ଉଠିଥିଲା ଈର୍ଷାର ପ୍ରଜ୍ୱଳିତ ବହ୍ନି । ଧନଞ୍ଜୟ ତନ୍ମୟ । ଏ ସବୁ ପ୍ରତି ତାଙ୍କର ଲକ୍ଷ୍ୟ ନାହିଁ । ଇନ୍ଦୁଲେଖା ଥରେ ଦୁଇଥର ତାଙ୍କୁ ନିବୃତ୍ତ ହେବାକୁ ଉଦ୍ୟମ କରି ବିଫଳ ହେବାରୁ ବସିବା ସ୍ଥାନରୁ ଉଠିଯାଇ କେତେବେଳେ ଯେ ବିକ୍ରମଙ୍କ ନିକଟରେ ବସିଛି ତାହା କାହାରିକୁ ଜଣା ନାହିଁ ।

ଦୁହିଁଙ୍କ ମଧ୍ୟରେ ସାମାନ୍ୟ ଆଳାପ ଆଲୋଚନା ପରେ ଶ୍ରେଷ୍ଠୀ ବିକ୍ରମ ଇନ୍ଦୁଲେଖା ସହ ସଭାସ୍ଥଳ ପରିତ୍ୟାଗ କଲେ

ବାସ୍ତବରେ ଏ ସଂସାର ଏକ ବିଚିତ୍ର ଖେଳ ଘର । ଏଠାରେ କି ଏକ ଅଲକ୍ଷ୍ୟ ଯାଦୁଦଣ୍ଡ ସ୍ପର୍ଶରେ ସମସ୍ତେ ଖେଳୁଛନ୍ତି । ଏ ଖେଳରେ କିଏ ଜିତୁଛି, କିଏ ହାରୁଛି କିଏ ବା ଦୂରେଇ ଯାଉଛି ନିଜର ଅଜ୍ଞାତରେ । ତଥାପି ପ୍ରତ୍ୟେକ ଜୀବଜନ୍ତୁ ଓ ମାନବ ଅନିର୍ଦ୍ଦିଷ୍ଟ ଭାବରେ ଗତି କରୁଛନ୍ତି ଏକ ଅନ୍ତହୀନ ମହାଯାତ୍ରା ପଥରେ । ଠିକ୍ ଯେପରି ଅକୂଳ ସାଗର ମଧ୍ୟରେ ପ୍ରବଳ ପବନରେ ନୌକାଗୁଡ଼ିକ ଭାସି ଯାଆନ୍ତି । ତହିଁର ଯାତ୍ରୀମାନଙ୍କ ମଧ୍ୟରୁ କିଏ ଆହରଣ କରେ ମଣିମୁକ୍ତା, କିଏ ନିର୍ବାସିତ ହୁଏ ନିର୍ଜନ ଦ୍ୱୀପରେ, ଆଉ କିଏ ବା ବୁଡ଼ିଯାଏ ଅତଳ ସାଗର ଗର୍ଭରେ । ତଥାପି ଏ ଖେଳର ବିରାମ ନାହିଁ । ଯୁଗେ ଯୁଗେ ଚାଲିଛି ଏବଂ ଚାଲିବ ।

ନୃତ୍ୟ ସମାପ୍ତ ହେବା ପରେ କାଦମ୍ବିନୀ ଯେତେବେଳେ ଦର୍ଶକମାନଙ୍କର ଅକୃତ୍ରିମ ପ୍ରଶଂସାର ବୋଝ ବହନ କରି ଫେରି ଆସିଲା, ସେତେବେଳେ ସେ ଦେଖିଲା ଯେ ବିକ୍ରମ ନିଜ ସ୍ଥାନରେ ନାହିଁ । ସନ୍ଦେହଗ୍ରସ୍ତ ସହ ସେ ଅଳସ ମନ୍ଥର ଗତିରେ ନିଜ ଗୃହକୁ ଫେରିଗଲା ।

ପର ଦିବସର ପ୍ରଭାତ ।

ମେଘ ବିମୁକ୍ତ ସୁନୀଳ ଆକାଶ ବକ୍ଷରେ ସୂର୍ଯ୍ୟଦେବଙ୍କର ପ୍ରଥମ କିରଣ ଧାରା ପତିତ ହେବା ମାତ୍ରେ କାଦମ୍ବିନୀ ଶଯ୍ୟା ତ୍ୟାଗ କରି ଉଦ୍ୟାନକୁ ଆସିଲା ।

ପୂର୍ବ ରାତ୍ରିର କ୍ଳାନ୍ତି ଏ ପର୍ଯ୍ୟନ୍ତ ଦୂରୀଭୂତ ହୋଇନାହିଁ । ଗତିରେ ଆଳସ୍ୟ ବିଜଡ଼ିତ ମନ୍ଥରତା । ମନରେ ଅଭିମାନ । ଆଜି ସେ ବିକ୍ରମଙ୍କ ନିକଟକୁ ଯିବ ନାହିଁ । ବିକ୍ରମ କାଲି ତାକୁ ଛାଡ଼ି ଦେଇ ଏକାକୀ ଚାଲି ଆସିଛନ୍ତି ।

ବୃକ୍ଷ ଲତାର ସବୁଜ ପତ୍ରରେ ଅରୁଣ ଦେବଙ୍କର ସୁନେଲି ସ୍ପର୍ଶ ଲାଗିଛି । ମୃଦୁ ସମୀରଣର ପ୍ରବାହ ବହି ଚାଲିଛି । ନୂତନ ବର୍ଷା ଜଳ ପାଇ କେତେଗୁଡ଼ିଏ ଅଙ୍କୁର ଭୂମି ଭେଦ କରି ମୁଣ୍ଡ ଟେକି ଉଠିଛନ୍ତି । ନବୀନ ଦୁର୍ବାଦଳର ଅଗ୍ରଭାଗରେ ଝଲ ଝଲ ଶିଶିର ବିନ୍ଦୁ ।

କାଦମ୍ବିନୀ ଅବ୍ୟକ୍ତ କଣ୍ଠରେ ସଙ୍ଗୀତଟିଏ ଗାନ କରି ଉଦ୍ୟାନ ମଧ୍ୟରେ ପ୍ରବେଶ କଲା । ସଙ୍ଗୀତର ସାରମର୍ମ ହେଉଛି—

"ହେ ପ୍ରିୟ ! ତୁମ ଆଗମନକୁ ଚାହିଁ ଚାହିଁ କେତେ ସମୟ ଅତିକ୍ରାନ୍ତ ହେଲା । ତୁମ ପାଇଁ ପ୍ରହର ଗଣି ଗଣି କେତେ ଦିବସ ଯାଇ ରାତ୍ରି ଆସିଲା । କେତେ ଯାମିନୀ ଫେରିଗଲା । କେତେ ବେଦନା ଭରା ଶୁକ୍ଲ ସନ୍ଧ୍ୟା ଓ ଅମାନିଶା ବ୍ୟର୍ଥ ହେଲା । କେତେ ଅର୍ଦ୍ଧ ବିକଶିତ କୁସୁମ କଳିକା ବୃନ୍ତଚ୍ୟୁତ ହୋଇ ଝରି ପଡ଼ିଲା । ତୁମେ ଆସିବ ବୋଲି ମୁଁ କେତେ ବାସର ଶେଯ ସଜାଇ ଚକ୍ଷୁର ଲୋତକରେ ତାହା ଭିଜାଇ ଦେଲି । ତଥାପି ତୁମର ଦେଖା ନାହିଁ ।

ବେଳେ ବେଳେ ମନରେ ଅଭିମାନ ଜାଗେ । ସନ୍ଧ୍ୟା ହେଲେ ବାହାରର ଆଲୋକ ଲିଭାଇ, ଦ୍ୱାର ରୁଦ୍ଧ କରି ଅନ୍ଧକାର ଗୃହରେ ମୁଁ ଶୋଇ ରହେ । ମନରେ ଭାବେ—ଦ୍ୱାର ନିକଟକୁ ତୁମ ଆସିବାରେ କୌଣସି ବ୍ୟାଘାତ ନ ଘଟୁ । ମାତ୍ର ଦ୍ୱାର ରୁଦ୍ଧ କରିବାର କାରଣ—ତୁମକୁ କିଛି ଦଣ୍ଡ ମିଳୁ ।

ବିଛଣାରେ ଆଖି ବୁଜି ପଡ଼ି ରହେ । କେତେବେଳେ ତନ୍ଦ୍ରା ମାଡ଼ି ଆସେ । ବିଜନ ଗୃହରେ, ନିସ୍ତବ୍ଧ ରାତ୍ରିରେ ମନର ଝରକାରେ ତୁମର ପ୍ରତିମୂର୍ତ୍ତି ଭାସି ଉଠେ । ନିଦ ଭାଙ୍ଗିଯାଏ । ଭାବେ—କେତେବେଳେ ତୁମେ ଦ୍ୱାରରେ ଆଘାତ କରିବ । ମୁଁ ନ ଜାଣିଲା ଭଳି ତୁମକୁ ଦ୍ୱାର ନିକଟରେ ଠିଆ କରାଇ ରଖିବି ତୁମେ ବ୍ୟସ୍ତ ଭାବରେ ଦ୍ୱାରରେ ଘନ ଘନ ଆଘାତ କରିବ । କିଛି ସମୟ ପରେ ମୁଁ ଧୀର ଭାବରେ ଯାଇ ଦ୍ୱାର ଖୋଲି ପୁଣି ଆସି ବିଛଣାରେ ଶୋଇଯିବି । ତୁମେ ଦ୍ୱାରରେ ଜୋରରେ ଆଘାତ କଲେ ତାହା ଖୋଲିଯିବ

ତାପରେ ତୁମେ ଗୃହର ଅଭ୍ୟନ୍ତରକୁ ଆସିବ ।

ଦେଖିବ, ଅନ୍ଧକାର ଗୃହରେ ମୁଁ ଘେଉଡ଼ି ହୋଇ ଶୋଇଛି । ତୁମେ ମୋର ଅସୁସ୍ଥତା ଅଶଙ୍କା କରି ଦେହରେ ହାତ ଦେଇ ପରୀକ୍ଷା କରିବ । ମୁଁ କପଟ ନିଦ୍ରାରେ ଶୋଇ ରହିବି । ତୁମେ ବିରକ୍ତ ହେବାର ଛଳନା କରି କହିବ—ଉଠ, ଆଉ ଏ ପିଲାଖେଳ ଭଲ ଲାଗୁନାହିଁ । ମୁଁ ତଳକୁ ମୁହଁ ପୋତି ତୁମକୁ ପ୍ରଣାମ କରିବି । ତୁମେ ମୋର ଅଭିମାନ ଭାଙ୍ଗିବା ପାଇଁ ତୁମର ବଳିଷ୍ଠ ବାହୁରେ ମୋତେ ଟେକିନେବ ନିଜ କୋଳକୁ ।"

ସଙ୍ଗୀତର ମୂର୍ଚ୍ଛନା ବାୟୁମଣ୍ଡଳରେ ମିଳାଇଯିବା ପୂର୍ବରୁ ପରିଚାରିକା ଆସି

ସମ୍ବାଦ ଦେଲା—ଜଣେ ଭଦ୍ରବ୍ୟକ୍ତି ଆପଣଙ୍କର ଦର୍ଶନାକାଂକ୍ଷୀ ।

କାଦମ୍ବିନୀ ବିନା ବାକ୍ୟ ବ୍ୟୟରେ ଉଦ୍ୟାନରୁ ଫେରି ଆସିଲା । ନଜର ସୁର ଲହରରେ ନିଜେ ଅନ୍ୟମନସ୍କା ।

ଦ୍ୱାର ଦେଶରେ ଜଣେ ପୌଢ଼ ଭଦ୍ରବ୍ୟକ୍ତି ଦଣ୍ଡାୟମାନ । ବେଶଭୂଷାରୁ ସମ୍ଭ୍ରାନ୍ତ ବୋଲି ମନେ ହୁଏ ।

କାଦମ୍ବିନୀ ଦୁଇ ହାତ ଟେକି ଭଦ୍ରବ୍ୟକ୍ତିଙ୍କୁ ପ୍ରଣାମ ନିବେଦନ କଲା ।

ଆଗନ୍ତୁକ ପ୍ରଶ୍ନ କଲେ—ମୁଁ କଣ ନୃତ୍ୟ ଉର୍ବଶୀ କାଦମ୍ବିନୀ ଦେବୀଙ୍କ ସହିତ କଥା ହେଉଛି ?

ନିଜର ଏ ପ୍ରକାର ଉଚ୍ଛ୍ୱସିତ ପ୍ରଶଂସାରେ ଲଜ୍ଜିତ ହୋଇ କାଦମ୍ବିନୀ ଉତ୍ତର ଦେଲା—ଅଧୀନାର ନାମ କାଦମ୍ବିନୀ । ମହାଶୟଙ୍କର ଯଦି ଆପତ୍ତି ନ ଥାଏ, ତେବେ ଗୃହ ମଧ୍ୟରେ ପଦାର୍ପଣ କଲେ କୃତାର୍ଥ ହେବି ।

ଆଗନ୍ତୁକ ତାଙ୍କର ପଶ୍ଚାଦ୍ଧାବନ କଲେ ।

ଉଭୟେ ଏକ ସୁସଜ୍ଜିତ କକ୍ଷରେ ଉପବେଶନ କଲା ପରେ ଆଗନ୍ତୁକ ବିନମ୍ର ଭାବରେ ନିଜର ପରିଚୟ ଦେଇ କହିଲେ—ମୁଁ ଶ୍ରେଷ୍ଠୀ ଧନଞ୍ଜୟ । କୌନଗର ବନ୍ଦରରୁ ଏଠିକୁ ଆସିଥିଲି ଏ ଉତ୍ସବରେ ଯୋଗ ଦେବା ପାଇଁ । ଏ ସବୁରେ ମୋର ଯେତେ ଆଗ୍ରହ ଥିଲା, ତତୋଽଧିକ ଆଗ୍ରହ ଥିଲା ଇନ୍ଦ୍ରଲେଖାର । ଏଠାକାର ନୃତ୍ୟ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିବା ଥିଲା—ତାର ପ୍ରଧାନ ଉଦ୍ଦେଶ୍ୟ । ତେଣୁ ମୁଁ ତାକୁ ନେଇ ଏଠାକୁ ଆସିଥିଲି । ମାତ୍ର ମୋର ଦୁର୍ଭାଗ୍ୟ—ସେ ଗତ କାଲିଠାରୁ ଶ୍ରେଷ୍ଠୀ ବିଙ୍ଗଳଙ୍କ ସହିତ ଚାଲି ଯାଇଛି । କାଲି ଆପଣଙ୍କର ଦଶ ଅବତାର ନୃତ୍ୟ ଦେଖୁଥିବା ବେଳେ ସେ କେତେବେଳେ ମୋ ପାଖରୁ ଚାଲି-ଗଲା ଜାଣେ ନାହିଁ । ପରେ ତାର ସନ୍ଧାନ ପାଇ ଶ୍ରେଷ୍ଠୀ ବିଙ୍ଗଳଙ୍କ ଗୃହକୁ ଯାଇଥିଲି । ମାତ୍ର ଶୁଣିଲି ଯେ ଇନ୍ଦ୍ରଲେଖା ଆଉ ମୋ ସହିତ ଫିରିବାକୁ ଇଚ୍ଛୁକ ନୁହେଁ ।

କାଦମ୍ବିନୀର ଅନ୍ତର ମଧ୍ୟରେ ମୁହୂର୍ତ୍ତକରେ ପ୍ରଳୟ ଅନଳ ଜଳି ଉଠିଲା । ଚକ୍ଷୁ କୋଣରେ ତାର ସ୍ଫୁଲିଙ୍ଗ । ନାସିକାରେ ଉଷ୍ଣ ପବନର ସ୍ରୋତ । ସେ ଉତ୍ତେଜିତ ଭାବରେ ନିଜ ଆସନରେ ଦୃଢ଼ ଭାବରେ ବସି ରହିଲା ।

ବାସ୍ତବରେ ଏ ସଂସାରରେ ପ୍ରେମର ଗତି ସର୍ବତ୍ର ଏକା ଧରଣର । ନାରୀ-ସମାଜ ଜୋର ଦେଇ କହିପାରେ ଯେ ତାର ପ୍ରେମାସ୍ପଦର ଭାଗ ସେ ଆଉ କାହାରିକୁ

ଦେବାକୁ ଚାହେଁ ନାହିଁ । ତାର ପ୍ରିୟତମ ଏକମାତ୍ର କାହାର ହୋଇ ରହିବ, ଏହା ହିଁ ତାର ଆନ୍ତରିକ କାମନା । ସେଠାରେ ଅନ୍ୟର ପ୍ରବେଶ ଏକାବେଳେ ନିଷେଧ । ଯଦି ତାର ବ୍ୟତିକ୍ରମ ହୁଏ, ତେବେ ନାରୀ ହୁଏ ହିଂସ୍ର । ତାର ସକଳ ଆଧୁନିକ ପ୍ରସାଧନର ଆବରଣ ଖୋଲି ଆତ୍ମ ପ୍ରକାଶ କରେ—ଆଦିମ ପ୍ରବୃତ୍ତିର ବର୍ବର ରୂପ ।

ଶ୍ରେଷ୍ଠୀ ଧନଞ୍ଜୟ ବିନୀତ ଭାବେ ଜଣାଇଲେ—ଆପଣ ଦୟା କରି ମୋତେ ଇନ୍ଦୁଲେଖାକୁ ଫେରାଇ ଦିଅନ୍ତୁ । ଅନ୍ୟ କୌଣସି ଉପାୟ ନ ପାଇ ମୁଁ ଆପଣଙ୍କର ଶରଣାପନ୍ନ ହେଲି ।

କାଦମ୍ବିନୀ ସଂକ୍ଷିପ୍ତ ଭାବରେ ଉତ୍ତର ଦେଲା—ଅପଣ ଯାଆନ୍ତୁ, ମୁଁ ଉଦ୍ୟମ କରିବ ।

ଧନଞ୍ଜୟ ଚାଲିଗଲେ । କାଦମ୍ବିନୀ ବୁଝିପାରିଲା—ଗତ ରାତ୍ରିରେ ଶ୍ରେଷ୍ଠୀ ବିକ୍ରମଙ୍କର ଅନୁପସ୍ଥିତିର କାରଣ । ସେ ଆଉ ମୁହୂର୍ତ୍ତେ ବିଳମ୍ବ ନ କରି ସଙ୍ଗେ ସଙ୍ଗେ ଶ୍ରେଷ୍ଠୀ ବିକ୍ରମଙ୍କ ଗୃହକୁ ଚାଲିଲା ।

ଶ୍ରେଷ୍ଠୀ ବିକ୍ରମଙ୍କ ବିଳାସ କକ୍ଷ । ଉଦ୍ୟାନର ଏକ ନିଭୃତ ଲତାକୁଞ୍ଜରେ କକ୍ଷଟି ନିର୍ମିତ । ତାର ଚତୁପାର୍ଶ୍ୱରେ ନାନା ବର୍ଣ୍ଣ ପୁଷ୍ପର ସମାରୋହ । କକ୍ଷଟି ସୁସଜ୍ଜିତ । ହାତୀ ଦାନ୍ତର କାରୁକାର୍ଯ୍ୟ ଖଚିତ ଦ୍ରବ୍ୟ, ତମ୍ବା, ପିତଳ ଓ ପ୍ରସ୍ତରର ଦେବୀ ଦେବୀ ମୂର୍ତ୍ତି, ରୋମର ଝାଡ଼ ଲଣ୍ଠନ ଓ ପାନପାତ୍ର, ସିଂହଳର ପ୍ରବାଳ ଖଚିତ ଦ୍ରବ୍ୟ ସମ୍ଭାର, ଚୀନର ଚିନାଂଶୁକ ଏବଂ ଦ୍ୱୀପ ଦ୍ୱୀପାନ୍ତରର ମଣି ମୁକ୍ତାପୂର୍ଣ୍ଣ ଦ୍ରବ୍ୟ ସମ୍ଭାରରେ ବିଳାସ ଗୃହଟି ତାଙ୍କର ଆଧୁନିକ ରୁଚିର ପରିଚୟ ଦିଏ ।

କାଦମ୍ବିନୀ ଦ୍ୱାର ନିକଟରେ ପ୍ରବେଶ କରିବା ମାତ୍ରେ ଦ୍ୱାର ରକ୍ଷକ ବିନମ୍ର ଭାବରେ ନିବେଦନ କଲା—ଏଠାରେ ଅନ୍ୟ କାହାରି ପ୍ରବେଶ ନିଷେଧ କରାଯାଇଛି ।

କାଦମ୍ବିନୀ କୌଣସି ଉତ୍ତର ନ ଦେଇ କ୍ରୁଦ୍ଧ ଦୃଷ୍ଟିରେ ଥରେ ଦ୍ୱାର ରକ୍ଷକକୁ ଚାହିଁ ଭିତରେ ପ୍ରବେଶ କଲା । ଦ୍ୱାରପାଳ କେବଳ ସନ୍ତ୍ରସ୍ତ ଦୃଷ୍ଟିରେ ଚାହିଁ ରହିଲା ତାର ଚଲା ପଥକୁ ।

ବିଳାସ କକ୍ଷର ଏକ ବହୁମୂଲ୍ୟ ବିଶ୍ରାମାସନରେ ଶ୍ରେଷ୍ଠୀ ବିକ୍ରମ ଆସୀନ । ନିକଟରେ ଇନ୍ଦୁଲେଖା ଦଣ୍ଡାୟମାନ ହୋଇ ଭୃଙ୍ଗାରରୁ ପାନୀୟ ଢାଳି ଦେଉଛି । ବିକ୍ରମ ଉନ୍ମତ୍ତ । ନୟନ ଅର୍ଦ୍ଧ ମୁଦିତ । ବାସ୍ତବ ଜଗତ ସମ୍ବନ୍ଧରେ ତାର କୌଣସି

ଲକ୍ଷ୍ୟ ଅଛି କେବଳ ମନେହୁଏ ନାହିଁ । ଗୋଟି ଗୋଟି ପାନପାତ୍ର ନିଃଶେଷ ହେବାରେ ଲଗିଛି ।

କାଦମ୍ବିନୀ ଦର୍ପିତା ସିଂହୀ ପରି କକ୍ଷର ଦ୍ୱାର ଦେଶରେ ପାଦଦେଇ ଡାକିଲା ବିକ୍ରମ !

ସେ ବଜ୍ର ନିର୍ଘୋଷରେ ଇନ୍ଦୁଲେଖାର ହସ୍ତରୁ ପାନପାତ୍ର ବିଚ୍ୟୁତ ହୋଇ ଭୂମିରେ ପଡ଼ିଲା । ମାତ୍ର ବିକ୍ରମ ଅବିଚଳିତ । କୌଣସି ଆଶଙ୍କା ବା ଉଦ୍‌ବେଗର ଚିହ୍ନ ପର୍ଯ୍ୟନ୍ତ ତାଙ୍କ ମୁଖମଣ୍ଡଳରେ ରେଖାପାତ କରିପାରିଲା ନାହିଁ ।

ଇନ୍ଦୁଲେଖା ତ୍ରସ୍ତ ପଦରେ ବିକ୍ରମର ପଶ୍ଚାଦ୍‌ଭାଗକୁ ଯାଇ, ବିକ୍ରମଙ୍କ କର୍ଣ୍ଣରେ କହିଲା—କାଦମ୍ବିନୀ !

ବିକ୍ରମ ନିମୀଳିତ ନୟନରେ ଉତ୍ତର ଦେଲେ—କେବଳ୍, ଅଗ୍ରେ ବିଦ୍ୟୁତ୍ ପଶ୍ଚାତ୍ କାଦମ୍ବିନୀ ।

କାଦମ୍ବିନୀ ଏଥର ନିକଟକୁ ଯାଇ ଆହ୍ୱାନ କଲା—ବିକ୍ରମ ।

ପ୍ରମତ୍ତଭାବରେ ଅଟ୍ଟହାସ ହସି ବିକ୍ରମ ପୁନରାବୃତ୍ତି କଲେ—ବିକ୍ରମ ।

କିଛି ସମୟ ନୀରବ ରହି ପୁଣି କଲେ—ହଁ, ହଁ, ବିକ୍ରମ ! ମାତ୍ର ଉର୍ବଶୀ କାହିଁ ? ଉର୍ବଶୀ······ଉର୍ବଶୀ

ବିକ୍ରମ ଗୃହଆଡ଼କୁ ଥରେ କାତରଦୃଷ୍ଟିରେ ଚାହିଁ ପଶ୍ଚାଦ୍‌ଭାଗରୁ ଇନ୍ଦୁଲେଖାକୁ କୋଳକୁ ଟାଣିନେଲେ ।

କାଦମ୍ବିନୀର ମସ୍ତକରେ ଯେପରି ଶତବୃଶ୍ଚିକର ଦଂଶନ ଅନୁଭୂତ ହେଲା ।

ମନୁଷ୍ୟ ତା ଜୀବନରେ ସେହି ଗୋଟିଏ ସ୍ଥାନରେ ଭୁଲକରେ ଜାଣିଶୁଣି ନିଆଁରେ ହାତ ଦିଏ । ମାତ୍ର ପରିଶେଷରେ ଯନ୍ତ୍ରଣା କାତର ହୃଦୟରେ ଫେରିଯାଏ ପଛକୁ ।

ସବୁ ଜାଣି ଶୁଣି ଏଠାକୁ ଆସିବା ଉଚିତ ହୋଇନାହିଁ ବୋଲି କାଦମ୍ବିନୀ ଏତେବେଳେ ଅନୁଭବ କଲା । ତାପରେ ନିମ୍ନେଷ୍ଟକୁ କିଛି ସମୟ ଦାନ୍ତରେ ଚାପିଧରି, ନିଜକୁ ସଂଯତ କରିନେଇ, ଦୃଢ଼ଭାବରେ କହିଲା—ଇନ୍ଦୁକୁ ଫେରାଇଦିଅ ।

ବିକ୍ରମ ନିରୁତ୍ତର । ମାତ୍ର ଇନ୍ଦୁଲେଖା ବକ୍ରଦୃଷ୍ଟିରେ ଥରେ କାଦମ୍ବିନୀ ଆଡ଼କୁ ଚାହିଁଲା ।

ନିଜର ପ୍ରେମିକ ଯେତେବେଳେ ଅନ୍ୟ କୌଣସି ନାରୀ ସହିତ ପ୍ରେମାଳାପରେ

ସେତେବେଳେ ହିଂସାର ଅଗ୍ନି ଆପେ ଆପେ ଜଳିଉଠେ ।

କାଦମ୍ବିନୀ ବିକ୍ରମଙ୍କୁ ହଲେଇଦେଇ ପୁଣି କହିଲା—ଇନ୍ଦୁକୁ ଛାଡ଼ିଦିଅ ।

ନିଶା ଜଡ଼ିତ କଣ୍ଠରେ ବିକ୍ରମ ଉତ୍ତରଦେଲେ—ଇନ୍ଦୁ...... । ହଁ, ହଁ, ଇନ୍ଦୁର ଦର୍ଶନରେ ସିନ୍ଧୁ ପୂର୍ଣ୍ଣତା ପ୍ରାପ୍ତ ହୁଏ ମାତ୍ର ଅମାବାସ୍ୟା ତ ବହୁ ଦୂରରେ ।

କାଦମ୍ବିନୀ ଦେଖିଲା ଏତେବେଳେ ଆଉ କୌଣସି କଥାବାର୍ତ୍ତା କରିବା ନିରର୍ଥକ ! ସେ ଏକ ଦୃଷ୍ଟିରେ ଥରେ ଇନ୍ଦୁଲେଖାକୁ ଚାହିଁ ଫେରିଆସିଲା ନିଜ ଗୃହକୁ ।

ପରଦିବସର ମଧ୍ୟାହ୍ନ । ସୂର୍ଯ୍ୟଦେବ ଆକାଶର ମଧ୍ୟ ଭାଗରେ ନିଜର କିରଣ-ରାଶି ବିକୀରଣ କଲେ । ଉତପ୍ତ ପବନ ସ୍ପର୍ଶରେ ଭାସିଆସିଲା ଝାଉଁବଣର କରୁଣ କ୍ରନ୍ଦନ । ଗୃହପ୍ରାଙ୍ଗଣରେ ବନ୍ଦିଙ୍କର ଆନନ୍ଦ ଉଲ୍ଲାସ ସ୍ତିମିତ । ସମସ୍ତେ ବିଶ୍ରାମ ରତ, କେବଳ ଗୋଟିଏ ଦୁଇଟି କାକ ଖାଦ୍ୟ ଅନ୍ୱେଷଣରେ ଏଣେ ତେଣେ ଉଡ଼ି ବୁଲୁଛନ୍ତି ।

କାଦମ୍ବିନୀର ମନ ଭଲ ନାହିଁ । ମନେହୁଏ ସତେ ଯେପରି ଯୁଗ ଯୁଗ ସଞ୍ଚିତ ଅବରୁଦ୍ଧ ହାହାକାର ପ୍ରତି ନିଃଶ୍ୱାସ ଗୁମୁରି ଉଠୁଛି । ବଡ଼ କରୁଣ ସେ ପରିବେଶ । ପ୍ରାଣ ଖୋଲି କାନ୍ଦି ପାରେନାହିଁ । କଣ ଯେପରି ଭୟ ଆସେ । ବୁକୁଭିତରେ ତାହା ଜମାଟବାନ୍ଧି ଥର ଥର କରେ ।

ଅକାରଣ ବେଦନାର ଆର୍ତ୍ତିଶ୍ୱାସରେ ସାରାପ୍ରାଣ ହାହାକାର କରି ଉଠେ । ମେଘ ମେଦୁର ବର୍ଷାକାଶ ପରି ମନର ଆପ୍ରାନ୍ତ ଯେପରି କି ଏକ ପୁଞ୍ଜିଭୂତ ବ୍ୟଥାରେ ଭରି ଯାଇଛି । ଶ୍ରାନ୍ତ ବର୍ଷଣ ବିବର୍ଣ୍ଣ ମେଘ ଛାୟାରେ ମନପ୍ରାଣ ସବୁ ଯେପରି ଗଭୀର ଭାବାକ୍ରାନ୍ତ । ବିରହ ବ୍ୟଥାରେ ବିଷାଦମୀ ବର୍ଷାର ଅସ୍ଫୁଟ କ୍ରନ୍ଦନ ପରି ଗୋଟିଏ ଅର୍ଦ୍ଧବ୍ୟକ୍ତ କରୁଣ ସ୍ୱର ଯେ କାହିଁକି କାନ ପାଖରେ ଗୁଞ୍ଜନ କରେ ସେ ତାର କୌଣସି ଅର୍ଥ ବୁଝିପାରେ ନାହିଁ ।

ବେଦନାଭରା ଭୈରବୀ ସ୍ୱର ।

ସମସ୍ତ ପୂର୍ଣ୍ଣତା ମଧ୍ୟରେ ସେ ଯେପରି ସର୍ବଶୂନ୍ୟା । କୌଣସି କାମରେ ମନ ଲାଗେ ନାହିଁ । ହୃଦୟ ରିକ୍ତତାରେ ହାହାକାର କରି ଉଠେ ।

ଦ୍ୱନ୍ଦ୍ୱ ବଢ଼ିଗଲେ । ନାରୀ ଓ ପୁରୁଷ ମଧ୍ୟରେ ପରସ୍ପରକୁ ଭୁଲ ବୁଝାବୁଝି । ତଥାପି ତା ମଧ୍ୟରେ ସମୟେ ସମୟେ ଐକ୍ୟର ସୁର ବାଜେ । ପୁଣି ପୁରୁଣା ପରିସ୍ଥିତିକୁ ଫେରିଯିବାକୁ ମନ ହୁଏ । ମାତ୍ର ସାମାଜିକ ଅନୁଶାସନ ଏବଂ ଅହେତୁକ ଜିଦ୍ ଭିତ୍ତି ପରି ମାଡ଼ି ବସେ । ତେଣୁ ସହ୍ୟ କରିବାକୁ ପଡ଼େ ପ୍ରିୟ ବିଚ୍ଛେଦ ବେଦନା ।

କାଦମ୍ବିନୀ ଅନ୍ୟମନସ୍କା ଭାବରେ ଘରୁ ବାହାରି ପଦାକୁ ଆସିଲା । ଅଦୂରରେ ବନ୍ଦର ନଗରୀର ମୁକ୍ତ ପ୍ରାନ୍ତର ଏବଂ ଉଦ୍ୟାନ । ମେଳା ବସିଛି । ବ୍ୟବସାୟୀମାନେ ନିଜର ଅସ୍ଥାୟୀ କୁଟୀରରେ ଅବତରଣ ଦେଇ ବିଶ୍ରାମ ନେଉଛନ୍ତି । ସେ ଧୀରେ ଧୀରେ ସେ ଦିଗକୁ ଅଗ୍ରସର ହେଲା । ଜନ ମାନବର ସମାଗମ କ୍ୱଚିତ ଦୃଷ୍ଟିଗୋଚର ହୁଏ ।

ବିଭିନ୍ନ ସ୍ଥାନରେ ମଣି-ମୁକ୍ତା, ସୁନା-ରୁପା, ଗାଲିଚା, କାର୍ପାସ, ରେଶମ ଓ ପଶମର ଦ୍ରବ୍ୟ, ବାସନ କୁସନ ଏବଂ ହତିଆର ବିକ୍ରୀ ହେବା ପାଇଁ ସଜ୍ଜିତ ଅଛି । ମେଳାର ଅପର ପାର୍ଶ୍ୱରେ ସେହିପରି ବଳଦ, ଗାଈ, ଘୋଡ଼ା, ଓଟ, ଗଧ, ଖଚର, ଛେଳି, ମେଣ୍ଢା, କୁକୁଡ଼ା, ମୟୂର, ପାରା ପ୍ରଭୃତିର ମଧ୍ୟ କ୍ରୟ ବିକ୍ରୟ ଚାଲିଛି । କେତେକ ଯୁବକ ଏକ ସ୍ଥାନରେ କୁକୁଡ଼ା ଗୋଡ଼ରେ ଛୁରୀ ବାନ୍ଧି କୁକ୍କୁଟ ଲଢ଼େଇରେ ବ୍ୟସ୍ତ ଅଛନ୍ତି । ସଦ୍ୟ ରକ୍ତଧାରା ଦେଖି ଯୁବକଗଣ ଆମୋଦିତ । ମାତ୍ର କାଦମ୍ବିନୀର କୌଣସିଥିରେ ମନ ଲାଗେ ନାହିଁ ।

ନାନା ଦୁଶ୍ଚିନ୍ତାରେ ମୁଣ୍ଡ ତାର ଗୋଳମାଳ ହୋଇଯାଏ । କଣ ଯେପରି ଭାବିବାକୁ ଯାଇ ଭାବି ପାରେନାହିଁ । ସମୟେ ସମୟେ ତାହା ତାକୁ ଉନ୍ମନା କରି ତୋଳେ । ଚିନ୍ତାର ସୂତ୍ର ବ୍ୟାହତ ହୁଏ । କାଦମ୍ବିନୀ ନିଜକୁ ସାନ୍ତ୍ୱନା ଦେବା ପାଇଁ ଗୋଟିଏ ଦୁଇଟି ଜିନିଷ ଦେଖି ବ୍ୟବସାୟୀକୁ ତାର ମୂଲ୍ୟ ପଚାରିଲା । ତଥାପି ମନରେ ଶାନ୍ତି ଆସିଲା ନାହିଁ । ଅନ୍ୟମନସ୍କ ଭାବରେ ସେ ଉଦ୍ୟାନ ମଧ୍ୟକୁ ଗଲା ।

ଉଦ୍ୟାନର ଏକ ନିବିଡ଼ତମ ଅଂଶରେ କଦମ୍ବ ଗଛ । ନୂତନ ବର୍ଷାର ସ୍ପର୍ଶ ପାଇ ପତ୍ରରେ ପତ୍ରରେ ଅଙ୍କୁରନ୍ତ ସବୁଜର ସୁଷମା । ଫୁଲ ଫୁଟିଲାଣି । ପ୍ରବାସରୁ ପ୍ରତ୍ୟାବର୍ତ୍ତନ କରିଥିବା ସ୍ୱାମୀକୁ ଦେଖି ବିରହିଣୀ ନାରୀ ପ୍ରେମ ଝୁରି ହେଲାପରି କଦମ୍ବ ଫୁଲରେ କେଶର ଫୁଟି ଉଠୁଛି । ମୃଦୁ ସମୀରଣରେ ଖେଳି ବୁଲୁଛି ପୁଷ୍ପର ସୌରଭ ।

ଶାନ୍ତ ପ୍ରଜ୍ଜ୍ୱଳ ଅପରାହ୍ନ । ଜଣେ ଯୁବକ କଦମ୍ବ ବୃକ୍ଷମୂଳରେ ବସି ଚିତ୍ରାଙ୍କନରେ ମନୋନିବେଶ କରିଛି । ସମ୍ପୂର୍ଣ୍ଣ ବାହ୍ୟଜ୍ଞାନ ଶୂନ୍ୟ । ବାହ୍ୟ ଜଗତ ପ୍ରତି ତାର ଯେପରି କୌଣସି ଲକ୍ଷ୍ୟ ନାହିଁ ।

ଭୂର୍ଜ ପତ୍ରରେ ଏକ ନାରୀର ପୂର୍ଣ୍ଣାବୟବ ମୂର୍ତ୍ତି । ସମ୍ମୁଖରେ ରାଧାକୃଷ୍ଣଙ୍କ ଚିତ୍ରପଟ । ନାରୀଟି ଆଣ୍ଠୁ ମାଡ଼ି ବସି ଫୁଲମାଳାଟିଏ ଚିତ୍ରପଟରେ ପିନ୍ଧାଇ ଦେବାକୁ ଯାଉଛି । ଚିତ୍ରଟି ଅପୂର୍ଣ୍ଣ ବୋଲି ମନେ ହୋଇ ଯାଉଛି । ମାତ୍ର ଚକ୍ଷୁରେ ତାରକା ଅପୂର୍ଣ୍ଣ ରହିଛି । ଚିତ୍ରକର ଆଖି ବୁଜି କଣ ଯେପରି ଭାବିବାରେ ଲାଗିଛି । ପାଖରେ ରଙ୍ଗ ଓ ତୂଳୀ ।

କାଦମ୍ବିନୀ ଧୀର ଭାବରେ ସେ ଆଡ଼କୁ ଅଗ୍ରସର ହେଲା । ଚିତ୍ରକରଙ୍କ ନିକଟରେ ପହଞ୍ଚି ସେ ଯାହା ଦେଖିଲା, ତହିଁରେ ତାର ଚକ୍ଷୁ ସ୍ଥିର ହୋଇଗଲା । ସେ ପ୍ରଥମେ ବିଶ୍ୱାସ କରିବ କି ନାହିଁ ଏହା ସ୍ଥିର କରି ପାରିଲା ନାହିଁ ।

ଭୂର୍ଜପତ୍ରରେ ତାହାରି ଏକ ନିଖୁଣ ପ୍ରତିଛବି । ହାତ, ପାଦ, ନାକ, ମୁଖ ଅବିକଳ ଅଙ୍କିତ ହୋଇଅଛି । ଏପରିକି କପୋଳର ଗୋରୋଚନା ବିନ୍ଦୁଟି ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିଛି । ମାତ୍ର ଚିତ୍ରକର ଗଭୀର ଧ୍ୟାନମଗ୍ନ । ତାର ଉପସ୍ଥିତି ଏପର୍ଯ୍ୟନ୍ତ ଅନୁଭବ କରି ପାରିନାହିଁ ।

କାଦମ୍ବିନୀ ନିଜର ଉପସ୍ଥିତି ଜଣାଇ ଦେବାପାଇଁ ପଦ ମଞ୍ଜିରରେ ଅହେତୁକ ଧ୍ୱନିଟିଏ ଜାତ କଲା । ସେ ଶବ୍ଦରେ ଚିତ୍ରକର ଆମୃଷ୍ଟ ହୋଇ ପଶ୍ଚାତ ଭାଗକୁ ଦୃଷ୍ଟି ନିକ୍ଷେପ କଲା । ତାପରେ ଥରେ ଚିତ୍ରପଟକୁ ଏବଂ ଥରେ ଆଗନ୍ତୁକାଙ୍କୁ ଚାହିଁଲା । ଅପୂର୍ଣ୍ଣ ଅବିଶ୍ୱାସ୍ୟ ! ବିଶ୍ୱାସ କରିବାକୁ ଯେପରି ଇଚ୍ଛା ହୁଏ ନାହିଁ, ଅବିଶ୍ୱାସ କରିବାକୁ ମଧ୍ୟ ସେହିପରି ଭୟ ହୁଏ

ତାର କଳ୍ପନାର ମୂର୍ତ୍ତି ଯେ କେତେବେଳେ ଆସି ସଦେହରେ ତା ନିକଟରେ ଠିଆ ହୋଇଛି ସେ ଜାଣି ପାରିନାହିଁ ।

ମୁହୂର୍ତ୍ତେ ବିତିଲା । ତାର ଏପରି ବିଚଳିତ ଅବସ୍ଥା ଦେଖି କାଦମ୍ବିନୀ ମନରେ କରୁଣା ଜାତ ହେଲା । ସେ ଧୀର ଭାବରେ ପ୍ରଶ୍ନ କଲା—ମହାଶୟଙ୍କର ନାମ କଣ ?

ଚିତ୍ରକର ଉତ୍ତର ଦେଲା—ମେ ହରି କୁମାର !

— ଆପଣଙ୍କ ନିବାସ କେଉଁଠି ?

ମୋହନ ନିରୁତ୍ତର । ଏ ପ୍ରଶ୍ନର ସେ କି ଉତ୍ତର ଦେବ ସ୍ଥିର କରିପାରିଲା ନାହିଁ ।

— ଏ ଚିତ୍ରପଟଟି କାହାର ?

—ଜାଣେ ନାହିଁ । କାଲି ନୃତ୍ୟ ଉତ୍ସବରେ ଏହାଙ୍କର ନୃତ୍ୟ ଦେଖି ମୁଗ୍ଧ ହୋଇଥିଲି । ତେଣୁ ଆଜି ଆସି ଚିତ୍ର ନିର୍ମାଣ କରୁଛି ।

—ଏହାକୁ କଣ କରିବ ?

ମୋହନ ଧୀର ଭାବରେ ଉତ୍ତର ଦେଲା—ଚିତ୍ର ଅଙ୍କନ ମୋର ବ୍ୟବସାୟ । ତାହାରି ଯୋଗୁଁ ଉଦର ପୋଷଣ କରେ ।

—ଏ ଚିତ୍ରଟି ବିକ୍ରୀ କରିବେ ?

—ନାଁ, ଏହାକୁ ମୁଁ ମୋର ନିଜ ପାଖରେ ରଖିବି ବୋଲି ଇଚ୍ଛା କରିଛି ?

କାଦମ୍ବିନୀ କୃତ୍ରିମ ଗାମ୍ଭୀର୍ଯ୍ୟ ପ୍ରକାଶ କରି ଉତ୍ତର ଦେଲା—ମାତ୍ର ଆପଣଙ୍କୁ ଏ ଚିତ୍ର ଅଙ୍କନ କରିବାକୁ ଅନୁମତି କିଏ ଦେଲା ? ଆପଣ ଜାଣନ୍ତି ଏ କାହାର ପ୍ରତିମୂର୍ତ୍ତି ?

ମୋହନ ଏଥର ସିଧାଭାବରେ ବସି ଆଗନ୍ତୁକାଙ୍କୁ ଚାହିଁଲା । ମାତ୍ର ଚାରି-ଚକ୍ଷୁର ମିଳନ ମାତ୍ରେ ପୁଣି ତଳକୁ ମୁହଁ ପୋତିଦେଲା ।

କାଦମ୍ବିନୀ ତାର ଏପରି ଅବସ୍ଥା ଦେଖି ପଛକୁ ମୁହଁ ବୁଲାଇ ଖୁବ୍ କଷ୍ଟରେ ନିଜକୁ ସଂଯତ କରିନେଲା । ତାପରେ କହିଲା—ଆପଣ ବିନାନୁମତିରେ ମୋର ଚିତ୍ରପଟ ଆଙ୍କିଥିବାରୁ ଆପଣଙ୍କୁ କଠୋରଦଣ୍ଡ ଦିଆଯିବ । ବର୍ତ୍ତମାନ ଏହାକୁ ମୁଁ ନେଇ ଯାଉଛି ।

କାଦମ୍ବିନୀ ତଳକୁ ନଇଁପଡ଼ି ଚିତ୍ରଟି ଉଠାଇବା ସମୟରେ ମୋହନର ହାତରେ ତାର ଲହୁଣୀ କୋମଳ କରର ସ୍ପର୍ଶ ଲାଗିଗଲା ।

ମୋହନର ସାରା ଶରୀରରେ ଯେପରି ମୁହୂର୍ତ୍ତକରେ କି ଏକ ତଡ଼ିତ୍ ପ୍ରବାହ ସଞ୍ଚରଣ କରିଗଲା । ସେ ଥରି ଥରି କଣ୍ଠରେ କହିଲା—ଏ ଚିତ୍ରଟି ଯେ ଅପୂର୍ଣ୍ଣ ରହିଛି ?

କାଦମ୍ବିନୀ ଭଲଭାବରେ ଥରେ ଚିତ୍ରପଟ ଉପରେ ଦୃଷ୍ଟି ବୁଲାଇ ନେଲା । ମୋହନ କହିଲା—ଚିତ୍ରଟି ସମ୍ପୂର୍ଣ୍ଣ ହୋଇଛି ସତ, ମାତ୍ର ଚକ୍ଷୁର ତାରକା ଦୁଇଟି ଏପର୍ଯ୍ୟନ୍ତ ଅଙ୍କନ କରିପାରିନାହିଁ । ବହୁ ଚେଷ୍ଟା କଲେ ମଧ୍ୟ ସେ ସମୟରେ ଦୃଷ୍ଟିକୁ ସ୍ଫୁରଣ କରିପାରୁ ନାହିଁ ।

କାଦମ୍ବିନୀ ଉତ୍ତର ଦେଲା—ଆଚ୍ଛା, ତେବେ ମୋ ସାଙ୍ଗରେ ଆସନ୍ତୁ । ତାପରେ ସେ ନିଜ ଗୃହ ଅଭିମୁଖରେ ଅଗ୍ରସର ହେଲା ଏବଂ ମୋହନ ତାକୁ ଅନୁସରଣ କଲା ।

ରାତ୍ରି ଓ ଦିବସ ।

ସାଧାରଣ ଦୃଷ୍ଟିକୋଣରୁ ଏହା କେବଳ ଆଲୋକ, ଅନ୍ଧାର ବା ବିଶ୍ରାମ ଓ ପରିଶ୍ରମ ମଧ୍ୟରେ ଆବଦ୍ଧ ଥାଏ । ମାତ୍ର ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ଦେଖାଯାଏଯେ, ଏହାର ଆଉ ଗୋଟିଏ ଅନ୍ତର୍ନିହିତ ଶକ୍ତି ଅଛି । ପ୍ରାତଃକାଳରେ ମାନବ ଯେତେବେଳେ ବିଶାଳ ଜଗତର ନରନାରୀଙ୍କ ମଧ୍ୟରେ ମିଳିତହୁଏ, ସେତେବେଳେ ତାର ଭାବନା ସାମୁହିକ ହୋଇଯାଏ । ମାତ୍ର ରାତରେ ତାରଭାବନା ହୁଏ ଏକାକୀ । ଶଯ୍ୟାରେ ଶୋଇରହି ସେ ଉଡ଼ିବୁଲେ କଳ୍ପନା ରାଜ୍ୟରେ ।

କାଦମ୍ବିନୀ ଦ୍ୱିତୀୟ ଦିବସର ନୃତ୍ୟ ଉତ୍ସବରେ ଯୋଗଦେଲନାହିଁ । ମୋହନକୁ ସେ ନିଜ ଉଦ୍ୟାନ ଗୃହରେ ରହିବାର ବ୍ୟବସ୍ଥା କରିଦେଇ ଚାଲିଗଲା ନିଜ ଶୟନ କକ୍ଷକୁ । କ୍ରମେ ସନ୍ଧ୍ୟା ଉପସ୍ଥିତ ହେଲା ।

ପରିଚାରିକା ରତ୍ନ ପ୍ରଦୀପ ଜାଳିଦେଇଗଲା । ଉଜ୍ଜଳ ଆଲୋକରେ ଗୃହଟି ଉଦ୍ଭାସିତ ହୋଇଉଠିଲା । କାଦମ୍ବିନୀ ଶୋଇ ପାରିଲାନାହିଁ । ରାଜ୍ୟଯାକର ସମସ୍ତ ଦୁଶ୍ଚିନ୍ତାଯେପରି ଗୋଟିକ ପଛକୁ ଗୋଟିଏ ଆସି ତା ଉପରେ ଅଜାଡ଼ି ହୋଇ ପଡ଼ିଲା ।

ଏକ ସମୟରେ ପରିଚାରିକା ଆସି ପ୍ରଶ୍ନକଲା—ଦେଇ ! ଆଜି ଉତ୍ସବକୁ ଯିବ ନାହିଁ କି ? କାଦମ୍ବିନୀ ସଂକ୍ଷେପରେ ଉତ୍ତର ଦେଲା—ନାଁ । ।

ପରିଚାରିକା ଚାଲିଗଲା । ସେ କଡ଼ ଲେଉଟାଇ ଶୋଇବାକୁ ଚେଷ୍ଟାକଲା ।

ନିଦ ହୁଏନାହିଁ । ବେଳେ ବେଳେ ମନେ ପଡ଼ିଯାଏ ବିକ୍ରମ ଓଇନ୍ଦୁଲେଖାଙ୍କର ପ୍ରଣୟଲୀଳା । ସେ ହସ, ସେ ଅନୁରାଗ ସେ ପ୍ରମତ୍ତତା ତାକୁ ପାଗଳ କରି ତୋଳେ । ଭୁଲିବାକୁ ଯେତେ ଚେଷ୍ଟା କଲେମଧ୍ୟ ଭୁଲି ହୁଏ ନାହିଁ । ମୁଣ୍ଡଭିତରଟା ଯୋପରି ଗୋଳମାଳ ହୋଇଯାଏ । ସେ ଦୁଇ ହାତରେ ମୁଣ୍ଡକୁ ଚାପି ଧରେ ।

ମାତ୍ର ଶାନ୍ତି କାହିଁ ?

ବିସ୍ମୃତିର ସୀମାନ୍ତ ପ୍ରଦେଶରୁ ବେଳେ ବେଳେ ସେ ହସ କୌତୁକ ବର୍ତ୍ତିମାନକୁ ଚାଲିଆସେ । ମୁହୂର୍ତ୍ତିକ ପାଇଁ ନାରୀକୁ ପାଗଳ କରେ, ଭୁଲାଇଦିଏ ସଭ୍ୟ ଜଗତର

ପରିବେଷ୍ଟନ—ଲଜ୍ଜାଜଡ଼ିତ ଗ୍ଭୀରୁତା । ପ୍ରତ୍ୟାଖ୍ୟାନ କରେ ବେଦନା । ପ୍ରେମର ଉର୍ଦ୍ଧ୍ୱରେ ଜାଗିଉଠେ—ପ୍ରତିଶୋଧର ବାସନା । ଶିରାରେ ଶିରାରେ ଅନଳଶିଖା ନୃତ୍ୟ କରଇ ଏ । ମୁହୂର୍ତ୍ତିକର ବିକ୍ଷୋଭରେ ବର୍ତ୍ତମାନ ଓ ଭବିଷ୍ୟତ ଲୁପ୍ତ ହୋଇଯାଏ । ପାପ ପୁଣ୍ୟର ଭାବନା ସମସ୍ତ କିଛୁ ଅତଳ ତଳେ ସମାଧି ଲଭକରେ । ବିଶ୍ୱଜଗତ ଅଚ୍ଛନ୍ନ କରେ— ପ୍ରତିଶୋଧର ପ୍ରବୃତ୍ତି । ଯେଉଁ ପ୍ରେମ ଗୃହ ତ୍ୟାଗ କରାଏ, ତାହାର ପ୍ରତିହିଂସା ଏ କ୍ଷେତ୍ରରେ ପ୍ରବଳ ।

ରାତ୍ରୀ ଯାଇ ପ୍ରଭାତ ହେଲା । ସାରଥି ଅରୁଣ ସପ୍ତାଶ୍ୱ ଚାଳିତ ରଥ ସଜକରି ବିଶ୍ୱ ପ୍ରଦକ୍ଷିଣ ପାଇଁ ପ୍ରସ୍ତୁତ ହେଲେ । କାକମାନେ ନୀଡ଼ ପରିତ୍ୟାଗ କରି ଖାଦ୍ୟାନ୍ୱେଷଣରେ ଉଡ଼ି ବୁଲିଲେ । କାଦମ୍ବିନୀ ଶଯ୍ୟାତ୍ୟାଗ କରି ପଦାକୁ ଆସିଲା ।

ପୂର୍ବ ଆକାଶରେ ନୂତନ ଦିବସର ସୂଚନା । ପୂର୍ବ ଦିଗନ୍ତ ଅବିରବର୍ଣ୍ଣ । ଏ ସୂଚନା ଶୁଭ କି ଅଶୁଭ କାଦମ୍ବିନୀ ଜାଣେ ନାହିଁ । ସେ ମନେମନେ ଭଗବାନ ଭାସ୍କରଙ୍କୁ ପ୍ରଣତି କଣାଇ ଉଦ୍ୟାନ ମଧ୍ୟକୁ ଚାଲିଲା ।

ଅନ୍ଧକାର ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ବିଦୂରିତ ହୋଇନାହିଁ । ମାତ୍ର ନାରିକେଳ ବୃକ୍ଷର ଝିରି ଝିରି ପତ୍ରର ଫାଙ୍କେ ଫାଙ୍କେ ଚନ୍ଦ୍ରମାର ଝିଲ୍ ମିଲ୍ ଆଲୋକ ଲୋପପାଇ ଗଲାଣି । ନଦୀକୂଳରେ ଆନନ୍ଦର ଜୁଆର ।

କ୍ରମେ ସୂର୍ଯ୍ୟ ଉଦିତ ହେଲେ । ପ୍ରଭାତର କନକ କିରଣ ଉତ୍ତାପ ବିଞ୍ଚି ଦେଲା—ମାଟିରେ, ପଥ ପ୍ରାନ୍ତରରେ, ଲତା-ପତ୍ରରେ ।

ପ୍ରଭାତ ଆଗମନରେ ଆଗପରି ପକ୍ଷୀ କୂଜନ କରେ । କାକ ଡ଼ାକିଯାଏ । ପୁଷ୍କରିଣୀର ସ୍ଥିର ଜଳରେ ପଦ୍ମ କୋରକ ଓ ଭ୍ରମରର ମନ ଖୋଜା ଖୋଜି ଚାଲେ ।

ମୋହନ ଶଯ୍ୟା ତ୍ୟାଗକରି ଗଭୀର ଚିନ୍ତାରେ ନିମଗ୍ନ । ଗତ ରାତ୍ରିରେ ସେ ଶୋଇ ପାରିନାହିଁ । ବାରମ୍ବାର ଚିନ୍ତାକଲେ ମଧ୍ୟ ସେ ଚକ୍ଷୁର ଦୃଷ୍ଟି ସ୍ମରଣରେ ଆସେ ନାହିଁ ।

ହଠାତ୍ ଦ୍ୱାର କଞ୍ଚିତ ଉନ୍ମୁକ୍ତ ହୋଇଗଲା । ମୋହନର ଚିନ୍ତା ବ୍ୟାହତ ହେଲା । ଦ୍ୱାର ସମ୍ମୁଖରେ ଏକ ଅବିଶ୍ୱାସ୍ୟ ସ୍ୱପ୍ନରଦ୍ୟୁତି । ଯୌବନର ଦୁଃସହ ବିଦ୍ୟୁତ୍ ପ୍ରକାଶ ଯେପରି ସ୍ଥିର ଓ ନିଶ୍ଚଳ ।

ସଦ୍ୟସ୍ନାତା—ରକ୍ତାମ୍ବରା—ବିମ୍ବୋଷ୍ଠୀ ନାରୀମୂର୍ତ୍ତି । ବକ୍ଷ ଓ ସର୍ବାଙ୍ଗରେ ଅଫୁରନ୍ତ ସ୍ୱାସ୍ଥ୍ୟ । ବିଶ୍ୱକର୍ମାଙ୍କର ନିଖୁଣ ଶିଳ୍ପ । ସେ ଶିଳ୍ପ ମଧ୍ୟରେ ଏକ ଔଦ୍ଧତ୍ୟ

ଯେପରି ବିଶ୍ୱ ସଂସାରକୁ ଚକିତ କରି ଦେଇଛି । କିନ୍ତୁ ସେହି ଚକ୍ଷୁ—ମାତ୍ର ଦୃଷ୍ଟିଭଙ୍ଗୀ ଭିନ୍ନ

ମୋହନ ବସିବାସ୍ଥାନରୁ ଉଠି ପଡ଼ି କହିଲା—ଅସମ୍ଭବ ।

କାଦମ୍ବିନୀ ଗୃହ ମଧ୍ୟରେ ପ୍ରବେଶ କରୁ କରୁ ପ୍ରଶ୍ନ କଲା—ଚିତ୍ର ପ୍ରସ୍ତୁତ ହୋଇଗଲା ?

ମୋହନ ନିରାଶ ଭାବରେ ଉତ୍ତର ଦେଲା—ନାଁ ।

—ବେଶ୍, ତାହେଲେ ମୁଁ ଆଉଥରେ ସେ ଅଭିନୟ କରୁଛି, ଆପଣ ଦେଖନ୍ତୁ ।

ମୋହନ ଅସୀମ ଆନନ୍ଦରେ ସମ୍ମତ ହେଲା ।

କାଦମ୍ବିନୀ ଆରମ୍ଭ କଲା ନୃତ୍ୟ ।

କାମସୂତ୍ରର ପ୍ରାଚୀନ ନୃତ୍ୟ ଛନ୍ଦରେ ସେ ନୃତ୍ୟ ସୁନ୍ଦରୀ ନିଜ ଅଙ୍ଗର ଗୋଟିଏ ଗୋଟିଏ ସଞ୍ଚାଳନରେ, ଗୋଟିଏ ଗୋଟିଏ ମୁଦ୍ରାରେ ନାରୀର ଲୋଭ, ନାରୀର କାମପ୍ରିୟତା, ସ୍ୱାର୍ଥସିଦ୍ଧିରେ ନାରୀର ନିଷ୍ଠୁରତା, ପ୍ରେମିକର ଅମ୍ଳୋତ୍ସର୍ଗରେ ନାରୀର ଗର୍ବାନୁଭୂତି ପ୍ରଦର୍ଶନ କରିବାରେ ଲାଗିଲା ।

ମୋହନ ମୁଗ୍ଧ ବିସ୍ମୟରେ ଗୃହିଁ ରହିଛି ଲୀଳାମୟୀ ଆଡ଼େ । କେତେ ସମୟ ପରେ ନୃତ୍ୟର ବେଗ କମି ଆସିବାରୁ କାଦମ୍ବିନୀ ପୁଷ୍ପମାଳା ଧରି ରାଧାକୃଷ୍ଣଙ୍କ ମୂର୍ତ୍ତିରେ ପିନ୍ଧାଇ ଦେବାକୁ ଗଲା । ପୂର୍ବପରି ଦୁଇ ଆଣ୍ଠୁ ତଳେ ଲଗାଇ ସେ ଯେତେବେଳେ ହସ୍ତ ଦୁଇଟିକୁ ଚିତ୍ରପଟ ନିକଟକୁ ଲମ୍ବାଇ ଦେଲା, ମୋହନ କହିଲା—ନାଁ ହେଲା ନାହିଁ । ସେତେବେଳକୁ ସେ କି ଏକ ଭାବାବେଗରେ ମଗ୍ନ ।

କାଦମ୍ବିନୀ କୌତୁକ ଭାବରେ ତା ଆଡ଼କୁ ବଙ୍କ ଦୃଷ୍ଟିରେ ଅନାଇ ଦେଇ ହାସ୍ୟ ସମ୍ବରଣ କରିନେଲା ।

ମୋହନ ତା ନିକଟକୁ ଯାଇ କହିଲା—ଆଉ ଟିକିଏ ମୁଣ୍ଡ ନୁଆଁଇ ଦିଅନ୍ତୁ ।

କାଦମ୍ବିନୀ ଅଜ୍ଞାବହ ପରି ତାର ଆଦେଶ ପାଳନ କଲା । ମୋହନ ପୁଣି କହିଲା—ଏହି ଦେଖନ୍ତୁ, ହାତଟା ଉପରକୁ ହୋଇଗଲା । ଠିକ୍ ଏହିପରି ଭାବରେ ରଖନ୍ତୁ ଏବଂ ରାଧାକୃଷ୍ଣଙ୍କ ଚରଣରେ ଦୃଷ୍ଟି ନିବେଶ କରନ୍ତୁ ।

କାଦମ୍ବିନୀର ହାତ ଦୁଇଟିକୁ ଧରି ସେ ଚିତ୍ରପଟ ନିକଟକୁ ଘୁଞ୍ଚାଇ ଦେଲା ।

ସେ ସ୍ପର୍ଶରେ କାଦମ୍ବିନୀର ଅନ୍ତର ଭିତରେ କି ଏକ ଦୁର୍ନିବାର କ୍ଷୁଧା

କାଗଜ ହୋଇ ଉଠିଲି । ସାରା ଦେହରେ ଖେଳିଗଲା ବିଦ୍ୟୁତର ସ୍ପର୍ଶ । ମାତ୍ର ସେ ଦୃଢ଼ ଭାବରେ ନିଜକୁ ସଂଯତ କରିନେଲା ।

.........ଆଜି ପର୍ଯ୍ୟନ୍ତ ସେ କେବଳ ଘୂରି ବୁଲିଛି ମରୀଚିକା ପଛରେ । ବାରଂବାର ମଜାଇଛି ନିଜକୁ । ଶରୀରକୁ ପଣ୍ୟଭଳି ଅଜାଡ଼ି ଦେଇଛି ଏକ ଧନୀ ବଣିକର ଲାଲସା ପୂର୍ତ୍ତି ପାଇଁ । ମାତ୍ର ପ୍ରେମ ପାଇ ନାହିଁ ତାର ପରିପୂର୍ଣ୍ଣତା—ଦେହ ଓ ମନର ପାତ୍ର ଭରି ଉଠି ନାହିଁ କି ପ୍ରେମର ଦେବତା ପୂର୍ଣ୍ଣାହୁତି ଗ୍ରହଣ କରି ନାହାନ୍ତି ।

କାଦମ୍ବିନୀ ନୀରବରେ ନିଜ ସ୍ଥାନରେ ବସି ରହିଲା ।

ମୋହନ ଈଷତ୍ ବିରକ୍ତ ଭାବରେ କହିଲା—ଇସ୍, ମୋ ଆଡ଼କୁ ଏପରି ଅନାଇଛ କାହିଁକି ?

କାଦମ୍ବିନୀ ନିଜର ଭାବନା ରାଜ୍ୟରୁ ଫେରି ଆସି ଉତ୍ତର ଦେଲା—କଣ କରିବି କହନ୍ତୁ ?

—ଆପଣ ସେହି ପୂର୍ବ ପରି ନମ୍ର ଭାବରେ ରାଧାମାଧବଙ୍କ ଚରଣାରବିନ୍ଦରେ ଦୃଷ୍ଟି ନିକ୍ଷେପ କରନ୍ତୁ । ନାଁ, ଏସବୁ ମୋ ଦ୍ୱାରା ହେବ ନାହିଁ କହି କାଦମ୍ବିନୀ ଉଠି ପଡ଼ିଲା ।

ମୋହନ ବିକଳ ଭାବରେ କହିଲା—ଆପଣ ଏ କଣ କଲେ ? ଦେଖନ୍ତୁ ଦୟାକରି ଆଉଥରେ ପୂର୍ବପରି ନ ବସିଲେ ମୁଁ ଚିତ୍ର ଆଙ୍କିବି କିପରି ?

କାଦମ୍ବିନୀ ଅବିଚଳିତ । କେତେ ସମୟ ପରେ ଦୀର୍ଘ ନିଶ୍ୱାସ ତ୍ୟାଗ କରି କହିଲା—ଆଚ୍ଛା, ମୋହନ କୁମାର ! ଆପଣଙ୍କୁ ଗୋଟିଏ ପ୍ରଶ୍ନ ପଚାରିବି, ତାର ଉତ୍ତର ଦେଇ ପାରିବେ ।

ମୋହନ ଉତ୍ତର ଦେଲା—ପଚାରନ୍ତୁ ।

କାଦମ୍ବିନୀର ଓଷ୍ଠ ପୃଷ୍ଠରେ ଏକ କ୍ଷୀଣ ହାସ୍ୟରେଖା ଦେଖା ଦେଇ ଉଭେଇ ଗଲା । ସେ କୌତୁକ ବ୍ୟଞ୍ଜକ ଚକ୍ଷୁରେ ତା ଆଡ଼କୁ ଅନାଇ ପଚାରିଲା—ଚକ୍ଷୁରେ କଜ୍ଜଳ ଲଗାଇଲେ କିପରି ଦିଶେ ?

ମୋହନ ତଳକୁ ଚାହିଁ ଉତ୍ତର ଦେଲା—ଅନନ୍ତ ଆକାଶ କୋଳରେ ଘନ-ମେଘମାଳାର ଯେଉଁ ସୌନ୍ଦର୍ଯ୍ୟ, ଅଯୁତନେତ୍ର ମଣ୍ଡଳରେ କଳା କଜ୍ଜଳର ଠିକ୍ ସେହି ଶୋଭା ।

ଉତ୍ତରଟି ଦେଇ ସାର ମୋହନ କାଦମ୍ବିନୀକୁ ଅନାଇଲା । ଚକ୍ଷୁରେ ଚକ୍ଷୁ ମିଳିତ ହେଲା । ଦୁଇଜଣଙ୍କ ଅନ୍ତରର ଭାଷା ଦୁହେଁଯାକ ବୁଝିବାକୁ ଚେଷ୍ଟା କଲେ ।

କାଦମ୍ବିନୀ ମୃଦୁ ମୃଦୁ ହସି ପୁଣି ପଚାରିଲା— ଆଚ୍ଛା କହିଲେ, ଚକ୍ଷୁର ଚଞ୍ଚଳତା ଭଲ ଲାଗେ, ନା ନୀରବ ଗୁହାଣୀ ଭଲ ଲାଗେ ?

ମୋହନ ଦୀର୍ଘ ନିଶ୍ୱାସ ଛାଡ଼ି ଉତ୍ତର ଦେଲା—କହି ପାରିବି ନାହିଁ ।

କାଦମ୍ବିନୀ ମୋହନର ହାତଟିକୁ ନିଜ ହାତରେ ଉଠାଇ ନେଇ ଉତ୍ତର ଦେଲା—ବାଃ, ଆପଣ ଶିଳ୍ପୀ ? କେତେ କଥା ଜାଣନ୍ତି, ଅଥଚ ଏହି ସାମାନ୍ୟ କଥାଟି ଜାଣନ୍ତି ନାହିଁ ?

ମୋହନ ନିଷ୍ପନ୍ଦ ଭାବରେ ଚିତ୍ର ପ୍ରତିମା ପରି ଠିଆ ହୋଇଛି ।

ସଂପୂର୍ଣ୍ଣ ରୂପେ ବାକ୍ ଶକ୍ତି ରହିତ ।

କାଦମ୍ବିନୀ କହିଲା—'ଆଜି ଏଠିକରେ ଥାଉ । ଆପଣ ଥରେ କେନ୍ଦୁବିଲ୍ୱ ଚାଲନ୍ତୁ । ସେଠାରେ ଜୟଦେବଙ୍କ ଲୀଳାଭୂମିରେ ରାଧାମାଧବଙ୍କ ମୂର୍ତ୍ତିରେ ପୁଷ୍ପମାଲ୍ୟ ଦେବା ବେଳେ ଆପଣ ବରଂ ଭଲ ଭାବରେ ଚିତ୍ର ଅଙ୍କନ କରିବେ ।'

ମୋହନ ଉତ୍ତର ଦେଲା—'ବେଶ୍ ତ, ସୁନ୍ଦର ପ୍ରସ୍ତାବ । ତେବେ କେଉଁ ଦିନ ଯିବା ସ୍ଥିର କରନ୍ତୁ ।'

କାଦମ୍ବିନୀ ମୁହୂର୍ତ୍ତିକ ପାଇଁ ଅନ୍ୟ ମନସ୍କା ହୋଇ ପଡ଼ିଲା । ତାପରେ ନିଜକୁ ସଯତ କରି ପଚାରିଲା— ଆପଣଙ୍କର କଣ କିଛି ଅସୁବିଧା ହେଉଛି ।

—କାହିଁ, ନାହିଁ ତ ?

— ତେବେ ଆପଣ ପଳାଇ ଯିବା ପାଇଁ ଏପରି ବ୍ୟସ୍ତ ହେଉଛନ୍ତି କାହିଁକି ?

ମୋହନ ବିବ୍ରତ ଭାବରେ ଉତ୍ତର ଦେଲା—ଆପଣ ଏ କଣ କହୁଛନ୍ତି । ଆପଣଙ୍କ ଆତିଥ୍ୟ ଗ୍ରହଣ କରିବା ତ ମୋ ପକ୍ଷେ ପରମ ସୌଭାଗ୍ୟର ବିଷୟ । ମୋର ଆଉ କେଉଁଠି କି ଆଶ୍ରୟ ଅଛି ଯେ ମୁଁ ପଳାଇ ଯିବା ପାଇଁ ବ୍ୟସ୍ତ ହେବି ? ମାତ୍ର ମୋର ଇଚ୍ଛା—କାମଟା ଖୁବ୍ ଶୀଘ୍ର ସରିଗଲେ ଭଲ ହେବ ।

କାଦମ୍ବିନୀ ଉତ୍ତର ଦେଲା—ତେବେ ଦିନେ ଦୁଇଦିନ ଅପେକ୍ଷା କରନ୍ତୁ । ମୁଁ ଯାତ୍ରାର ଆୟୋଜନ କରି ନିଏ ।

ମୋହନ ସମ୍ମତ ହୋଇ ମୁଗ୍ଧ ଦୃଷ୍ଟିରେ ତା ଆଡ଼କୁ ଚାହିଁ ରହିଲା ।

ନାରୀ ଏବଂ ପୁରୁଷ ମଧ୍ୟରେ ଚାହିଁବା ଓ ପାଇବାର ପ୍ରଶ୍ନ ?

ଯୁଗ ଯୁଗ ଧରି ଚାଲି ଆସୁଥିବା ଏକ ଶାଶ୍ୱତ ନିୟମ ।

ଜଣକର ଚକ୍ଷୁରେ ପ୍ରତୀକ୍ଷା ଏବଂ ପ୍ରତ୍ୟାଶା ପୂରଣର ଆନନ୍ଦ ଅନ୍ୟର ଚିତ୍ତକୁ ଅନିର୍ବଚନୀୟ ପୁଲକର ଆସ୍ୱାଦରେ ଉନ୍ମନା କରି ତୋଳେ ।

କାଦମ୍ବିନୀ ହାତରେ ଧରିଥିବା ଫୁଲମାଳାଟି ମୋହନର ଗଳାରେ ପିନ୍ଧାଇ ଦେଇ କହିଲା—ଆଚ୍ଛା, ମୋହନ କୁମାର ଦେଖିଲେ ଏଥର ଆପଣ କିପରି ଦିଶୁଛନ୍ତି ?

ମୋହନ ଅପ୍ରତିଭ ଭାବରେ କହିଲା—ନାଁ, ନାଁ ଆପଣ ଏ କଣ କଲେ ? ଫୁଲ ପରି ଏକ ସୁକୁମାର ପଦାର୍ଥକୁ ମୋ ଭଳି ଜଣେ ହତଭାଗ୍ୟକୁ ଦାନ କରି ଆପଣ ତାର ଅବମାନନା କରୁଛନ୍ତି କାହିଁକି ?

ଏହାପରେ ସେ ଅନ୍ୟ କୌଣସି ଉତ୍ତରର ଅପେକ୍ଷା ନ ରଖି ସଙ୍ଗେ ସଙ୍ଗେ ନିଜ ଗଳାରୁ ହାରଟି ବାହାର କରି କାଦମ୍ବିନୀକୁ ପିନ୍ଧାଇ ଦେଲା । କହିଲା—ଦେଖିଲେ, ଏଥର ଆପଣଙ୍କ ମୁଖପଦ୍ମ ସହିତ ମିଳିତ ହୋଇ ଫୁଲଗୁଡ଼ିକ କିପରି ସୁନ୍ଦର ଦିଶୁଛନ୍ତି ?

କାଦମ୍ବିନୀ ମୃଦୁ ମୃଦୁ ହସି ମୋହନର ଚରଣ ତଳେ ପ୍ରଣାମ କଲା ।

ଚିରକାଳର ଚିରନ୍ତନ ପ୍ରବହମାନ ପ୍ରେମର ଇତିହାସରେ ଆଉ ଗୋଟିଏ ନୂତନ ଅଧ୍ୟାୟ ସଂଯୋଜିତ ହେଲା !

ମହାସାଗରର ଉତ୍ତୁଙ୍ଗ ବକ୍ଷୁବ୍ଧ ତରଙ୍ଗରେ ଆଉ ଗୋଟିଏ ଶିଶିର ବିନ୍ଦୁ !! ମୋହନ ତାର ଦୁଇ ବାହୁକୁ ଧରି ତଳୁ ଉଠାଇ ନେଇ ନେଇ କହିଲା—ଆପଣ ଏ କଣ କଲେ ?

କାଦମ୍ବିନୀ ନିଜର ବାମ ହସ୍ତଟି ମୋହନର କାନ୍ଧରେ ରଖି, ପରମ ନିଶ୍ଚିନ୍ତ-ରେ ନିଜର ମସ୍ତକଟିକୁ ତାର ପ୍ରଶସ୍ତ ବକ୍ଷରେ ଥୋଇଲା ।

ନୟନ ଅର୍ଦ୍ଧ ମୁଦ୍ରିତ ।

ଯୁଗ ଯୁଗ ଧରି ଆକାଙ୍କ୍ଷିତ ପୁଲକର ଆସ୍ୱାଦରେ ସେ ଯେପରି ଆତ୍ମହରା ।

ଠିକ୍ ଏତିକବେଳେ ବଜ୍ର ନିର୍ଘୋଷ କଣ୍ଠରେ ଶବ୍ଦ ଶୁଭିଲା—ସୁନ୍ଦର ଅଭିନୟ ।

ସମ୍ମୁଖରେ ଶ୍ରେଷ୍ଠୀ ବନମ ।

ମୋହନ ସେ ଶବ୍ଦରେ ଚମକି ପଡ଼ି ପଛକୁ ଅପସରି ଗଲା । ମାତ୍ର କାଦମ୍ବିନୀ

ଅବଚଳିତା । ସେ ଦୃଢ଼ କଣ୍ଠରେ ଉତ୍ତର ଦେଲା— ତୁମେ ଏଠାରେ କାହିଁକି ?

ବିକ୍ରମ ଚାଞ୍ଚଲ୍ୟର ହସ ହସି ଉତ୍ତର ଦେଲେ— କାଦମ୍ବିନୀ ଦେବୀଙ୍କୁ ବୋଧହୁଏ ଆସିବାର ଉଦ୍ଦେଶ୍ୟ ବୁଝାଇବାକୁ ପଡ଼ିବ ନାହିଁ ।

କାଦମ୍ବିନୀ ଚିତ୍କାର କରି ଉଠିଲା—ନାଁ, ନାଁ ମୁଁ କିଛି ଶୁଣିବାକୁ ଚାହେଁ ନାହିଁ । ତୁମେ ଫେରି ଯାଅ ବିକ୍ରମ !

—ମୁଁ ଫେରି ଯିବାକୁ ଆସି ନାହିଁ । ଆସିଛି ତୁମକୁ ନେଇ ଯିବା ପାଇଁ ।

କାଦମ୍ବିନୀ ଦୃଢ଼ ଭାବରେ ଉତ୍ତର ଦେଲା—ନାଁ, ତା କଦାପି ସମ୍ଭବ ନୁହେଁ । ମୁଁ ଆଉ ମରିଚୀକା ପଛରେ ଦଉଡ଼ି ପାରିବି ନାହିଁ । ତୁମେ ଇନ୍ଦୁଲେଖାକୁ ଗ୍ରହଣ କରି ତୁମ ପ୍ରେମର ପ୍ରକୃତ ପରିଚୟ ଦେଇଛ ? ଏତେଦିନେ ମୋର ଚେତନା ଫେରିଛି । ମୁଁ ଆଉ ବିଳାସର ସାମଗ୍ରୀ ହେବାକୁ ଚାହେଁ ନାହିଁ । ମୁଁ ଚାହେଁ— ଗୋଟିଏ ସ୍ଥାୟୀ ନୀଡ଼ ଏବଂ ଶାନ୍ତିରେ ନିଶ୍ୱାସ ମାରିବା ପାଇଁ ଟିକିଏ ନିରାପଦ ଆଶ୍ରୟ । ତୁମେ ଫେରିଯାଅ । ଆଜିଠାରୁ ତୁମ ପାଇଁ ମୋର ଦ୍ୱାର ଚିରଦିନ ସକାଶେ ବନ୍ଦ ରହିଲା ।

ବିକ୍ରମ ଦୃପ୍ତ କଣ୍ଠରେ ଉତ୍ତର ଦେଲେ—ଚୁପ୍ କର । ମୁଁ ପୁରୁଷ । ନିଜର ପୌରୁଷ ଦ୍ୱାରା ମୁଁ ଇନ୍ଦୁଲେଖାକୁ ଲାଭ କରିଛି । ଆବଶ୍ୟକ ହେଲେ ଆହୁରି ମଧ୍ୟ ଗ୍ରହଣ କରିବି । ନାରୀ ଚିରଦିନ ପୁରୁଷର ପଦସେବିକା ହୋଇ ଆସିଛି ଏବଂ ଆଜି ମଧ୍ୟ ରହିବ । ଏଥିରେ କାହାରି ଆପତ୍ତି ମୁଁ ଶୁଣିବି ନାହିଁ ।

କାଦମ୍ବିନୀ ବିଦ୍ରୂପର ହସ ହସି ଉତ୍ତର ଦେଲା— ଧନ୍ୟ ତୁମର ପୌରୁଷକୁ । ଗୋଟାକ ପଛକୁ ଗୋଟାଏ ନାରୀକୁ ନେଇ ନିଜର କାମ ବାସନା ପୂର୍ତ୍ତି କରିବା କଣ୍ ପୌରୁଷ ନୁହେଁ ତ ?

ତାପରେ ମୁହୂର୍ତ୍ତକ ମଧ୍ୟରେ ତାହାର ମୁଖର ଭାବ ପରିବର୍ତ୍ତିତ ହୋଇଗଲା । ଚକ୍ଷୁ କୋଣରୁ ଯେପରି ଅଗ୍ନି ସ୍ଫୁଲିଙ୍ଗ ବହିର୍ଗତ ହେବାରେ ଲାଗିଲା । ସେ ଉନ୍ମାଦିନୀ ତୁଲ୍ୟ ଚିତ୍କାର କରି କହିଲା— ବିକ୍ରମ ! ଭୁଲ ଭୁଲ । ନାରୀ କେବଳ ମଦନ ମଦାଳସା ସୁରତୋତ୍ସବର ଅଭିସାରିକା ନୁହେଁ । ସେ ତପନ, ଶଶୀ, ବୈଶ୍ୱାନର ମୟୀ । ତା ଦେହରେ ଅଛି—ସୂର୍ଯ୍ୟର ତେଜ, ଚନ୍ଦ୍ରର ସ୍ନିଗ୍ଧତା, ବିଦ୍ୟୁତର ପ୍ରକାଶ ଓ ଅଗ୍ନିର ସ୍ଫୁଲିଙ୍ଗ । ସବୁ ମିଳି ସେ ନାରୀ । ମନେ ରଖ, ଆଜି ତୁମେ ଯେଉଁ କାମ-ପ୍ରରୋଚନାରେ ଶ୍ରେଷ୍ଠୀ ଧନଞ୍ଜୟଙ୍କ ନିକଟରୁ ଇନ୍ଦୁଲେଖାକୁ ଅପହରଣ କରି ନେଇଛ

ତାହାର ପାପରେ କଳଙ୍କର ଏହି ଶିଳ୍ପ ସାଧନା ପୀଠ ଦିନେ ଭାଙ୍ଗି ଅତଳରେ ବିଲୁପ୍ତ ହୋଇଯିବ । ଆଉ ତା ସ୍ଥାନରେ······

ବନ୍ଦନ କ୍ରୁଦ୍ଧ ସ୍ୱରରେ ଉତ୍ତର ଦେଲେ—ଚୁପ କର କାଦମ୍ବିନୀ ।

ନାଁ, ନାଁ, ଶୁଣି ଯାଅ ବନ୍ଦନ, ସେହି ଶେଷ ଦିବସର କଥା । ଏହାପରେ ପୁଣି ଦିନେ ସେଇ ସ୍ଥାନ ଅଧିକାର କରିବେ ତୁମର ପରି ଶ୍ରେଷ୍ଠୀ ଓ ପୃଷ୍ଠିପତିମାନଙ୍କ ବିଳାସ କୋଳରେ ବର୍ଦ୍ଧିତା ଗୃହିଣୀ ଓ କନ୍ୟାମାନେ । ସଂସ୍କୃତିର ବିକାଶ ନାମରେ ସେମାନେ ଏହିପରି ଗୋଟାକ ପଛକୁ ଗୋଟାଏ ପୁରୁଷର ସାନ୍ନିଧ୍ୟ ଲଭ କରି ଏହି ପାପର ପ୍ରାୟଶ୍ଚିତ୍ତ କରିବେ ।

ବନ୍ଦନ ଦୁଇ ହାତରେ କାନକୁ ଚିପି ଧରି ଚିତ୍କାର କଲେ— ଅସହ୍ୟ । ମୁଁ ଏଠାରେ ଗୋଟାଏ ବାରବିଳାସୀ ପଣ୍ୟାନାରୀଠାରୁ ନୀତି ଶିକ୍ଷା ଗ୍ରହଣ କରିବାକୁ ଆସିନାହିଁ । ମୁଁ ଆସିଛି—ତୁମକୁ ନେଇ ସେହି ଇନ୍ଦ୍ରଲେଖାର ପରିଚାରିକା କରି ରଖିବ ।

ବନ୍ଦନ କାଦମ୍ବିନୀ ନିକଟକୁ ଅଗ୍ରସର ହେଲେ ।

ମୋହନ ଏ ପର୍ଯ୍ୟନ୍ତ ନୀରବରେ ସମସ୍ତ ଶୁଣୁ ଥିଲା । ମାତ୍ର ବଳପୂର୍ବକ କାଦମ୍ବିନୀକୁ ନେଇ ଯିବା ପାଇଁ ବନ୍ଦନ ଉଦ୍ୟମ କରିବାରୁ ତାର ପୌରୁଷରେ ଆଘାତ ଲଗିଲା । ସେ ସମ୍ମୁଖକୁ ଆସି ଦୃପ୍ତ କଣ୍ଠରେ କହିଲା—ସାବଧାନ ଶ୍ରେଷ୍ଠୀ ବନ୍ଦନ । ଆଉ ଗୋଟିଏ ପାଦ ଅଗ୍ରସର ହେଲେ ତୁମର ମୃତ୍ୟୁ ସୁନିଶ୍ଚିତ ।

ବନ୍ଦନ ସ୍ଥାଣୁ ପରି ଠିଆ ହୋଇ ଗଲେ । ତାପରେ ମୁହୂର୍ତ୍ତେ କଣ ଭାବି ଫେରି ଯାଉଁ ଯାଉଁ ଉତ୍ତର ଦେଲେ—ମାତ୍ର ମନେ ରଖ, ଏହାର ପରିଣାମ ତୁମ ଦୁହିଁଙ୍କୁ ଭୋଗ କରିବାକୁ ପଡ଼ିବ ।

କାଦମ୍ବିନୀ ଅବିଚଳିତ ଭାବରେ ଉତ୍ତର ଦେଲା— ମୁଁ କୌଣସି ପରିଣାମର ଅପେକ୍ଷା ରଖେ ନାହିଁ ବନ୍ଦନ !

କୌଣସି ପରିଣାମର ଅପେକ୍ଷା ରଖେନାହିଁ କୃଷ୍ଣା !

ନରାଜ ପର୍ବତର କନ୍ଦରରେ ପ୍ରତିଧ୍ୱନି ତୋଳି ଭାସି ଆସିଲା ଏକ ଦୃପ୍ତ କଣ୍ଠ

ସ୍ୱର । ନାସ୍ତି ସେନାବାହିନୀ କଟୀସ୍ଥିତ କରବାଳରେ ହସ୍ତ ନିକ୍ଷେପ କଲେ ।

ସ୍ତବ୍ଧ ହୋଇଗଲା ମେଘ ମେଦୁର ଆକାଶ, ସ୍ତବ୍ଧ ହେଲା ବର୍ଷା ବିଧୌତ ଶ୍ୟାମଳ ବନାନୀ— ସ୍ତବ୍ଧ ହୋଇଗଲେ କେଳି କଦମ୍ବ ବୃକ୍ଷରେ ଚନ୍ଦବାଳ ଯୁଗଳ ।

ସେ ସ୍ୱର ବୌଦ୍ଧ ମନ୍ଦିର ମଧ୍ୟରେ ପ୍ରବେଶ କରି ପ୍ରସ୍ତର ଖୋଦିତ ବୁଦ୍ଧମୂର୍ତ୍ତି ନିକଟରୁ ପ୍ରତିଧ୍ୱନି ଶୁଭିଲା— ଶାନ୍ତଂ ପାପଂ ।

ଅରଣ୍ୟଗଡ଼ର କୁମାରୀ କୃଷ୍ଣା ଆଜି ମଧ୍ୟ ଆସିଥିଲା ମୃଗୟା ଉଦ୍ଦେଶ୍ୟରେ । ସଙ୍ଗରେ ନିଜର ନାରୀ ସେନାବାହିନୀ । ମାତ୍ର ମନ ଯେ କେଉଁଠି ହଜି ଯାଇଥିଲା ତାହା କେବଳ ତାକୁ ହିଁ ଜଣା । ପ୍ରତି ମୁହୂର୍ତ୍ତରେ ତାର ଆଖି ଆଗରେ ନାଚି ଯାଏ, ସେହି ଗୋଟିଏ ସୁନ୍ଦର ଏବଂ କମନୀୟ ମୂର୍ତ୍ତି । ସେ ମୂର୍ତ୍ତି ଶିଳ୍ପୀ ମୋହନର । ପ୍ରଥମ ଦର୍ଶନ ଦିବସରୁ ସେ ଜୀବନର ଏକ ମୋହନ ମାୟା-କାରାରେ ଆବଦ୍ଧ ହୋଇଥିବା ପରି ମନେ ହୁଏ । ଦୀର୍ଘ ଦିନର ପ୍ରତୀକ୍ଷା ପରେ ମୋହନର ଦର୍ଶନ ନ ପାଇ ସେ ଆସିଥିଲା ତାକୁ ଖୋଜିବା ପାଇଁ । ମାତ୍ର ନଗରୀର ପ୍ରତି ଗିରି କନ୍ଦରା, ଚୈତ୍ୟ ଓ ମନ୍ଦିରରେ ଖୋଜି ଖୋଜି ହତାଶ ସେ ହେଲା । କୌଣସି ସମ୍ବାଦ ମିଳେ ନାହିଁ ।

ସୂର୍ଯ୍ୟ ସେତେବେଳେ ଦିଗ୍‌ବଳୟରେ । ଅବସାନୋନ୍ମୁଖ ସ୍ଥବିର ତପନର ମ୍ଳାନ ରଶ୍ମି ଭଳି ମନ କ୍ଷୀଣ ପ୍ରକୃତି ପରି ତାର ସମସ୍ତ ମନଟା ଯେପରି କି ଏକ ଅବସାଦ ଭାରରେ ସମାଚ୍ଛନ୍ନ । ହୃଦୟର ପ୍ରତ୍ୟେକ ତନ୍ତ୍ରୀ ବିକ୍ଷୁବ୍ଧ ।

ପ୍ରକୃତି ଅଙ୍ଗରେ ଅକଣ୍ୟ ରୂପ ଶୋଭାର ଅଭାବ ନାହିଁ, ବରଂ ଅଦୃଶ୍ୟ ଯାଦୁ-କରର କାଉଁରୀ କାଠି ସ୍ପର୍ଶରେ ସେ ନୂତନ ଭାବରେ ସାଜି ଉଠିଛି । କିନ୍ତୁ ପ୍ରଭାତର ସେହି ଆନନ୍ଦ ମୁଖରତା ଏହି ସାୟାହ୍ନ-କ୍ଳାନ୍ତ ଅବସନ୍ନତାରେ ବିଲୋପ ହୋଇ ଯାଇଛି । ତାର ପ୍ରଭାବ ପଡ଼ିଛି କର୍ମୋଦ୍ଦୀପନା-ଭରା ଚିତ୍ତ ପଟରେ । ହୃଦୟ ନୈରାଶ୍ୟ-ରେ ପରିପୂର୍ଣ୍ଣ । ହଠାତ୍ ଏହି ସମୟରେ ଦସ୍ୟୁ କର୍ତ୍ତୃକ ଆକ୍ରାନ୍ତ ହେଲା କୃଷ୍ଣା ।

ଅରଣ୍ୟ ଗଡ଼ର କୁମାରୀ କୃଷ୍ଣା ।

ସର୍ଦ୍ଦାର ବିଶ୍ୱନାଥର ଏକମାତ୍ର କନ୍ୟା ।

ଯେଉଁଠି ଶାଳଗଛରେ ଶିଆଳୀ ଲଟା ଭର ଦେଇ ଉଠେ, ପିଆଶାଳ ଗଛର ଅଗ୍ର ଭାଗରୁ ମାଧବୀ ଲତା ତଳକୁ ଓହ୍ଲାଇ ଥାଏ, ବଣମାଳତୀ ଅର୍ଜ୍ଜୁନ ଗଛର ବିଶାଳ ବୁକୁରେ ନିଜକୁ ଜଡ଼ାଇ ଦିଏ—ସେଇଠି ତାର ଜନ୍ମ । ପିଲାଟି ଦିନରୁ ସେ ଏକାକୀ ବଣ ଜଙ୍ଗଲରେ ବୁଲି ଶିଖିଛି । ନିଜର ସାଙ୍ଗ ଝିଅମାନଙ୍କ ସହିତ ଖେଳି ଖେଳି ଚାଲି-ଯାଇଛି ବଣ ଭିତରକୁ । ସପ ମୁହଁରେ ଚୁନ ଦେଇ, ବାଘ ଶିଶୁକୁ କୋଳରେ ଧରି ସେ ମଣିଷ ହୋଇଛି । ଏ ମଧ୍ୟରେ ସତରଟି ବସନ୍ତ ପଛକୁ ପଛ ଚାଲି ଯାଇଛନ୍ତି । ସେ ବର୍ତ୍ତମାନ ଅଷ୍ଟାଦଶୀ । ସବଳ ବିଶାଳ ଦେହ । ଉଦ୍ଧତ, ଉନ୍ନତ କୁମାରୀ ବକ୍ଷ । ଚକ୍ଷୁର ଦୃଷ୍ଟି ଭାସ୍ୱର କିନ୍ତୁ ନମ୍ର । ଆକାଶ ପରି ଉନ୍ମୁକ୍ତ ଏବଂ କରୁଣମୟ । ମାଥି ଉପ୍ର ଆଲୋକ ଚହଟିରେ ବାନ୍ଧି । ମୁଖଟି ବିଷ୍ମ ମଣ୍ଡିତ । ଚକ୍ଷୁ ଦୁଇଟି ଅଳ୍ପଲୀନ । କେତେବେଳେ ବା ସଜାଗ କୌତୁକରେ ପୂର୍ଣ୍ଣ ।

କୃଷ୍ଣାର ସମବୟସୀ ଝିଅମାନେ କଠୋର ଜୀବନ ସଂଗ୍ରାମ ସହିତ ଅଭ୍ୟସ୍ତ । ମହୁଲ, କାନ୍ଦୁଲ, ଝୁଣା, କାଙ୍କଣ ଓ କନ୍ଦମୂଳ ସଂଗ୍ରହ ପାଇଁ ସେମାନେ ଚାଲିଯାଆନ୍ତି ବଣ ଭିତରକୁ । ଝରଣାର ଜଳ ଓ ବଣର ଫଳ ମୂଳ ସେମାନଙ୍କର ପ୍ରଧାନ ଖାଦ୍ୟ । ପ୍ରକୃତିର କୋଳରେ ବଢ଼ି, ପ୍ରକୃତିର ଆଶୀର୍ବାଦ ଲଭି କରି ସେମାନେ ସରଳ ଜୀବନ ଯାପନ କରନ୍ତି । ଡର ଭୟ କଣ ଜାଣନ୍ତି ନାହିଁ । ବଣର ରଜା ବାଘ ସେମାନଙ୍କୁ ଦେଖି ବଣରେ ଲୁଚିଯାଏ । ଭାଲୁ ଡରରେ ପଳାଇ ଯାଏ— ବିଶାଳକାୟ ଅଜଗର ବାଟ ଛାଡ଼ି ଦିଏ । ସେମାନଙ୍କର ଭୟ କେବଳ ବଣର ଦେବତା ଓ ପ୍ରେତାତ୍ମାକୁ । ଏମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେମାନେ ପୂଜା ପାର୍ବଣ କରନ୍ତି, ଦେବତା ନିକଟରେ ବଳି ଅର୍ପଣ କରନ୍ତି । ଝରଣାର ଗୁଞ୍ଜନ ଏବଂ ପକ୍ଷୀର କୂଜନରେ ସେମାନେ ଭୁଲିଯାଆନ୍ତି ଦିବସର କ୍ଲାନ୍ତି, ହତାଶା ଓ ବିଷର୍ଣ୍ଣତା ।

ନାୟକ ସମାଜର ଶିଶୁମାନେ ଜ୍ଞାନ ହେବାଠାରୁ ଶୁଷ୍କ ଓ କଠିଣ ବୀରତ୍ୱରେ ଦୀକ୍ଷିତ ହୁଅନ୍ତି । ସେମାନଙ୍କ ଦୈନନ୍ଦିନ କ୍ରୀଡ଼ା— ଅକ ତଟରେ ଶାଙ୍ଗରିକ ଆଘାତ ଦେବା ନେବା ଶିକ୍ଷା ଛଡ଼ା ଆଉ କିଛି ନୁହେଁ । ମାଟି ଉପରେ ବାଘ ସଙ୍ଗରେ ଲଢ଼ିବାକୁ ସେମାନେ ଭୟ ପାଆନ୍ତି ନାହିଁ କି ନଦୀରେ କୁମ୍ଭୀରର ପେଟ ଚିରିବାକୁ ପଛ ଉପଦ ହୁଅନ୍ତି ନାହିଁ । ଶତ୍ରୁ ସହିତ ସେମାନେ ଲଢ଼େଇ କରନ୍ତି ବଣ ଜଙ୍ଗଲ-ରେ । ମରୁ ପ୍ରାନ୍ତରର ବାଲୁକା ଝଟିକା ପରି ସେମାନେ ଆକସ୍ମିକ ଓ ଦୁର୍ବାର । ମରୁ ଝଟିକାରେ କିଛି ପୂର୍ବାଭାସ ମିଳେ, ମାତ୍ର ବନ୍ଧୁର ବାହିନୀର ଗତିବିଧି ଦୁର୍ଜ୍ଞେୟ । କ୍ଷିପ୍ର

ବିଦ୍ୟୁତ ଗତିରେ ସେମାନେ ଏକ ଜାଗାରେ ବିଲୀନ ହୋଇ ଅନ୍ୟ ଏକ ଜାଗାନ୍ତରେ ଆବିର୍ଭୂତ ହୁଅନ୍ତି । ତାପରେ ସକଳ ନିଶ୍ଚିହ୍ନ କରି ଦେଇ ଯାଆନ୍ତି ।

ସେମାନଙ୍କ ମତରେ ସଂଘର୍ଷ ହିଁ ଜୀବନ ଏବଂ ସଂଘର୍ଷ ହିଁ ସୃଷ୍ଟି ।

ସଫଳତା ଓ ଅସଫଳତା ଅର୍ଥାତ ଜୀବନ ଓ ମୃତ୍ୟୁ ଏ ଦୁଇଟି ବ୍ୟତୀତ ସେମାନଙ୍କ ଜୀବନରେ ତୃତୀୟ ପନ୍ଥା ନାହିଁ । ତେଣୁ ସାମାନ୍ୟ ଅପରାଧରେ ମୁଣ୍ଡ କଟା ସେମାନଙ୍କର ସହଜ ଶାସ୍ତି ।

କୃଷ୍ଣାର ବାଲ୍ୟ ଜୀବନ କଟିଛି ଏଠିମାନଙ୍କ ସାହଚର୍ଯ୍ୟରେ । ପିଲାଟି ଦିନରୁ ସେ ତରବାରୀ ଧରି ଖେଳ ଶିଖିଛି । ଅଶ୍ୱାରୋହଣ ଜାଣିଛି ଏବଂ ଶୂଳ ହସ୍ତରେ କ୍ଷିପ୍ର ଗତିରେ ଦଉଡ଼ି ବନ୍ୟ ବରାହ ଦେହରେ ତାହା ବିଦ୍ଧ କରି ପାରିଛି । ବିଶେଷତଃ ଶର ସନ୍ଧାନରେ ତାର ଲକ୍ଷ୍ୟ ଅବ୍ୟର୍ଥ । ପଲକ ପଡ଼ିବା ମାତ୍ରେ ସେ ତୂଣୀରରୁ ଶର ବାହାର କରି ବନ୍ୟ ପଶୁକୁ ନିକ୍ଷେପ କରିପାରେ ଏବଂ ପ୍ରଥମ ଶର ନିର୍ଦ୍ଦିଷ୍ଟ ସ୍ଥାନରେ ବିଦ୍ଧ ହେବା ସଙ୍ଗେ ସଙ୍ଗେ ଦ୍ୱିତୀୟ ଶରଟି ତା ପାଖରେ ଲାଗି ଯାଏ ।

କୃଷ୍ଣାର କେଉଁ ପୂର୍ବ ପୁରୁଷ ଯେ ଏଠାରେ ଗଡ଼ ନିର୍ମାଣ କରିଥିଲେ ତାର ଇତିହାସ ସେ ଜାଣେ ନାହିଁ । ହୁଏତ କେଉଁ ସାମନ୍ତ ବା ରାଜ୍ୟହରା ରାଜପୁତ୍ର ପ୍ରଥମେ ଆସି ଏଠାରେ ବସତି ସ୍ଥାପନ କରିଥିବେ । ପରେ ନିଜର ଶୌର୍ଯ୍ୟ, ବୀର୍ଯ୍ୟ ବା ବୁଦ୍ଧି ବଳରେ ସ୍ଥାନୀୟ ଅଧିବାସୀଙ୍କ ଉପରେ ନିଜର କର୍ତ୍ତୃତ୍ୱ ଜାହିର କରିଥିବେ । କାଳର ବିବର୍ତ୍ତନରେ ସେ ସବୁ ଲୀନ ହୋଇ ଗଲାଣି । ମାତ୍ର ତାଙ୍କର ବଂଶଧରମାନେ ଏ ପର୍ଯ୍ୟନ୍ତ ଏଠାରେ ପୁରୁଷାନୁକ୍ରମେ ପ୍ରଭୁତ୍ୱ ବିସ୍ତାର କରି ଆସିଛନ୍ତି । କୃଷ୍ଣା ସେ ବଂଶର ଏକମାତ୍ର ବଂଶଧର ।

ସର୍ଦ୍ଦାର ବିଶ୍ୱନାଥ କନ୍ୟାରତ୍ନ ପାଇ ଆନନ୍ଦିତ । ନିଜର ବୀରତ୍ୱ ଏବଂ ସାହସରେ ସେ ଗଜପତିଙ୍କଠାରୁ ପୁରସ୍କୃତ ହୋଇଛନ୍ତି । ଗଜପତିଙ୍କ ସିଂହାସନ ପ୍ରତି ତାଙ୍କର ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ । ଦେଶରେ କୌଣସି ଭୟ ବା ବିପଦର ଆଶଙ୍କା ନାହିଁ । କେବଳ ଏକମାତ୍ର ଇଚ୍ଛା—କନ୍ୟାକୁ ସୁପାତ୍ରରେ ଦାନ କରି ନିଜର ଦାୟିତ୍ୱ ଅର୍ପଣ କରିବେ ।

ଦୁର୍ଗାରଣ୍ୟ ମଧ୍ଯର ମାଳମା ଉତ୍କଳ ।

ସ୍ୱାଧୀନ ଗଜପତିମାନେ ଦୀର୍ଘ ଦୁଇ ହଜାର ବର୍ଷ ଧରି ଏହାର ବିଶାଳ ବୃକ୍ଷରେ ଲୀଳା-ଖେଳା କରିଛନ୍ତି । ଗୋଟିକ ପଛକୁ ଗୋଟିଏ ରାଜବଂଶ ଚାଲି ଯାଇ-ଛନ୍ତି; କେତେ ଅକ୍ଷୟ କୀର୍ତ୍ତି ସ୍ଥାପନ କରିଛନ୍ତି, ପୁଣି କେତେ ଧର୍ମ ଓ ମତବାଦ ମଧ୍ଯ ଏହାରି ବକ୍ଷରେ ପ୍ରଚାରିତ ହୋଇଛି । ମାତ୍ର ସେ ଅବିଚଳିତ । ସଗୌରବରେ ନିଜର ସ୍ୱାଧୀନତା ଧ୍ୱଜାକୁ ଅକ୍ଷୁର୍ଣ୍ଣ ରଖିଛି ।

ସର୍ପର ମଣି ଏବଂ ସ୍ୱର୍ଗର ପାରିଜାତ ସଦୃଶ ରାଜଧାନୀ ବାରବାଟୀ ଦୁର୍ଗ । ବହିଃ ଶତ୍ରୁର ଆକ୍ରମଣରୁ ରାଜଧାନୀକୁ ରକ୍ଷା କରିବା ସକାଶେ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଗଜପତି ଅନଙ୍ଗଭୀମଦେବ ଚୌଦ୍ୱାର, ବଡ଼ାନାସୀ ଓ ସାରଙ୍ଗଗଡ଼ ଦୁର୍ଗର ମଧ୍ଯ ସ୍ଥଳରେ ଥିବା ଏହି ଦୁର୍ଗଟିକୁ ନିର୍ମାଣ କରି ରାଜଧାନୀ କରିଥିଲେ ।

ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ବିଶାଳ ଉତ୍କଳର ଶାସନ କାର୍ଯ୍ୟ ଏହି ଦୁର୍ଗର ନିର୍ଦ୍ଦେଶରେ ଚାଲିଥିଲା । ଶାସନର ସୁବିଧା ଏବଂ ରାଜ୍ୟର ଉନ୍ନତି ସକାଶେ ଜଳେଶ୍ୱର, ଭଦ୍ରକ, କଟକ, କଳିଙ୍ଗ ଓ ରାଜମାହେନ୍ଦ୍ରୀ ଏହି ପାଞ୍ଚଟି ସୁବାରେ ସମଗ୍ର ଉତ୍କଳ ବିଭକ୍ତ ହୋଇଥିଲା । ଏହି ସୁବାମାନଙ୍କ ଅଧୀନରେ ଥିଲା— ୧୬୯ଟି ଦୁର୍ଗ, ତିନି ଲକ୍ଷ ପଦାତିକ, ପନ୍ଦର ହଜାର ଅଶ୍ୱାରୋହୀ ଏବଂ ପାଞ୍ଚହଜାର ଗଜାରୋହୀ ସୈନ୍ୟ । ଏହା ବ୍ୟତୀତ ଉପକୂଳ ଅଞ୍ଚଳର ସୁରକ୍ଷା ପାଇଁ ମସଲିପଟ୍ଟମ, କୋନଗର, କଳିଙ୍ଗ ପଟ୍ଟନ, ଚିଲିକା, ପୁରୀ, ଚାରିତ୍ର୍ୟ, ହରିଶପୁର, ସୁବର୍ଣ୍ଣରେଖା, ହିଜଲୀ ଓ ତାମ୍ରଲିପ୍ତ ବନ୍ଦରମାନଙ୍କରେ ଗଜପତିଙ୍କର ଜଳଦୁର୍ଗ ଥିଲା ଏବଂ ସେଠାରେ ନୌବାହିନୀ ମୁତୟନ ଥିଲେ ।

ଅରଣ୍ୟଗଡ଼ ଏହାରି ଏକ ଅଂଶ ବିଶେଷ । ବିଶାଳ ସାଗର ବୁକୁରେ କ୍ଷୁଦ୍ର ଏକ ଜଳ ବିନ୍ଦୁ ଅଥବା ବିସ୍ତୀର୍ଣ୍ଣ ମରୁଭୂମି ମଧ୍ଯରେ କ୍ଷୁଦ୍ର ଏକ ଧୂଳିକଣା ।

ସର୍ଦ୍ଦାର ବିଶ୍ୱନାଥ ପୁରୁଷାନୁକ୍ରମେ ଏହି ଦୁର୍ଗରେ ବସବାସ କରି ଅସିଛି । ନିଜର ଅରଣ୍ୟବାସୀ ପ୍ରଜାମାନଙ୍କୁ ନେଇ ସୈନ୍ୟବାହିନୀ ଗଢ଼ିଛି ଏବଂ ଗଜପତିଙ୍କ ନିର୍ଦ୍ଦେଶରେ ଯୁଦ୍ଧ କରି ଅସିଛି—ବଙ୍ଗର ନବାବ ଏବଂ ବାହ୍ମାମନୀର ସୁଲତାନଙ୍କ ସହିତ ।

ଗଜପତିଙ୍କର ସେ ବିଶ୍ୱସ୍ତ ସର୍ଦ୍ଦାର ଏବଂ ନିଷ୍ଠର ଜାଗିରଦାର । କୌଣସି ପୁତ୍ର ସନ୍ତାନ ନାହାନ୍ତି— ଏକମାତ୍ର କନ୍ୟା କୃଷ୍ଣା ।

କୃଷ୍ଣାର ବାଲ୍ୟ ଜୀବନ କଟିଛୁ ଅରଣ୍ୟର ଏହି ଆଦିମ ଅଧିବାସୀମାନଙ୍କ ସହିତ । ବିଦ୍ୟାଶିକ୍ଷା ସମୟ ବ୍ୟତୀତ ସେ ଅନ୍ୟ ସମୟରେ ଅରଣ୍ୟରେ ବୁଲିଛୁ, ଗଛରେ ଚଢି ପାଚିଲା କେନ୍ଦୁ ଓ ଜାମୁକୋଳି ତୋଳିଛୁ । ସେମାନଙ୍କ ଉତ୍ସବରେ ସାଥି ହୋଇ ନାଚିଛୁ ।

କୃଷ୍ଣା ଜନକ ଜନନୀଙ୍କର ପ୍ରିୟ କନ୍ୟା ସନ୍ତାନ । ତେଣୁ ବ୍ୟସ୍ତ କର୍ମବହୁଳ ଜୀବନର ଅବସର ସମୟରେ ବିଶ୍ୱନାଥ ତାକୁ କୋଳରେ ବସାଇ କେତେ ବୀରତ୍ୱ କାହାଣୀ ଶୁଣାଇଛୁ । କଳିଙ୍ଗ ବୀରଙ୍କର ଅସୀମ ବୀରତ୍ୱ କାହାଣୀ ରାମାୟଣର ହନୁମାନ, ବାଲୀ, ସୁଗ୍ରୀବ, ରାମ, ଲକ୍ଷ୍ମଣ ଓ ଲବ କୁଶଙ୍କର ବୀରତ୍ୱଗାଥା, ମହାଭାରତର ଭୀମ ଅର୍ଜ୍ଜୁନ, ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଓ ଅଭିମନ୍ୟୁଙ୍କର ଯୁଦ୍ଧ କୌଶଳ ଏବଂ ସର୍ବୋପରି ପ୍ରମିଳାଙ୍କ ନାରୀବାହିନୀର ଅସୀମ ସାହସ ଓ ଅତୁଳନୀୟ ବୀରତ୍ୱ ତା ହୃଦୟରେ ଗଭୀର ରେଖାପାତ କରିଛୁ ।

କୃଷ୍ଣା ପିତାଙ୍କ କୋଳରେ ଶୋଇ ଶୋଇ କାହାଣୀ ଶୁଣେ । କେତେବେଳେ ଉତ୍ତେଜିତା ହୋଇ ହାତ ତାଳି ମାରେ, କେତେବେଳେ ବା ଅଳି କରେ—ବାପା ମୁଁ ଘୋଡ଼ାରେ ଚଢ଼ିବି । ବିଶ୍ୱନାଥ ତାକୁ ପ୍ରବୋଧନା ଦେଇ ଗଳ୍ପ ଆରମ୍ଭ କରନ୍ତି—

ମହାବନରେ ପ୍ରମିଳାଙ୍କର ରାଜ୍ୟ । ରାଜସୂୟ ଯଜ୍ଞ କାଳରେ ଅର୍ଜ୍ଜୁନ ଯେତେବେଳେ ସମସ୍ତ ରାଜାମାନଙ୍କୁ ନିମନ୍ତ୍ରଣ କରିବାକୁ ଯାଇଥିଲେ, ସେତେବେଳେ ସେ ଦେଶରେ ଯାଇ ପହଞ୍ଚିଥିଲେ । ସେଠାରେ କେହି ପୁରୁଷ ନାହାନ୍ତି—ସମସ୍ତେ ନାରୀ । ପ୍ରମିଳା ସେମାନଙ୍କର ରାଣୀ । ତାଙ୍କର ପାତ୍ର ମନ୍ତ୍ରୀ, ସୈନ୍ୟ ସାମନ୍ତ ସମସ୍ତେ ନାରୀ । ଅର୍ଜ୍ଜୁନ ସେମାନଙ୍କୁ ନିମନ୍ତ୍ରଣ କରିବାରୁ ସେମାନେ ରାଜସୂୟ ଯଜ୍ଞରେ ଯୋଗ ଦେବାକୁ ରାଜି ହେଲେ ନାହିଁ । କହିଲେ—ଆମେ କାହାରି ଅଧୀନା ନୋହୁ । ସେଠାକୁ ଯାଇ ଆପଣଙ୍କ ଅଧୀନତା ସ୍ୱୀକାର କରି ପାରିବୁ ନାହିଁ । ଫଳରେ ମହାବୀର ଅର୍ଜ୍ଜୁନଙ୍କ ସହିତ ସେମାନଙ୍କର ଯୁଦ୍ଧ ହେଲା । ନାରୀ ବାହିନୀ ଧନୁ, ଶର, ବର୍ଚ୍ଛା ଓ ଖଡ଼୍‌ଗ ଧରି ଅଶ୍ୱାରୋହଣ ପୂର୍ବକ ଯୁଦ୍ଧକ୍ଷେତ୍ରକୁ ଆସିଲେ । ଭୟଙ୍କର ଯୁଦ୍ଧ ହେଲା । ଅର୍ଜ୍ଜୁନଙ୍କର ସୈନ୍ୟବାହିନୀ କ୍ରମେ କ୍ରମେ ଧରାଶାୟୀ ହେବାକୁ ଲାଗିଲେ । ଶେଷରେ ଅର୍ଜ୍ଜୁନ ବାଧ୍ୟ ହୋଇ ସନ୍ଧି କଲେ ଏବଂ ପ୍ରମିଳାଙ୍କୁ ବିବାହ କଲେ ।

କାହାଣୀ ଶୁଣି କୃଷ୍ଣା ତାଳି ମାରି କହେ—ବାଃ କି ମଜ୍ଜା । ବାପା ମୋତେ

ଗୋଟାଏ ଘୋଡ଼ା ଦିଅ । ମୁଁ ବି ଯୁଦ୍ଧ କରିବି ।

ବିଶ୍ୱନାଥ ତାଙ୍କୁ ସାନ୍ତ୍ୱନା ଦିଅନ୍ତି ।

ପୁଣି ଯେତେବେଳେ ଜନାର ଉପାଖ୍ୟାନ ପଡ଼େ ସେତେବେଳେ କୃଷ୍ଣା ଖୁବ୍ ଉତ୍ତେଜିତା ହୋଇପଡ଼େ ।

ମହାଭାରତ ଯୁଦ୍ଧ ପରେ ଧର୍ମରାଜ ଯୁଧିଷ୍ଠିର ଅଶ୍ୱମେଧ ଯଜ୍ଞ ଆରମ୍ଭ କଲେ । ଅର୍ଜ୍ଜୁନ ଅଶ୍ୱ ରକ୍ଷା କରିବା ପାଇଁ ତା ସଙ୍ଗରେ ଗଲେ । ଅଶ୍ୱ ମୁଣ୍ଡରେ ପ୍ରତିଜ୍ଞା ପତ୍ର ଦେଖି ପ୍ରବୀର ଅଶ୍ୱକୁ ବାନ୍ଧି କଲେ । ମାତ୍ର ଯେତେବେଳେ ଜାଣିଲେ ଯେ ଏ ଅଶ୍ୱ ମହାଭାରତ ବିଜୟୀ, ଶ୍ରୀକୃଷ୍ଣଙ୍କ ସଖା ଅର୍ଜ୍ଜୁନଙ୍କର, ସେତେବେଳେ ଭୟରେ ଅଶ୍ୱ-ଟିକୁ ଛାଡ଼ି ଦେବାକୁ ମନସ୍ଥ କଲେ । ଏହା ଶୁଣି ମାତା ଜନା ପୁଅକୁ ଧିକ୍‌କାର କରି କହିଲେ— ଛି, ଛି, ତୋପରି ପୁତ୍ରକୁ ଗର୍ଭରେ ଧରି ମୋର ଗର୍ଭ ବ୍ୟର୍ଥ ହୋଇଛି । ତୁ ଏପରି କାପୁରୁଷ ହୋଇ ଜନ୍ମ ହେବୁ ଜାଣିଥିଲେ, ସେହି ଶିଶୁ ଅବସ୍ଥାରେ ମୁଁ ତୋର ଗଳା ଚିପି ଦେଇ ଥାଆନ୍ତି । କ୍ଷତ୍ରୀୟ ହୋଇ ଯେ ଯୁଦ୍ଧକୁ ଡରେ ସେ କାପୁରୁଷ । ଆମର ଶାସ୍ତ୍ରରେ ଅଛି—

"ସ୍ଥାନାଭିଘାତେ ଶରଣା ଗତେଃ ବା
ରାଜ୍ଞେ ବିପତ୍ତୌ ଦ୍ୱିଜ ସାର୍ଥଘାତେ
ସ୍ତ୍ରୀ ବାଳ ବୃଦ୍ଧା ଜନ ଗୋ ରହେତ
ଶସ୍ତ୍ର ମୁନିନାମପି ଧାରଣୀୟମ ।"

—ଯଦି ରାଜ୍ୟର ସ୍ଥାନ ବିଶେଷ ଆକ୍ରାନ୍ତ ହୁଏ, ଶରଣାଗତ ଲୋକକୁ ରକ୍ଷା-କରିବାକୁ ପଡ଼େ, କିମ୍ବା ସ୍ତ୍ରୀ, ବାଳ, ବୃଦ୍ଧ ଗୋ ସମ୍ପଦ ବିପନ୍ନ ହୁଅନ୍ତି, ରାଜା ଓ ଦ୍ୱିଜ ବିପଦରେ ପଡ଼ନ୍ତି, ତାହାହେଲେ ମୁନି ଋଷିମାନଙ୍କୁ ମଧ୍ୟ ଏମାନେ ରକ୍ଷା ଲାଗି ଅସ୍ତ୍ର ଧାରଣ କରିବାକୁ ପଡ଼େ ।

ତୁ କ୍ଷତ୍ରିୟ ଜାଣି ଶୁଣି ବିନା ଯୁଦ୍ଧରେ ଶତ୍ରୁ ନିକଟରେ ମୁଣ୍ଡ ନୁଆଁଇ ଦେଉଛୁ କିପରି ?

କୃଷ୍ଣା ଏସବୁ କାହାଣୀ ଶୁଣେ । ସେହି ବାଳିକା ବୟସରୁ ତା ହୃଦୟର ଏକ ନିଭୃତତମ ଅଂଶ ଅଧିକାର କରେ— ଯୁଦ୍ଧ ଏବଂ ବୀରତ୍ୱର ଦୁଃସାହସିକ କାର୍ଯ୍ୟାବଳୀ ।

କ୍ରମେ ବାଳିକା କୃଷ୍ଣା କୈଶୋରରେ ପଦାର୍ପଣ କଲା । ତା ସଙ୍ଗେ ସଙ୍ଗେ

ତାର ବାଳିକା ହୃଦୟର ସମସ୍ତ ଆଶା ଓ ଆକାଂକ୍ଷା ମଧ୍ୟ ବର୍ଦ୍ଧିତ ହେବାରେ ଲାଗିଲା ।

ମନର ଦାଗ ସହଜରେ ମିଳାଏ ନାହିଁ । ମିଳାଇ ଯିବା ବି ସମ୍ଭବ ନୁହେଁ । ବୁକୁ ଭିତରେ ତାହା ଅହରହ ପ୍ରତିଧ୍ୱନିତ ହୁଏ ।

ଠିକ୍ ଯେପରି ପ୍ରସ୍ତରରେ ପଡ଼ିଥିବା ଦାଗ କୌଣସି ଉପାୟରେ ମିଳାଏ ନାହିଁ, ଶୈବାଳରେ ଆଚ୍ଛାଦିତ ହେଲେ ସେ ଦାଗ ହୁଏତ ଲିଭି ଯିବା ପରି ପ୍ରତୀତ ହୁଏ; ମାତ୍ର ଶିଉଳି ଛାଡ଼ିଗଲେ ତାହା ପୁଣି ପୂର୍ବାପେକ୍ଷା ଅଧିକ ଉଜ୍ଜ୍ୱଳିତ ହୋଇଉଠେ ।

କିଶୋରୀ କୃଷ୍ଣାର ବୟସ ବଢ଼ିବା ସଙ୍ଗେ ସଙ୍ଗେ ମନର ଅବ୍ୟକ୍ତ ଇଚ୍ଛାଗୁଡ଼ିକ ପୁଣି ନୂତନ ଭାବରେ ଜାଗି ଉଠିଲା । କ୍ରମେ ସେ ଅସି ଚାଳନା, ଅଶ୍ୱାରୋହଣ ଏବଂ ଧନୁର୍ବିଦ୍ୟାରେ ନିପୁଣା ହୋଇପଡ଼ିଲା । ନାରୀ ସୁଲଭ ଚପଳତା ଏବଂ ଲଜ୍ଜା ବଦଳରେ ତା ଠାରେ ଦେଖା ଦେଲା—ପୁରୁଷୋଚିତ ଗାମ୍ଭୀର୍ଯ୍ୟ ଏବଂ କ୍ଷାତ୍ରୋଚିତ ତେଜ ।

ଏହାପରେ ଆରମ୍ଭ ହେଲା—ଦ୍ୱିତୀୟ ପର୍ଯ୍ୟାୟ । ନିଜର ସମବୟସୀ ଝିଅମାନଙ୍କୁ ନେଇ ସେ ଏକ ନାରୀବାହିନୀ ଗଠନ କଲା । ସେମାନଙ୍କର ସଂଖ୍ୟା ସ୍ୱଳ୍ପ ହେଲେ ମଧ୍ୟ ଅସି ଚାଳନା, ଅଶ୍ୱାରୋହଣ ଏବଂ ତୀର ନିକ୍ଷେପରେ ସେମାନେ ସମସ୍ତେ ଧୁରନ୍ଧର ହୋଇଉଠିଲେ । ସେହିମାନେ କୃଷ୍ଣାର ସହଚରୀ, ସୈନ୍ୟ, ପରାମର୍ଶଦାତ୍ରୀ ଏବଂ ସମ୍ପଦ ବିପଦର ସାଥି ହୋଇରହିଲେ ।

କ୍ରମେ ଯୌବନ ଆସି ତାର କାଉଁରୀ କାଠି କୃଷ୍ଣାର ସର୍ବ ଶରୀରରେ ବୁଲାଇ ଦେଇଗଲା । ମାତ୍ର ତାର ସେସବୁ ପ୍ରତି ଲକ୍ଷ୍ୟ ନାହିଁ । ବେଳେ ବେଳେ ମନଟା କିପରି ଅନ୍ୟମନସ୍କ ହୋଇପଡ଼େ କୌଣସି କାମରେ ମନ ଲାଗେ ନାହିଁ । ନୀରବତା ଭଲ ଲାଗେ । ଏକାନ୍ତ ଜୀବନ ଯାପନ କରିବାକୁ ଇଚ୍ଛା ହୁଏ ।

କୃଷ୍ଣା ନିଜର ନାରୀ ବାହିନୀ ସହିତ ବଣକୁ ଚାଲିଯାଏ । ବ୍ୟାଘ୍ର, ବରାହ, ଭଲ୍ଲୁକ ଏବଂ ମୃଗ ଶିକାର କରେ । କ୍ଳାନ୍ତ ଶରୀରରେ ବୃକ୍ଷ ମୂଳରେ ବିଶ୍ରାମ ନିଏ ।

ସହଚରୀମାନଙ୍କ ସହିତ ହାସ ପରିହାସରେ ଦିନଗୁଡ଼ିକ ଅତିବାହିତ ହୋଇଯାଏ । ସନ୍ଧ୍ୟା ପୂର୍ବରୁ ନାରୀ ବାହିନୀ ଫେରନ୍ତି ଗୃହକୁ । ଅଶ୍ୱ କ୍ଷୁର ଶବ୍ଦରେ ବନାକାଶ ପ୍ରକମ୍ପିତ ହୁଏ ।

ଗ୍ରୀଷ୍ମ ଋତୁର ପ୍ରାରମ୍ଭ । ସୁରଭିମୁଖା ସ୍ନିଗ୍ଧ ସମୀରଣ । ମହୁଲ ଫୁଲର ଗନ୍ଧରେ ଦିଗ ଦିଗନ୍ତ ଆମୋଦିତ । ଶାଳ, ପିଆଶାଳ ଓ ଅର୍ଜ୍ଜୁନ ବୃକ୍ଷ ଫୁଲ ଭାରରେ ଅବନତ ।

ବାହା ପରବ ଆରମ୍ଭ ହୋଇଯାଇଛି । ପ୍ରତି ବୃକ୍ଷ, ପଲ୍ଲବ, ଜୀବଜନ୍ତୁ ସମସ୍ତଙ୍କ ମନରେ ଲଗିଛି ଉତ୍ସବର ରଙ୍ଗ । ମହୁଆ ନିଶାରେ ସମସ୍ତେ ଉନ୍ମତ୍ତ । ଚାଙ୍ଗୁ ବାଜା ଏବଂ ମାଦଳ ଶବ୍ଦରେ ସମସ୍ତ ଦୁଃଖ ଦୁର୍ଦ୍ଦଶା ଏବଂ ବିଷାଦ ଯେପରି ଦୂରକୁ ଚାଲିଯାଇଛି । ସମସ୍ତେ ସମସ୍ତେ ଖୁସି ଆସୁଛି—କେଉଁ ବିରହୀ ବଂଶୀର ବେସୁରା ରାଗିଣୀ । ଆଦିମ ଅରଣ୍ୟ ପରିବେଶ ସଙ୍ଗରେ ଏହି ସୁରର ଯେପରି ସାମ୍ୟ ଅଛି । ସ୍ଥାନେ ସ୍ଥାନେ ଅରଣ୍ୟର ଆଦିମ ଅଧିବାସୀମାନଙ୍କର ବିଭିନ୍ନ ପର୍ବ ଆରମ୍ଭ ହୋଇଗଲାଣି ।

ଧରଣୀମାତାର ସନ୍ତାନ ସେମାନେ । ଏହି ଦିନରୁ ମାଅର ବୁକୁ ଖୋଳି ତାଡ଼ି ଦାନି ପିଇ ସେମାନେ ଜୀବନ ଧାରଣ କରିବେ । ତେଣୁ ମାଆର ପୂଜା ଆବଶ୍ୟକ । ସେମାନଙ୍କର ବିଶ୍ୱାସ—ମାଆର ପୂଜା ନ କଲେ, ବଳିର ରକ୍ତରେ ମାଆର ବୁକୁ ଲୋହିତ ନ ହେଲେ, ଜମିରେ ଭଲ ଫସଲ ହୁଏ ନାହିଁ । ସ୍ତ୍ରୀ ପୁରୁଷ ଓ ବାଳକ ବାଳିକା ନିର୍ବିଶେଷରେ ଉତ୍ସବରେ ଲାଗି ପଡ଼ିଛନ୍ତି । ଦଳ ଦଳ ବନ୍ଧୁବାନ୍ଧବ ନିମନ୍ତ୍ରିତ ହୋଇ ଆସୁଛନ୍ତି । ସମସ୍ତଙ୍କର ନବ ବସ୍ତ୍ର ପରିଧାନ ।

ବଳି ମଧ୍ୟରେ କୁକୁଡ଼ା, ଛେଳି, ପୋଡ଼ା ଓ ନରବଳି ପ୍ରଧାନ । ଏ ଉଦ୍ଦେଶ୍ୟରେ ବର୍ଷକ ପୂର୍ବରୁ ବଳି ପଶୁ ବା ମନୁଷ୍ୟ ସଂଗ୍ରହ କରାଯାଇଥାଏ । ପର୍ବ ଦିବସରେ ବଳି ଦିଆ ସରିଲେ ସମସ୍ତେ ଭୋଜି କରି ଉତ୍ସବ ସମାପନ କରନ୍ତି ।

ପ୍ରଭାତରୁ କୃଷ୍ଣା ଶଯ୍ୟା ତ୍ୟାଗ କରି ଉଦ୍ୟାନକୁ ଗଲା । ପୁଷ୍ପ ସମ୍ଭାରରେ ଉଦ୍ୟାନ ସ୍ଥଳୀ ପରିପୂର୍ଣ୍ଣ । କେତେ ଫୁଲ ଝଡ଼ି ପଡ଼ିଲେଣି, କେତେକ ନିଜର ରୂପର ପସରା ମେଲାଇ ଆଗାମୀ ଦିବସକୁ ସ୍ୱାଗତ ଜଣାଉଛନ୍ତି, ଆଉ କେତେ ବା ଫୁଟିବାର ଦୁର୍ବାର ବାସନା ନେଇ ଉପରକୁ ମୁଣ୍ଡ ଟେକିଛନ୍ତି । କୃଷ୍ଣା ଆସି ଉଦ୍ୟାନସ୍ଥିତ ସରୋବର କୂଳରେ ଉପବେଶନ କଲା ।

ଦକ୍ଷିଣ ପବନରେ ଭାସି ଆସେ—କାର ଦାକ୍ଷିଣ୍ୟ । ଶୀତର ଶୀର୍ଣ୍ଣ ଡାଳରେ ଜୀର୍ଣ୍ଣ ପତ୍ର ଖସାଇ ଦେଇ ସବୁଜ ପ୍ରାଣ ଜାଗି ଉଠିଛି—ପ୍ରତି ବୃକ୍ଷ, ପ୍ରତି ପଲ୍ଲବରେ । ପକ୍ଷୀର କୂଜନ ଭାସି ଆସେ, ତହିଁରେ ମିଶି ଯାଏ— ପରିଚିତ ଏକ ମଧୁର କ୍ରନ୍ଦନତାନ ।

କଏ ଯେପରି ଦୂର ଦିଗନ୍ତରେ ଛନ୍ଦ ବୁଣି ଦିଏ—ସୁର୍ ତାଳ ଦିଏ । ପ୍ରାଣ ମଧ୍ୟରେ ଅନନ୍ତଚମିସ୍ତ ଆହ୍ୱାନ ଜାଗି ଉଠେ । ନୀରବ ରହିବାକୁ ଭଲ ଲାଗେ—ଆଖି ଖୋଲି ଦେଖିବାକୁ ଇଚ୍ଛା ହୁଏ ।

ଧୀରେ ଧୀରେ ଗୋଟିଏ ଗୋଟିଏ ଦିନ ଗ୍ଲଲ ଯାଇ ମହାଶୂନ୍ୟରେ ବିଲୀନ ହୁଏ । ତା ସହିତ ଦିନ ଦିନ କରି ବୟସ ବଢ଼େ ।

କାଲି ଯିଏ ଶିଶୁ ଥାଏ—ସଂସାରର ସୁଖ, ଦୁଃଖ, ଚିନ୍ତା ବା କ୍ଲିଷ୍ଟ ଯାହାକୁ ସ୍ପର୍ଶ କରିପାରି ନ ଥାଏ, ଆଜି ସେ କିଶୋରୀ । କାଲି ହୁଏତ ପୁଣି ସେ ଯୁବତୀ ହେବ । ଅନ୍ତରର ଉଦ୍ଦାମ ଗତି ପରିବର୍ତ୍ତିତ ହୋଇ ତାହା ହେବ ସ୍ଥିର ଓ ଅଚଞ୍ଚଳ । ଚକ୍ଷୁ କୋଣରେ ଜାଗି ଉଠିବ କେତେ ଅକୁହା କଥା । ହୃଦୟର ଭାଷା ପ୍ରକାଶିତ ହେବ— ଇଙ୍ଗୀତ ଓ କଟାକ୍ଷରେ ।

ନବ ଯୌବନା କୃଷ୍ଣାର ହୃଦୟରେ ଆଜି ଉଠିଛି ଏକ ଅବ୍ୟକ୍ତ ଝଞ୍ଜା । ଶତ ଚେଷ୍ଟା କଲେ ବି ସେ ତାର କୂଳ କିନାରା ପାଏ ନାହିଁ । ସମୟେ ସମୟେ ଦେହରେ ଲାଗେ ଚମକ । ତଡ଼ିତ ପ୍ରବାହ ଶରୀରର ଶିରା ପ୍ରଶିରାରେ ସଞ୍ଚରଣ କରି ଯାଏ । ତାର ଉତ୍ତର ସେ ଖୋଜି ପାଏ ନାହିଁ । ଦିଗନ୍ତ ବିସ୍ତାରୀ ଆକାଶ କୋଳରେ ତାରା ପରି କି ଏକ ସ୍ନିଗ୍ଧ ଆଲୋକ ତାର ଚିତ୍ତାକାଶରେ ଫୁଟି ଉଠେ । ଶିରା, ପ୍ରଶିରା, ଅସ୍ଥି, ମଜ୍ଜା ରକ୍ତ ଓ ମାଂସ ଏସବୁ ଗୁଡ଼ିକର ଚଞ୍ଚଳତା ଯେପରି ଚକ୍ଷୁ କୋଣରେ ଆତ୍ମପ୍ରକାଶ କରେ ।

ସହଚରୀମାନେ ଆସି ଉପସ୍ଥିତ ହେଲେ । କେତେ ହାସ୍ୟ କୌତୁକରେ ସରୋବର କୂଳ ମୁଖରିତ ହୋଇଉଠିଲା । ମାତ୍ର କୃଷ୍ଣାର ଏସବୁ ପ୍ରତି ଲକ୍ଷ୍ୟ ନାହିଁ । ମନ ତାର ହଜି ଯାଇଛି କି ଏକ ଅସୀମ ଶୂନ୍ୟତାରେ । କେତେବେଳେ ଆକାଶର ସୁନୀଳ ବକ୍ଷକୁ, କେତେବେଳେ ବା ସରୋବରର କୁବଳୟ କୋରକୁ ଗ୍ୱହିଁ ସେ ଦୀର୍ଘ ନିଶ୍ୱାସ ତ୍ୟାଗକରେ ।

ସଖିମାନେ ସରୋବରକୂଳ ସ୍ଥିତ ଉଦ୍ୟାନରୁ ପୁଷ୍ପ ଚୟନ କରନ୍ତି । ପବନରେ ସ୍ୱର ଲହରୀ ଭାସି ବୁଲେ—

ବାଆ ବହେ ଶିରି ଶିରି
ନ ଯିବୁ ଯମୁନା ତୀରି
କଦମ୍ବ ମୂଳରେ କାଳିଆ କହ୍ନେଇ ଉଭା-ହୋଇଛି ଲୋ,

ହାତରେ ବଇଁଶୀ ଧର ।
ଭରି ଯଉବନ ତୋର
ଦେଖିଲେ ନଟ ନାଗର
କି ମୋହନ ମନ୍ତ୍ର ମଞ୍ଜାଇ ଦେବ ସେ ତେବେଛୁ-ଗୁହିଁ ଲେ,
ମହତ ଦେବଟି ସାର ।
ଥରେ ଗଲେ ଗୋଡ଼ ଖସି
କାନ୍ଦୁଥିବୁ ହବା ନଣି
କଳଙ୍କ ବାଇଦ ବାଜିବ ଦେଶରେ ତୋ ନାମେ-ସହିଲେ,
କହିବେ ଟାହୁଲୀ କର ।

ଏ ସଂସାର କର୍ମମୟ । ଏଥିରେ ଯାହା ଚଳମାନ ତାହାର ନାମ ଜୀବନ । ଯାହା ଅପରିବର୍ତ୍ତମାନ ଅଥବା ନିଷ୍କ୍ରିୟ ତାହାର ନାମ ମୃତ୍ୟୁ ।

କୃଷ୍ଣାକୁ ଆଜି ଏସବୁ ଭଲ ଲାଗେ ନାହିଁ । ପୁତ୍ରହୀନ ପିତାଙ୍କର ସେ ଏକମାତ୍ର ପ୍ରତିଭୂ । ପିତାଙ୍କ ଅନ୍ତେ ତାକୁ ରାଜ୍ୟର ଦାୟିତ୍ୱ ସମ୍ଭାଳିବାକୁ ପଡ଼ିବ । ପିତାଙ୍କ ସୁନାମ ରକ୍ଷା ପାଇଁ ତାକୁ ଶତ୍ରୁମାନଙ୍କ ସହିତ ଯୁଦ୍ଧ କରିବାକୁ ହେବ । ଗଜପତିଙ୍କର ସିଂହାସନ ପ୍ରତି ତାର ଭକ୍ତି ଓ ଶ୍ରଦ୍ଧା ସେ ପ୍ରଦର୍ଶନ କରିବ । ଏହାହିଁ ତାର ଏକମାତ୍ର ଲକ୍ଷ୍ୟ ! ତେଣୁ ସହଚରୀମାନଙ୍କର ସଙ୍ଗୀତ, ପୁଷ୍ପ ସମ୍ଭାର ଅଥବା ପରିହାସ ସବୁ ଯେପରି ତା ନିକଟରେ ମୂଲ୍ୟହୀନ । ସେ ଚାହେଁ ଅଫୁରନ୍ତ ପ୍ରାଣ, ଉଚ୍ଛ୍ୱାସମୟ ଜୀବନ ଏବଂ ସାହସିକ ପଦକ୍ଷେପ ; ଠିକ ଏହି ଅରଣ୍ୟର ବୃକ୍ଷଲତାମାନଙ୍କ ପରି ।

ଅଙ୍କୁରଟି ବହୁ ସାଧ ସାଧନା ପରେ ଭୂମି ଭେଦ କରି ଉପରକୁ ଉଠେ । ମାତ୍ର ସେ ଦେଖେ, ତାର ଚତୁପାର୍ଶ୍ୱରେ ବିଶାଳଦ୍ରୁମ ଏବଂ ଗୁଳ୍ମ । ମୁକ୍ତ ପବନ କମ୍ବା ସୂର୍ଯ୍ୟ କିରଣ ପାଇବା ତା ଭାଗ୍ୟରେ ଘଟେ ନାହିଁ । ମାତ୍ର ସେ ନିରୁତ୍ସାହିତ ହୁଏ ନାହିଁ । ଉପରକୁ ଦୃଷ୍ଟି ରଖି ଶକ୍ତି ସଂଗ୍ରହ କରେ । ଆସେ ବର୍ଷା । ଫେନିଳ ଜଳ ରାଶିରେ ଅଙ୍କୁର ବୁଡ଼ି ଯାଏ । ପତ୍ରଗୁଡ଼ିକ ପଚି ଯାଇ ଖସି ପଡ଼େ । ପ୍ରବଳ ଜଳ ସ୍ରୋତରେ ମୂଳରୁ ମାଟି ମଧ୍ୟ ଧୋଇ ଯାଏ । ଚେରଗୁଡ଼ିକ ବାହାରକୁ ଦିଶେ । ତଥାପି ବଞ୍ଚିରହିବାର ଦୁର୍ବାର ବାସନା ନେଇ ସେ ନୂତନ ଭାବରେ ଶକ୍ତି ସଞ୍ଚୟ କରେ । ଏହାପରେ ଆସେ ଶରତ । ନଦୀର ଜଳ ସ୍ଥିର ହୋଇଯାଏ । ଗୋଳିଆ ପାଣି ପଟୁ ଅଜାଡ଼ି ହୁଏ । ଗୋଟିଏ ଦୁଇଟି ନବ ପଲ୍ଲବ ଅଙ୍କୁରର ଅଗ୍ର ଭାଗରେ ଦେଖା ହୁଏ ।

ହେମନ୍ତରେ ତାହା ଦୃଢ଼ୀଭୂତ ହୁଏ । ଶୀତର ଆଗମନରେ ପୁଣି ଶୀର୍ଣ୍ଣ ଡାଳରୁ ଜୀର୍ଣ୍ଣ ପତ୍ର ଖସି ପଡ଼େ, ମାତ୍ର ସେ ଦୃଢ଼ ଅବିଚଳିତ । ଏକ ଲକ୍ଷ୍ୟରେ ଚାହିଁ ରହେ ଆକାଶକୁ । ସବୁଜ ସମ୍ଭାରରେ ଧରାକୁ ହସାଇ ଆସେ ବସନ୍ତ । ଗୋଟିଏ ଦୁଇଟି କିଶଳୟ ଦେଖା-ଦିଏ । ସେ ଆଉ ଟିକିଏ ଉପରକୁ ମୁଣ୍ଡ ଟେକେ । ଗ୍ରୀଷ୍ମ ଋତୁର ପ୍ରଚଣ୍ଡ ତାପରେ ଧରଣୀ ଉତ୍ତପ୍ତ ହୁଏ । ଅଙ୍କୁରର ଉପରଚେରଗୁଡ଼ିକ ଶୁଖି ଯାଏ । ଦେହ ତାର ସିଝି ଯାଏ । ତଥାପି ସେ ବଞ୍ଚି ରହିବା ପାଇଁ ଅନ୍ତର ତଳକୁ ଚେର ବଢ଼ାଇଦିଏ ।

ଏହିପରି ବର୍ଷ, ମାସ, ଦିନ, ଦଣ୍ଡ ଅତିକ୍ରାନ୍ତ ହୁଏ । ଜୀବନ ଓ ମୃତ୍ୟୁ ସହିତ ନିରନ୍ତର ସଂଘର୍ଷ କରି କ୍ଷୁଦ୍ର ଅଙ୍କୁରଟି ବିଶାଳ ମହୀରୁହରେ ପରିଣତ ହୁଏ । ପାଖର ଗଛଗୁଡ଼ିକ ଆପେ ଆପେ ତାକୁ ବାଟ ଛାଡ଼ି ଦିଅନ୍ତି । ପରିଶେଷରେ ସେ ସୂର୍ଯ୍ୟଙ୍କର ସାନ୍ନିଧ୍ୟ ପାଏ ଏବଂ ଅନ୍ୟମାନଙ୍କ ସହିତ ସମକକ୍ଷ ହୋଇ ଠିଆ ହୁଏ ।

ଠିକ୍ ଏହିପରି ଏ ମାନବର ଜୀବନ ଏବଂ ଏହିପରି ତାର ଭାଗ୍ୟ ଲିପି । ମନୁଷ୍ୟ ଜନ୍ମ ହୁଏ କେତେ ଆଶା ଓ ଆକାଂକ୍ଷା ନେଇ । ମାତ୍ର ପ୍ରତି ମୁହୂର୍ତ୍ତରେ ତାକୁ ସଂଘର୍ଷ କରିବାକୁ ପଡ଼େ—ନିଜର ଭାଗ୍ୟ ଓ ଭବିଷ୍ୟତ ସହିତ । କେତେ ଉତ୍ଥାନ, ପତନ, ସରଳ ଓ ବନ୍ଧୁର ପଥରେ ଗତି କରି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସ୍ଥାନରେ ଯେ ତାକୁ ପହଞ୍ଚିବାକୁ ପଡ଼େ, ତାହାର କଣ ଇୟତ୍ତା ଅଛି ? ଏହାରି ନାମ ତ ଜୀବନ । ଯେଉଁଠି ସଂଘର୍ଷ ନାହିଁ, ସେଠରେ ଜୀବନର କି ମୂଲ୍ୟ ଅଛି ? ତାହା କେବଳ ଗତିହୀନ, ଏବଂ ଇଚ୍ଛାସହୀନ ଏକ ଜୀବନ— ଠିକ୍ ଗଡ଼ିଆ ବା ବାଟିରେ ଥିବା ଜଳ ସହିତ ସମାନ । କିଛିଦିନ ଆବଦ୍ଧ ରହିଲେ ତାହା ଦୁର୍ଗନ୍ଧ ହୋଇଯାଏ ଏବଂ ପରିଶେଷରେ ମାଛି ଓ ମଶାମାନଙ୍କର କ୍ରୀଡ଼ାସ୍ଥଳୀ ହୁଏ । ମାତ୍ର କୃଷ୍ଣା ଏସବୁ ଚାହେଁ ନାହିଁ । ଏହି ପୁଷ୍କରିଣୀର ସ୍ଥିର ଜଳ ପରି ସେ ଚାହେଁ ନାହିଁ—ତରଙ୍ଗହୀନ ଜୀବନ । ସେ ଚାହେଁ— ଉଦ୍ଦାମ ଗତିରେ ବହି ଯିବ, ମୃତ୍ୟୁର ମହାସମୁଦ୍ରରେ ମିଶି ଯିବା ପର୍ଯ୍ୟନ୍ତ । ତେଣୁ ଏ ପ୍ରକୃତିର ଆଭରଣ ଏବଂ ସଖିମାନଙ୍କର ପରିହାସ ତାକୁ ତୃପ୍ତି ଦେଇପାରେ ନାହିଁ । ବୃକ୍ଷ ଓ ଲତାର ଅନ୍ତରାଳ ସବୁଜ ପ୍ରାଣ ପରି ତା ହୃଦୟରେ ଦେଖା ଦିଏ ଏକ ବିଶ୍ରାମହୀନ—ମହାଜୀବନ । ସେ ମନେ ମନେ କହେ— 'ହେ କ୍ଳାନ୍ତ କ୍ଷମା କର । ପଥ ଅସୀମ ଏବଂ ଦୁର୍ଗମ । ମୋତେ ଯାତ୍ରା କରିବାକୁ ହେବ ।

"କ୍ଷୁରସ୍ୟ ଧାରା ନଶିତା ଦୂରତ୍ୟୟା
ଦୁର୍ଗଂ ପଥସ୍ତତ୍ କବୟୋ ବଦନ୍ତି ।"

କୃଷ୍ଣା ଡାକଲ ପ୍ରିୟା !

ମୁହୂର୍ତ୍ତିକରେ ସମସ୍ତ ଆନନ୍ଦ କୋଲାହଲର ଅବସାନ ଘଟିଲ । ସହଚରୀ ବଷ୍ଠ ପ୍ରିୟା ଆସି ତା ନକଟରେ ଉପସ୍ଥିତ ହେଲ ।

କୃଷ୍ଣା କହଲ— ତୁମ୍ଭେମାନେ ସମସ୍ତେ ପ୍ରସ୍ତୁତ ହୋଇ ପଡ । ଆଜ ମୃଗୟା ଉଦ୍ଦେଶ୍ୟରେ ଦୂର ସ୍ଥାନକୁ ଯାତ୍ରା କରବାକୁ ପଡ଼ବ । ହୁଏତ ଦନେ ଦୁଇଦନ ମଧ୍ୟ ବତ ଯାଇପାରେ । ସେହ ଅନୁପାତରେ ସମସ୍ତ ଦ୍ରବ୍ୟର ମଧ୍ୟ ଆୟୋଜନ କର । ମୁଁ ବାପାଙ୍କ ଠାରୁ ଅନୁମତ ନେଇ ତୁମ ସହତ ଖୁବ୍ ଶୀଘ୍ର ସାକ୍ଷାତ କରବ ।

ସହଚରୀମାନେ ଆଦେଶ ଶୁଣି ଚ଼ାଲଗଲେ ।

ତୁରଙ୍ଗାରୂଢ଼ ନାରୀବାହନୀ ଚ଼ାଲଛନ୍ତି । କଟିରେ କରବାଲ । କାନ୍ଧରେ ଧନୁ ଓ ତୂଣ । ହସ୍ତରେ ଭଲ୍ଲ । ପୃଷ୍ଠ ଦେଶରେ ଲମ୍ବମାନ ବେଣୀ । ସମସ୍ତଙ୍କର ଯୋଦ୍ଧୃ ବେଶ । ଅଶ୍ୱକ୍ଷୁରର ଶବ୍ଦ ସହତ ଶିବଙ୍କ ସ୍ତୋତ୍ରରେ ଗଗନ ପବନ ମୁଖରିତ ।

"ପ୍ରଭୁମୀଶ—ମନୀଷ—ମଶେଷଗୁଣଂ
ଗୁଣହୀନ-ମହେଶ-ଗରଭରଣଂ
ରଣ ନର୍ଜିତ-ଦୁର୍ଜୟ-ଦୈତ୍ୟପୁରଂ
ପ୍ରଣମାମି ଶିବଂ ଶିବ କଲ୍ପତରୁମ୍ ।୧
ଶଶ ଲାଞ୍ଛିତ-ରଞ୍ଜିତ-ସନ୍ମୁକୁଟଂ
କଟୀ ଲମ୍ବିତ-ସୁନ୍ଦର କୃତ୍ତିପଟମ୍
ସୁର ଶୈବଳିନୀ କୃତ-ପୂତଜଟଂ
ପ୍ରଣମାମି ଶିବଂ ଶିବ କଲ୍ପତରୁମ୍ । ୨ ।"

ଗଭୀର ଅରଣ୍ୟ ମଧ୍ୟରେ ଛାଉଣୀ ସ୍ଥାପନ କର ସମସ୍ତେ ଶିକାର ଉଦ୍ଦେଶ୍ୟରେ ବହିର୍ଗତ ହେଲେ । କୃଷ୍ଣା ଏକ କୃଷ୍ଣସାର ମୃଗ ଦେଖି ତା ପଛରେ ଅଶ୍ୱ ଝପଟାଇ ଦେଲ ।

ମୃଗ ପ୍ରାଣ ବିକଳରେ ଦଉଡ଼ୁଛି । କୃଷ୍ଣାର ଶର ତାକୁ ସ୍ପର୍ଶ କରି ପାରୁ ନାହିଁ । ନିଜର ପରାଜୟରେ ବ୍ୟଥିତା ହୋଇ ସେ ଆହୁରି ବେଗରେ ଅଶ୍ୱ ଚାଳନା କଲା । ସହଚରୀମାନେ ପଛରେ ପଡ଼ିଗଲେ ।

କୃଷ୍ଣସାର ନଗ୍ନ ପର୍ବତର ପାଦ ଦେଶରେ ଅଦୃଶ୍ୟ ହୋଇଗଲା ।

ଅଶ୍ୱ କ୍ଳାନ୍ତ— କୃଷ୍ଣା ଘର୍ମାକ୍ତ ।

ନିରୁତ୍ସାହିତା ହୋଇ ସେ ଅଶ୍ୱର ଡୋର ଟାଣି ଠିଆ କରାଇ ଦେଲା । ତା' ପରେ ସେହି ବସିବା ଅବସ୍ଥାରେ ଚତୁର୍ଦ୍ଦିଗକୁ ଦୃଷ୍ଟି ନିକ୍ଷେପ କଲା ।

ସୂର୍ଯ୍ୟ ସେତେବେଳେ ଅସ୍ତାଚଳରେ । ପଶ୍ଚିମ ଆକାଶ ରକ୍ତ ରଞ୍ଜିତ । ଶାଳ, ପିଆଶାଳ, ଶିଶୁ ଓ ଅଶନ ବୃକ୍ଷର ଶୀର୍ଷ ଦେଶରେ ଦିନକରଙ୍କର ଶେଷ କିରଣରେ ସ୍ପର୍ଶ ଲାଗି ରହିଛି । ଗୋଟିଏ ଦୁଇଟି ବସା ବାହୁଡ଼ା ପକ୍ଷୀ ଉଦାସ କରୁଣ ସ୍ୱରରେ କାକଳି ତୋଳି କୁଳାୟ ଅଭିମୁଖେ ଉଡ଼ି ଯାଉଛନ୍ତି ।

ହଠାତ୍ ତାର ଚକ୍ଷୁ ସ୍ଥିର ହୋଇଗଲା । ସେ ଦେଖିଲା—ଜଣେ ଯୁବକ ଏକାଗ୍ର ଭାବରେ ପଶ୍ଚିମ ଆକାଶକୁ ଚାହିଁ ସୂର୍ଯ୍ୟାସ୍ତର କମନୀୟ ଦୃଶ୍ୟ ଦେଖୁଛି । ଅଦୂରରେ ମହାବଳ ବ୍ୟାଘ୍ରଟିଏ ବୁଦା ଉହାଡ଼ରେ ରହି ତା ଆଡ଼କୁ ଲମ୍ଫ ଦେବାକୁ ଉଦ୍ୟମ କରୁଛି । ଆଉ ମୁହୂର୍ତ୍ତେ ବିଳମ୍ବ କଲେ ସର୍ବନାଶ ।

କୃଷ୍ଣା କ୍ଷିପ୍ର ଭାବରେ ଧନୁରେ ଶର ସନ୍ଧାନ କରି ବ୍ୟାଘ୍ରର ବକ୍ଷକୁ ନିକ୍ଷେପ କଲା ଏବଂ ପ୍ରଥମ ଶରଟି ଯଥା ସ୍ଥାନରେ ପଡ଼ିବା ସଙ୍ଗେ ସଙ୍ଗେ ଆଉ ଗୋଟିଏ ନିକ୍ଷେପ କଲା । ଶରଟି ବ୍ୟାଘ୍ରର ବକ୍ଷରେ ବିଦ୍ଧ ହେଲା । ବ୍ୟାଘ୍ର କରୁଣ ଚିତ୍କାର କରି ଭୂମିରେ ପତିତ ହେଲା ।

କୃଷ୍ଣା ଅଶ୍ୱରୁ ଅବତରଣ କରି ଧୀର ଭାବରେ ଯୁବକଙ୍କ ନିକଟକୁ ଗଲା । ଦେଖିଲା—ଯୁବକଟି ଜଣେ ଶିଳ୍ପୀ । ପାଖରେ ରଙ୍ଗ, ତୁଳୀ ଏବଂ ଭୂର୍ଜପତ୍ର ପଡ଼ିଛି । ତହିଁରେ ସୂର୍ଯ୍ୟାସ୍ତର ଏକ କମନୀୟ ଦୃଶ୍ୟ ।

ଯୁବକ ସେତେବେଳକୁ ବିବ୍ରତ । ମୁହୂର୍ତ୍ତକ ମଧ୍ୟରେ କଣ ଘଟିଗଲା ବୋଲି ସେ ବିସ୍ମିତ ଭାବରେ ଚାରି ଆଡ଼କୁ ଚାହୁଁଛି ।

କୃଷ୍ଣା ଧୀର ଭାବରେ ପ୍ରଶ୍ନ କଲା—ମହାଶୟଙ୍କର ନାମ ?

ଶିଳ୍ପୀ ଉତ୍ତର ଦେଲେ— ମୋହନ କୁମାର । ତାପରେ ସାମାନ୍ୟ ଆଳାପ ଆଲୋଚନା ପରେ ଦୂରରୁ ଘନ ଘନ ଶିଙ୍ଗାନାଦ ବାଜି ଉଠିଲା ।

କୃଷ୍ଣା ନିଜ କଣ୍ଠୀରୁ ଗମ୍ଭୀର ଶିଙ୍ଗର ଶିଙ୍ଗାଟିଏ ବାହାର କରି ବଜାଇ ଦେଲା ୯ଙ୍କ ଶିଳ୍ପୀକୁ ଅରଣ୍ୟଗଡକୁ ଯିବା ପାଇଁ ନିମନ୍ତ୍ରଣ ଜଣାଇ ଅଶ୍ୱ ପୃଷ୍ଠକୁ ଲମ୍ଫ ପ୍ରଦାନ କଲା । ଅଶ୍ୱ ମୁହୂର୍ତ୍ତିକ ମଧ୍ୟରେ ଅରଣ୍ୟର ଅନ୍ଧକାରରେ ଅଦୃଶ୍ୟ ହୋଇଗଲା ।

ମୋହନ ଗୃହିଁ ରହିଲା— ତାର ଗମନ ପଥକୁ ।

ପୁରୁଷମାନଙ୍କ ଅପେକ୍ଷା ନାରୀମାନଙ୍କର ମନ ବଡ଼ ଦୁର୍ବଳ । ନାରୀମାନଙ୍କ ପ୍ରତିଜ୍ଞା ପୁରୁଷମାନଙ୍କ ଅପେକ୍ଷା ଅଧିକ କ୍ଷଣ ଭଙ୍ଗୁର । ତାର ସ୍ଥାୟିତ୍ୱ ସ୍ୱଳ୍ପ କ୍ଷଣ । ଗଭୀର ଜଳଧାରା ବୁକୁରେ ଯେଉଁ ଶୈବାଳଦାମ ଆଚ୍ଛନ୍ନ ଥାଏ, ସେ କେବଳ ସାମୟିକ— ଚିରସ୍ଥାୟୀ ନୁହେଁ । ସ୍ରୋତ, ଜୁଆର କିମ୍ବା ବନ୍ୟା ଆସିଲେ ମୁହୂର୍ତ୍ତିରେ ସେଗୁଡିକ ଭସାଇ ନେଇ ଚାଲିଯାଏ । ଗଭୀର ସ୍ୱଚ୍ଛ ଜଳ ପୂର୍ବ ପରି ରହିଯାଏ । ଏ ସଂସାର ସାଗରରେ ନାରୀମାନଙ୍କ ଅବସ୍ଥା ଠିକ୍ ସେହିପରି । ଗୋଟାଏ ରାତିର ବ୍ୟବଧାନରେ କିଶୋରୀର ଅର୍ଦ୍ଧସ୍ଫୁଟ ଗୋଟାଏ ମନ ଭରା ଯୁବତୀ ହୋଇ ଉଠେ । ଉଦ୍ଦାମପ୍ରବାହ ସ୍ଥିର ଓ ସଂଯତ ହୋଇଯାଏ । ଭୁଲିଯାଏ ସେ ପୁରାତନ ପୃଥିବୀ— ପୁରୁଣା ପରିବେଶ । ତାର ସମସ୍ତ ଇଚ୍ଛା, ଅନିଚ୍ଛା, ଆଶା ଓ ଆକାଂକ୍ଷାର ପରିସମାପ୍ତି ଘଟେ । ଏହା ପୂର୍ବରୁ ତାର ଅଉ ଗୋଟିଏ ଯେ ଇଚ୍ଛା ଥିଲା ଏବଂ ଅଉ ଏକ ରଙ୍ଗରେ ଯେ ସେ ନିଜକୁ ରଙ୍ଗାଇ ଥିଲା, ତାହା ସଂପୂର୍ଣ୍ଣ ରୂପେ ନିଶ୍ଚିହ୍ନ ହୋଇ-ଯାଏ । ତାପରେ କ୍ରମଶଃ ତାହା ପରିବର୍ତ୍ତିତ ହୁଏ । ପ୍ରିୟା ସମାଧି ଲଭ କରେ ମାତୃତ୍ୱ ମଧ୍ୟରେ, ଗୃହିଣୀ ଭୁଲେ ବଧୂକୁ ।

କୃଷ୍ଣା ଭୁଲି ପାରିଲା ନାହିଁ ମୋହନକୁ । ସେହି ନିର୍ମିଂକର ଦର୍ଶନରେ ତା ହୃଦୟରେ ଜାଗି ଉଠିଲା କି ଏକ ଅଶ୍ରୁତ ପୂର୍ବ ଜଗତର ଚିତ୍ର । ଶୟନେ, ସ୍ୱପନେ ନିଶି, ଜାଗରଣେ ଅହରହ ତାହା ଚିତ୍ରପଟ ପରି ପ୍ରତିଭାତ ହେଲା । ଦେହରେ ରୋମାଞ୍ଚ ଜାତ ହେଲା । ସେ ବୁଝି ପାରିଲା ନାହିଁ—ଶିରାରେ ଶିରାରେ ଏ କି ପ୍ରବାହ । ରକ୍ତରେ ଏ କି ଉନ୍ମାଦନା—ଆନନ୍ଦ, ବେଦନା, ନା ଦୁହେଁଯାକ ।

ଏହାରି ନାମ ବୋଧହୁଏ ପ୍ରଥମ ଯୌବନ । ଅନାହୂତ ଭାବରେ ସେ ଆସି

ଦେଖା ଦଏ । ଅନ୍ତରର ଅନ୍ତଃ ସ୍ଥଳରେ ଭରିଯାଏ କି ଏକ ପୁଲକର ଆସ୍ୱାଦ । କୀଟ-ଜନ୍ତୁ କୀଟ ପତଙ୍ଗ କେହି ତା ନିକଟରୁ ଉଦ୍ଧାର ପାଇ ପାରନ୍ତି ନାହିଁ । ସେ ଅରୂପ, ମାତ୍ର ବ୍ୟକ୍ତ ହୁଏ ପ୍ରେମ ରୂପରେ । ସ୍ରୋତସ୍ୱିନୀ କଳ କଳ ନାଦରେ ସାଗର ସଙ୍ଗମ ଲାଗି ଗତି କରି ପରି ସେ ଧାଏଁ ପ୍ରିୟ ମିଳନ ଆଶାରେ । ଯେତେବେଳେ ତାର ଉଦ୍ଦାମ ଗତିକୁ ରୋଧ କରିବା ଲାଗି କେହି ଯଦି ଉଦ୍ୟମ କରେ, ତେବେ ସେ ନିଜେ ପ୍ରବଳ ବେଗରେ ଖସି ଯାଏ ସେହି ଜଳସ୍ରୋତରେ ।

ଆର୍ଯ୍ୟ ଋଷି କହି ଯାଇଛନ୍ତି— ପ୍ରେମ ସ୍ୱର୍ଗୀୟ ବସ୍ତୁ । ଏହିଁରେ ଆବିଳତା ନାହିଁ, କି ବିଶୁଦ୍ଧ ପ୍ରେମର ପ୍ରତିଦାନ ମଧ୍ୟ ନାହିଁ । ସେ ଦୁର୍ଲଭ ଓ ଅକ୍ଷୟ । ସାଗର ସରିତ ପରି ତାହା ପ୍ରେମିକ ପ୍ରେମିକାଙ୍କୁ ଏକୀଭୂତ କରିଦଏ । ସେଥିପାଇଁ ଚନ୍ଦ୍ର-କୁମୁଦ ବା ମିହିର-ପଙ୍କଜିନୀ ମଧ୍ୟରେ ଦୃଷ୍ଟ୍ୟାଗତ ଅନନ୍ତ ଗଗନର ବ୍ୟବଧାନ ଥିଲେ ମଧ୍ୟ ପ୍ରେମର ଅଲକ୍ଷ୍ୟ ଯାଦୁ ଦଣ୍ଡରେ ତାହା ମୁହୂର୍ତ୍ତିକରେ ଦୂରୀଭୂତ ହୋଇଯାଏ ।

ପ୍ରେମ ପୁଣି ସାମ୍ୟ ନୀତି ଶିକ୍ଷା ଦଏ । ଏଥିରେ ଇତର,-ମହତ, ବଡ଼-ସାନ ଜାତି-ଧର୍ମର ବାରଣ ନ ଥାଏ । ଏଇଥିପାଇଁ ତ ଇନ୍ଦୁ-ସିନ୍ଧୁ, ବାରିଦ-ଚାତକ ଓ ଅନଲ-ଅନିଳର ଶାଶ୍ୱତ ପ୍ରେମ ରହିଛି ।

ଦୃଷ୍ଟିରେ ଦୃଷ୍ଟି ମିଳିତ ହେବା ମାତ୍ରେ ତାହା ଅନ୍ତରର ଅନ୍ତଃସ୍ଥଳରେ ଧ୍ୱନିତ ହୁଏ କି ଏକ ପୁଲକର ଆସ୍ୱାଦ ପାଇଁ ହୃଦୟରେ ରୋମାଞ୍ଚ ଜାତ ହୁଏ । ତାହା ଆତ୍ମ ପ୍ରକାଶ କରେ ସ୍ମିତ ହାସ୍ୟରେ ନେତ୍ରକୋଣରେ ହୃଦୟର ଅବ୍ୟକ୍ତ ବ୍ୟଥା ପ୍ରକାଶିତ ହୁଏ । ଏହା ପରେ ପୁନର୍ମିଳନ ଆଶାରେ ବଢ଼ି ଚାଲେ ଆଗ୍ରହ ଓ ଉତ୍କଣ୍ଠା । ମିଳନର ସମୟ ଯେତେ ଘୁଞ୍ଚି ଘୁଞ୍ଚି ଯାଏ, ପାଇବାର ଇଚ୍ଛା ସେତେ ବଳବତ୍ତର ହୁଏ । ଶୟନେ ସ୍ୱପନେ କେବଳ ସେହି ଗୋଟିଏ ରୂପ ଚିନ୍ତା କରିବାକୁ ଭଲ ଲାଗେ । କୌଣସି କାମରେ ମନ ଲାଗେ ନାହିଁ । କଣ ଯେପରି ଭାବିବାକୁ ଯାଇ ସବୁ ଗୋଳମାଳ ହୋଇ ଯାଏ । ବିରହ ବ୍ୟଥିତା ନାରୀର ଦୃଷ୍ଟିରେ ଉଦାସୀନତା ଛାଇଯାଏ । ସେ କେତେ-ବେଳେ ଶୂନ୍ୟ ଆକାଶ ବକ୍ଷକୁ, କେତେବେଳେ ବା ଦୂର ବନ ଭୂମିକୁ ଚାହିଁ ଦୀର୍ଘ ନିଶ୍ୱାସ ତ୍ୟାଗ କରେ । ପ୍ରିୟର ଆଗମନ ପ୍ରତୀକ୍ଷାରେ ଆକୁଳ ନୟନରେ ବସି ରହିବାକୁ ଭଲ ଲାଗେ । କ୍ରମେ ଉତ୍କଣ୍ଠା ଏତେ ଗଭୀର ହୁଏ ଯେ ମନର ମଣିଷକୁ ପାଇବା ପାଇଁ ସେ ସହଚରୀମାନଙ୍କର ଗୋପନ ସାହାଯ୍ୟ ଭିକ୍ଷା କରେ । ସେମାନଙ୍କ ନିକଟରେ ମନର କଥା କହି କହାକହି କରେ । ଶେଷରେ ମିଳନ । ମାତ୍ର

ଏତେବେଳେ ନାରୀ ଯଦି ପୁରୁଷ ଦ୍ୱାରା ପ୍ରତ୍ୟାଖ୍ୟାତ ହୁଏ, ତେବେ ବନ୍ୟ ପଶୁ ପରି ଉନ୍ମତ୍ତ ହୋଇପଡ଼େ । ତାର ହିତାହିତ ଜ୍ଞାନ ଲୋପ ପାଇଯାଏ । ଚରମ ପ୍ରତିଶୋଧ ନିଏ ଚିରନ୍ତନ ନାରୀ । ଶ୍ରଦ୍ଧେୟ ବ୍ୟକ୍ତିକୁ ଅଶ୍ରଦ୍ଧା କରିବାକୁ ସେ ପଶ୍ଚାତପଦ ହୁଏ ନାହିଁ ।

ଫୁଲ ଭିତରେ ମଧୁ ଓ ସୌରଭ ସହିତ କୀଟ ମଧ୍ୟ ଥାଏ । ସୌରଭ ଲୋଭରେ ଆଘ୍ରାଣ କଲେ ସମୟେ ସମୟେ ଯେପରି କୀଟର ଦଂଶନ ସହ୍ୟ କରିବାକୁ ପଡ଼େ, ସେହିପରି ଯେଉଁ ପ୍ରେମ ଜୀବନ ମରୁରେ ଉଦ୍ୟାନ ସୃଷ୍ଟି କରିପାରେ, ବ୍ୟାହତ ହେଲେ ତାହା ପୁଣି ଶାଣିତ ଛୁରିକା ପରି ଜୀବନ ନାଶ କରେ । ଠିକ୍ ଏହିପରି ଏକ ଅବସ୍ଥା ଘଟିଥିଲା ସତ୍ୟ ଯୁଗରେ । ସେ ବ୍ୟାହତ ପ୍ରେମର ପ୍ରତିଶୋଧ ସ୍ପୃହା ଜାଗିଥିଲା ଶୁକ୍ରଙ୍କ କନ୍ୟା ଦେବଜାନୀଙ୍କ ହୃଦୟରେ । ତାର ଶିକାର ହୋଇଥିଲା ଦେବଗୁରୁ ବୃହସ୍ପତିଙ୍କ ପୁତ୍ର କଚ ।

ଦେବାସୁର ଯୁଦ୍ଧ ସମୟର କଥା । ଦିବସର ଯୁଦ୍ଧ ବେଳେ ଯେଉଁ ଦେବ ସୈନ୍ୟମାନେ ମୃତାହତ ହୁଅନ୍ତି, ଦେବଗୁରୁ ବୃହସ୍ପତି ସେମାନଙ୍କୁ ବିଶଲ୍ୟକରଣୀ ଔଷଧ ଦ୍ୱାରା ଆରୋଗ୍ୟ କରନ୍ତି । ପର ଦିବସରେ ସୈନ୍ୟମାନେ ପୁଣି ନୂତନ ଭାବରେ ଆସି ଯୁଦ୍ଧରେ ଯୋଗ ଦିଅନ୍ତି । ଯୁଦ୍ଧ କେବଳ ଏକ ଦୁଶ୍ଚିନ୍ତା ହୋଇରହେ । ଦୈତ୍ୟମାନେ ଏହା ଜାଣିପାରି ଔଷଧ ଥିବା ପର୍ବତକୁ ନେଇ ସମୁଦ୍ର ମଧ୍ୟରେ ନିକ୍ଷେପ କଲେ । ଦେବତାମାନେ ଏହାପରେ ଯୁଦ୍ଧରେ ପରାସ୍ତ ହୋଇ ପୃଷ୍ଠଭଙ୍ଗ ଦେଲେ । ଅସୁରମାନେ ଗୁରୁ ଶୁକ୍ରଙ୍କ ପରାମର୍ଶ କ୍ରମେ ସ୍ୱର୍ଗ, ମର୍ତ୍ତ୍ୟ ଏବଂ ପାତାଳରେ ପ୍ରଭୁତ୍ୱ ବିସ୍ତାର କଲେ ।

ଦେବସଭା ଆହୂତ ହେଲା । ରାକ୍ଷସମାନଙ୍କୁ କିପରି ଯୁଦ୍ଧରେ ପରାସ୍ତ କରିବାକୁ ହେବ, ସେ ବିଷୟରେ ବହୁ ଆଲୋଚନା ହେଲା । ମାତ୍ର କେହି କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରିଲେ ନାହିଁ । ଶେଷରେ ଦେବତାମାନେ ବିଷ୍ଣୁଙ୍କର ସାହାଯ୍ୟ ଭିକ୍ଷା କଲେ ।

ବିଷ୍ଣୁ କହିଲେ ଦେବଗଣ ! ବର୍ତ୍ତମାନ ଆପଣମାନଙ୍କ ନିକଟରେ ଦୁଇଟି ଉପାୟ ଅଛି । ଗୋଟିଏ ହେଉଛି— ଶୁକ୍ରଙ୍କୁ ଦୈତ୍ୟଙ୍କ ନିକଟରୁ ଅପସାରଣ ଏବଂ ଦ୍ୱିତୀୟଟି ହେଉଛି— ମୃତ୍ୟୁ ସଞ୍ଜିବନୀ ବିଦ୍ୟା ଆହରଣ । ପ୍ରଥମ ପ୍ରସ୍ତାବଟି ବର୍ତ୍ତମାନ ଦେବତାମାନଙ୍କ ପକ୍ଷେ ସମ୍ଭବ ନୁହେଁ । କାରଣ ଶୁକ୍ର ଦୈତ୍ୟମାନଙ୍କ ପୃଷ୍ଠ କର୍ତ୍ତୃତ୍ୱରେ ।

ତାପରେ ଦ୍ୱିତୀୟ ପ୍ରଶ୍ନ ହେଉଛି—ମୃତ୍ୟୁ ସଞ୍ଜିବନୀ ବିଦ୍ୟା । ସେ ମହାଧନ ମଧ୍ୟ ଅଛି— ସେହି ଦୈତ୍ୟଗୁରୁ ଶୁକ୍ରଙ୍କ ନିକଟରେ । ଯଦି କେହି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରି ତାହା ଶିକ୍ଷା କରିପାରିବେ, ତେବେ ଦେବତାମାନଙ୍କର ବିଜୟ ସୁନିଶ୍ଚିତ ।

ଦେବରାଜ ପ୍ରମାଦ ଗଣିଲେ । ଦୈତ୍ୟମାନଙ୍କ ସହିତ ମିଶି ଶୁକ୍ରଙ୍କ ନିକଟରୁ ବିଦ୍ୟା ଶିକ୍ଷା କଣ୍ଟକ ଦୁର୍ଗରୁ କେତକୀ ଆହରଣ କରିବା ଅପେକ୍ଷା କୌଣସି ଗୁଣରେ ନ୍ୟୂନ ନୁହେଁ । କାରଣ ଏହାଦ୍ୱାରା କଣ୍ଟକର ତୀବ୍ର ଦଂଶନ ସହ୍ୟ କରିବାକୁ ହେବ, ବିଷାକ୍ତ କୀଟ ପତଙ୍ଗ ଏବଂ ସର୍ପମାନଙ୍କର ଦୌରାତ୍ମ୍ୟ ମଧ୍ୟ କମ୍ ଭୋଗ କରିବାକୁ ପଡ଼ିବ ନାହିଁ । ଏଥିପାଇଁ ଲୋଡ଼ା—ସାହସ, ଧୈର୍ଯ୍ୟ, ସେବା, ଦୟା ଓ ତିତିକ୍ଷା ପ୍ରଭୃତି ନୈସର୍ଗିକ ଗୁଣ । ଦେବତାମାନେ ପରସ୍ପରର ମୁହଁକୁ ଚାହିଁଲେ । କେହି ସେଠାକୁ ଯିବାକୁ ସାହସ କଲେ ନାହିଁ । ପରିଶେଷରେ ବୃହସ୍ପତିଙ୍କ ପୁତ୍ର କଚ ବିନମ୍ର ଭାବରେ କହିଲେ— ଦେବରାଜ, ଆପଣ ଯଦି ଅନୁମତି ଦେବେ, ତେବେ ମୁଁ ଶୁକ୍ରଙ୍କ ନିକଟକୁ ବିଦ୍ୟା ଶିକ୍ଷା ପାଇଁ ଯାତ୍ରା କରିବ ।

ଦେବରାଜ ସାଗ୍ରହରେ ସ୍ୱୀକୃତି ଦେଲେ । କଚ ଏକ ବ୍ରାହ୍ମଣ ବାଳକ ବେଶରେ ଶୁକ୍ରଙ୍କର ଶିଷ୍ୟତ୍ୱ ଗ୍ରହଣ ପାଇଁ ଯାତ୍ରା କଲେ ।

ସେଦିନ ଥିଲା ବସନ୍ତର ଏକ ସ୍ୱର୍ଣ୍ଣିମ ସନ୍ଧ୍ୟା । ଅପରାହ୍ଣର ମ୍ଲାନ ଆଲୋକ ନଇଁ ଆସୁଥିଲା ବନବୀଥି ତଳେ । ବସା ବାହୁଡ଼ା ପକ୍ଷୀଟିଏ ଉଦାସ କରୁଣ ସ୍ୱରରେ କାକଳି ତୋଳି ଉଡ଼ି ଯାଉଥିଲା । ସନ୍ଧ୍ୟାଗମର ଅପୂର୍ବ ବର୍ଣ୍ଣାଳୀରେ ପଶ୍ଚିମ ଆକାଶ ବିଚହିତ ପବନରେ ମନ ମତାଣିଆ ପୁଷ୍ପର ସୌରଭ । ରୌଦ୍ରସିକ୍ତ ହଳଦିଆ ପତ୍ର ଝଡ଼ି ପଡ଼ୁଥିଲା ଶିରି ଶିରି ପବନରେ ।

କଚ ରସାଲ ଦ୍ରୁମରେ ଦେହ ଢାଳିଦେଇ ବେଦାଧ୍ୟୟନରେ ମନୋନିବେଶ କରିଥିଲା । ବେଦର ଭାଷ୍ୟ ସହିତ ମନ ତାର ହଜି ଯାଇଥିଲା କେଉଁ ଏକ ଅଜ୍ଞାତ ରାଜ୍ୟରେ ।

ଦେବଯାନୀ ଆସିଥିଲା ପୁଷ୍ପଚୟନ ପାଇଁ ଉଦ୍ୟାନକୁ । ଠିକ ଏତିକବେଳେ ବୀଣା ବିନିନ୍ଦିତ କଣ୍ଠରେ ଭାସି ଆସିଲା—

"ଓଁ ବାଙ୍ମେ ମନସି ପ୍ରତିଷ୍ଠାତା
ମନୋମେ ବାଚି ପ୍ରତିଷ୍ଠିତ
ମାବିରାବୀର୍ମ ଏଧି ବେଦସ୍ୟ ମ ଆଣିସ୍ଥଂ

ଶ୍ରୁତମ ମେ ମା ପ୍ରହାସୀଃ
ଅନେନ ଧୀତେନା ହୋ ରାତ୍ରାନ୍ ।
ସଂଦଧାମ୍ୟୃତଂ ବଦଷ୍ୟାମି, ସତ୍ୟଂ ବଦଷ୍ୟାମି,
ତନ୍ମାମବତୁ, ତଦ୍ ବକ୍ତାରମବତୁ, ଅବତୁମାମ୍
ଅବତୁ ବକ୍ତାରମବତୁ ବକ୍ତାରମ୍ ।''

ହେ ସଚ୍ଚିଦାନନ୍ଦ ପରମାତ୍ମନ ! ମୋର ମନ ଏବଂ ବାଣୀ ଦୁହେଁ ଏକ ହୋଇଯାଆନ୍ତୁ । ସେ ଦୁହେଁ ମୋତେ ବେଦ ବିଷୟକ ଜ୍ଞାନ ପ୍ରାପ୍ତି କରାନ୍ତୁ । ଗୁରୁ ମୁଖରୁ ଶୁଣିଥିବା ଜ୍ଞାନ ଏବଂ ଅନୁଭବରେ ଆସିଥିବା ଜ୍ଞାନ ମୋତେ ତ୍ୟାଗ ନ କରୁ । ମୋର ଇଚ୍ଛା ରାତିଦିନ ମୁଁ ନିରନ୍ତର ବ୍ରହ୍ମବିଦ୍ୟାର ପଠନ ଏବଂ ଚିନ୍ତନ କରୁଥାଏ । ମୁଁ ବାଣୀଦ୍ଵାରା ଶ୍ରେଷ୍ଠ ଶବ୍ଦର ଉଚ୍ଚାରଣ କରିବି, ସର୍ବଦା ସତ୍ୟ କହିବି । ପରଂବ୍ରହ୍ମ ପରମାତ୍ମା ମୋତେ ରକ୍ଷାକରନ୍ତୁ, ମୋତେ ବ୍ରହ୍ମବିଦ୍ୟା ଶିଖାଇଥିବା ଆଚାର୍ଯ୍ୟଙ୍କୁ ମଧ୍ୟ ରକ୍ଷା କରନ୍ତୁ । ଆଧ୍ୟାତ୍ମିକ, ଆଧିଦୈବିକ, ଓ ଆଧିଭୌତିକ ତିନି ତାପର ଶାନ୍ତି ହେଉ ।

ଦେବଯାନୀ ମୁହୂର୍ତ୍ତେ ଠିଆ ହୋଇ ଶୁଣିଲି । ତାପରେ ପଦ୍ମତୋଳାରେ ଆକୃଷ୍ଟା ନାଗୁଣୀ ପରି ଧୀରେ ଧୀରେ ଶବ୍ଦ ଶୁଭୁଥିବା ଦିଗକୁ ଗତି କଲା ।

କଚର ଏସବୁ ପ୍ରତି ଲକ୍ଷ୍ୟ ନାହିଁ । ସେ ବେଦାଧ୍ୟୟନରେ ନିବିଷ୍ଟ ।

ଦେବଯାନୀ ମୁହୂର୍ତ୍ତେ ମାତ୍ର ନିରୀକ୍ଷଣ କରି ସଂପୂର୍ଣ୍ଣ ରୂପେ ଆତ୍ମବିସ୍ମୃତା ହୋଇପଡ଼ିଲା । ତାପରେ ଧୀରେ ଧୀରେ ତା ନିକଟରେ ଦଣ୍ଡାୟମାନ ହେଲା ।

କଚର ଧ୍ୟାନ ଭଗ୍ନ ହେଲା । ସେ ଦେବଯାନୀକୁ ଚାହିଁ ବିସ୍ମିତ ଭାବରେ ପ୍ରଶ୍ନ କଲା—କିଏ ତୁମେ ଦେବୀ ?

ଏକ ଚଟୁଳ କଟାକ୍ଷ ନିକ୍ଷେପ କରି ଦେବଯାନୀ କହିଲା—ମୁଁ ଶୁକ୍ରାଚାର୍ଯ୍ୟାଙ୍କ କନ୍ୟା ଦେବଯାନୀ । ଆଉ ଆପଣ······?

ମୁଁ ଆଚାର୍ଯ୍ୟ ମହାଶୟଙ୍କର ଜଣେ ନଗଣ୍ୟ ଶିଷ୍ୟ—କଚ ଉତ୍ତର ଦେଲା ।

ଠିକ୍ ଏତିକିବେଳେ ରସାଳ ଶାଖାରେ ଚଞ୍ଚଳ କଣ୍ଠରେ ଡାକଦେଇ ପ୍ରେମିକାକୁ ଖୋଜିଲା—ଅଶାନ୍ତ ବିରହୀ ଏକ କୋକିଳ । ସେ ଚଞ୍ଚଳ ଡାକ ଶୁଣି ଦେବଯାନୀ ବିହ୍ୱଳ ହୋଇପଡ଼ିଲା । ମୁଗ୍‌ଧ ଦୃଷ୍ଟିରେ ଚାହିଁ ରହିଲା—କଚର ମୁଖାରବିନ୍ଦକୁ । ଆତ୍ମ ବିସ୍ମୃତ କଚର ଦୃଷ୍ଟି ମଧ୍ୟ ନିବଦ୍ଧ ହୋଇଥିଲା ଲୀଳା ଚପଳାର ମୁଗ୍‌ଧାନନରେ । ନିକ୍ଷରେ ଚକ୍ଷୁ ମିଳିତ ହେଲା ।

ସୂର୍ଯ୍ୟ ସେତେବେଳେ ଅସ୍ତାଚଳରେ । ତାଙ୍କର ପ୍ରଜ୍ଜ୍ୱଳ ଲୋହିତ ରାଗରେ କେବଳ ପୃଥିବୀ ନୁହେଁ; ଧରଣୀର ପ୍ରତ୍ୟେକ ଧୂଳିକଣା ରାଗ ରଞ୍ଜିତ । ସେ ଆଲୋକରେ ପରିମ୍ଳାତା, ଅନ୍ତରର ଗୋପନ ହର୍ଷୋଚ୍ଛ୍ୱାସରେ ଉଦ୍‌ବେଳିତା ଦେବଯାନୀର ଅର୍ଦ୍ଧବନତ ଚକ୍ଷୁର ଦୃଷ୍ଟି ସମ୍ପୂର୍ଣ୍ଣ ରୂପେ ମୃତ୍ତିକା ଲଗ୍ନ ହୋଇପଡ଼ିଲା । ଲଜ୍ଜା ବିଜଡ଼ିତ ମୁଖ ପାଟଳବର୍ଣ୍ଣ ଧାରଣ କଲା ।

ଅସ୍ତଗାମୀ ସୂର୍ଯ୍ୟଙ୍କର ରକ୍ତରାଗ ରଶ୍ମି ତହିଁରେ ପତିତ ହୋଇ ମନେ ହେଲା—ସତେ ଯେପରି ଉଦାକର ସେଠାରେ ବନ୍ଧ ହୋଇଛନ୍ତି, ମଧୁପାନରେ ପ୍ରମତ୍ତ ମଧୁକରପରି ।

ପ୍ରଥମ ଦର୍ଶନରେ ପ୍ରେମର ବୀଜ ହୃଦୟ କ୍ଷେତ୍ରରେ ପ୍ରୋଥିତ ହେଲା । କ୍ରମେ ତହିଁରୁ ଉଦ୍‌ଗତ ଅଙ୍କୁରରେ ପଲ୍ଲବ ଓ ଶାଖା ଜାତ ହୋଇ ତାହା ମହୀରୁହରେ ପରିଣତ ହେଲା ।

ଏହା ପରେ ଦିବସ ଯାଇ ଦିବସ ଆସିଲା । ଭଗବାନ ମରୀଚିମାଳୀ ଅବିଶ୍ରାନ୍ତ ଗତିରେ କେତେ ଥର ପୃଥିବୀ ପ୍ରଦକ୍ଷିଣ କଲେ । ଆକାଶଚୁମ୍ବୀ ପାହାଡ଼ ଏବଂ ଶାଳବନ ମଧ୍ୟରେ ଥିବା ଉପତ୍ୟକାରେ କେତେ ମନୁଷ୍ୟ ଦିବସର ଆଲୋକରେ ବିଚରଣ କଲେ । ତାପରେ ଆଦିମ ବନ୍ୟ ରାତ୍ରି ଆସିଲା ଆରଣ୍ୟକ ପରିବେଶରେ । ଦିବସରେ ଯାହା ମନୁଷ୍ୟର କ୍ରୀଡ଼ାସ୍ଥଳୀ ଥିଲା, ରାତ୍ରିରେ ତାହା ଶ୍ୱାପଦମାନଙ୍କର ଲୀଳାଭୂମି ହେଲା । ତାରାଗୁଡ଼ିକ ଆକାଶର ମଧ୍ୟ ଭାଗରେ ଜଳି ଉଠିଲେ । ପଥର ଖୋଲରେ ଜମି ଉଠିଲା ପୁଞ୍ଜ ପୁଞ୍ଜ ଅନ୍ଧକାର ।

ଜୀବନର ସମସ୍ତ ପ୍ରାପ୍ୟ ମଧ୍ୟରେ କାହାରି ମନର ନିଃଶେଷ ଭଲ ପାଇବା ହେଉଛି — ପରମ ପ୍ରାପ୍ୟ । ଯାହାକି ମନୁଷ୍ୟର ଏକ ଶ୍ରେଷ୍ଠ ସମ୍ପଦ । ତାହା ମନୁଷ୍ୟକୁ ବଞ୍ଚାଇ ରଖେ ଏବଂ ପୃଥିବୀର ରୂପ, ରଙ୍ଗ ଓ ବର୍ଣ୍ଣ ମଧ୍ୟରେ ସଜୀବତା ଦାନ କରେ । ତାହା ନ ଥିଲେ ଏ ପୃଥିବୀ ଦୁଃଖମୟ ହୋଇଥାଆନ୍ତା, ସମସ୍ତେ ଏକ ସ୍ଥାନରେ ବସି କାନ୍ଦଣାର ରୋଳ ତୋଳନ୍ତେ ।

କଚ ସେହି ଅନୁରାଗ ପାଇଥିଲା ଦେବଯାନୀ ନିକଟରୁ ଏବଂ ତାହାହିଁ ତାକୁ ଉଦ୍ଧାର ଆଣିଥିଲା ବାରମ୍ବାର ମୃତ୍ୟୁର ଦ୍ୱାରଦେଶରୁ । କଚ ଓ ଦେବଯାନୀଙ୍କର ପରସ୍ପର ପ୍ରତି ଅନୁରକ୍ତି ଦୈତ୍ୟ ପୁତ୍ରମାନଙ୍କ ମନରେ ଜାଳି ଦେଇଥିଲା ଈର୍ଷାର ଅନଳ । ସେମାନେ ବାରମ୍ବାର ତାକୁ ହତ୍ୟା କରିଥିଲେ । ମାତ୍ର ଦେବଯାନୀଙ୍କ

ଦୁର୍ଲ୍ଲଭ ପ୍ରେମ ବଳରେ ସେ ପୁଣି ବଞ୍ଚି ଯାଇଥିଲ । ପରିଶେଷରେ କ୍ରୂରକର୍ମା ରାକ୍ଷସମାନେ ପୁଣି ଥରେ ତାକୁ ହତ୍ୟା କରି ଶୁକ୍ରଙ୍କୁ ରାନ୍ଧି ଖୁଆଇ ଦେଲେ । କଚକୁ ନ ଦେଖି ଦେବଯାନୀ ବିକଳ ହୋଇପଡ଼ିଲ । କନ୍ୟାର ଏ ପ୍ରକାର ବିକଳ ସହ୍ୟ କରି ନ ପାରି ଶୁକ୍ର ଚିନ୍ତିତ ହୋଇପଡ଼ିଲେ ଓ ପରେ ଧ୍ୟାନରେ ଜାଣି ପାରିଲେ ଯେ ଦୈତ୍ୟମାନେ ତାଙ୍କୁ କଚର ମାଂସ ଖୁଆଇ ଦେଇଛନ୍ତି । ତେଣୁ ସେ ଗର୍ଭସ୍ଥ କଚକୁ ମୃତ୍ୟୁସଞ୍ଜୀବନୀ ବିଦ୍ୟା ଶିଖାଇ ଗର୍ଭରୁ ବହିର୍ଗତ ହେବାକୁ ଆଦେଶ ଦେଲେ । କଚ ନିଜର ଜୀବନ ଏବଂ ବିଦ୍ୟା ଉଭୟେ ଲଭ କଲେ ।

ପରିଶେଷରେ ସେହି ଚରମ ପରୀକ୍ଷାର ଦିବସ ଉପସ୍ଥିତ ହେଲ । ଦେବଯାନୀ କଚଙ୍କ ନିକଟରେ ପ୍ରଣୟ ନିବେଦନ କଲେ ।

କଚ ଉତ୍ତର ଦେଲେ—ଦେବୀ ! ତୁମେ ମୋର ପ୍ରାଣଦାତ୍ରୀ । ମୁଁ ତୁମ ନିକଟରେ ଚିରଦିନ ଋଣୀ । ତୁମ ପାଇଁ ଯଦି ଏ ପ୍ରାଣଦାନ କରିପାରେ, ତେବେ ତାହାର କିଞ୍ଚିତ ପରିଶୋଧ ମଧ୍ୟ ହୋଇପାରିବ ନାହିଁ । ମାତ୍ର ମୁଁ ନିରୁପାୟ ! ତୁମେ ମୋର ଗୁରୁକନ୍ୟା । ସ୍ୱଭାବରେ ଅନୁଜା ସଦୃଶ । ଏଣୁ ଭାଇ ଓ ଭଉଣୀ ମଧ୍ୟରେ ଯେଉଁ ସ୍ୱର୍ଗୀୟ ପ୍ରେମ, ତହିଁରେ ମୁଁ ଆବିଳତା ଯୋଗ କରିପାରିବି ନାହିଁ । ମୋତେ କ୍ଷମାକର । ଯେଉଁ ଋଷି କୁଳରେ ଗାର୍ଗୀ, ଅରୁନ୍ଧତୀ ପ୍ରଭୃତି ପ୍ରାତଃସ୍ମରଣୀୟାମାନେ ଜନ୍ମଲଭ କରି ସ୍ୱର୍ଗର ପବିତ୍ର ପ୍ରେମାମୃତଧାରା ମର୍ତ୍ତ୍ୟକୁ ବୁହାଇ ଆଣିଥିଲେ, ସେହି କୁଳରେ ତୁମର ଜନ୍ମ । ତୁମେ ସେମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୁଅ ।

କଚ ବିଦାୟ ନେଇଥିଲେ ଦେବଯାନୀ ନିକଟରୁ । ମାତ୍ର କ୍ରୋଧାନ୍ମତ୍ତା ପ୍ରେମ ପାଗଳିନୀ ଦେବଯାନୀଙ୍କ ହୃଦୟରେ ଜାଗି ଉଠିଥିଲ—ବ୍ୟାହତ ପ୍ରେମର ପ୍ରତିଶୋଧ ସ୍ପୃହା । ସେ ଅଭିଶାପ ଦେଇଥିଲେ—ଯେଉଁ ବିଦ୍ୟା ଲଭ ପାଇଁ ତୁମେ ମୋର ପ୍ରେମକୁ ପ୍ରତ୍ୟାଖ୍ୟାନ କଲ, ତାହା ତୁମର ବୋଧଗମ୍ୟ ନ ହେଉ ।

କଚ ମୁଣ୍ଡପାତି ତାହା ଗ୍ରହଣ କରିନେଇ ଉତ୍ତର ଦେଇଥିଲେ—ତଥାସ୍ତୁ ।

ବସନ୍ତ ଋତୁ ଅତୀତ ହୋଇ ଗ୍ରୀଷ୍ମ ଋତୁ ଆସିଲା । ବନରେ ଦାବାଗ୍ନି ଜଳି ଉଠିଲା । ଅନ୍ଧକାର ରାତ୍ରରେ ସମସ୍ତ ବନ ପ୍ରଦେଶକୁ ହୁତାଶନ ନିଜର ଲେଲିହାନ ଜିହ୍ୱା ବିସ୍ତାର କରି ଗ୍ରାସ କରିବାରେ ଲାଗିଲା । ପ୍ରିୟ ଆଗମନର ପଥ ଚାହିଁ ଚାହିଁ କୃଷ୍ଣାର କେତେ ଦିବସ ବିତିଲା । ମାତ୍ର ମୋହନ ଆସିଲା ନାହିଁ, ଉତ୍କଣ୍ଠା ତାର ବଢ଼ି ବଢ଼ି ଚାଲିଲା ।

ଧରା ପୃଷ୍ଠରେ ଦେଖା ଦେଲା ବର୍ଷା । ବନରୁ ଦାବାଗ୍ନି ଲିଭିଗଲା । ମାତ୍ର କୃଷ୍ଣାର ଅନ୍ତରରେ ତାହା ଜଳି ଉଠିଲା ବିରହ ରୂପରେ । ବଣରେ ମାଳତୀ, କେତକୀ କଦମ୍ବ ଫୁଲ ଫୁଟିଲେ । ଚାତକର ବିକଳ ସ୍ୱର ଶାନ୍ତ ହେଲା । ମୟୂରର କେକା-ରବରେ ବନାକାଶ ପ୍ରକମ୍ପିତ ହେଲା । ତା ସହିତ ଥରି ଉଠିଲା କୃଷ୍ଣାର କୁମାରୀ ତନୁ । କି ଏକ ଅଶୁଭ ମୂହୂର୍ତ୍ତରେ ସେ ହଜାଇ ଦେଇଥିଲା ନିଜକୁ—ପ୍ରବଳ ଜଳ-ସ୍ରୋତରେ କ୍ଷୁଦ୍ର ତୃଣଟିଏ ଭାସିଚାଲି ପରି । ସେ ଯେତିକ ଭାସି ଭାସି ଗଲା, ସେତିକ ତାର ଆଗ୍ରହ, ଉତ୍କଣ୍ଠା ଓ ଆକାଂକ୍ଷା ବଢ଼ି ବଢ଼ି ଚାଲିଲା । ଗୋଟିଏ ଅବାଳିକା କୁମାରୀ ହୃଦୟରେ ଏହିପରି ପ୍ରେମ ଓ ଅନୁରାଗର ଭିତର ଦେଇ ପ୍ରବେଶ କଲା— କାମନାର ବିଷ । ଭୁଲିଗଲା ସେ ନିଜର ପୂର୍ବ ପ୍ରତିଜ୍ଞା, ଭୁଲିଗଲା ପୁରୁଣା ଦିନର ସ୍ମୃତି, ଭୁଲି ଗଲା ନିଜର ଲକ୍ଷ୍ୟ ପଥ । ସ୍ରୋତର ଭଉଁରୀରେ ତୃଣ ପରି ସେ କେବଳ ଘୂରି ବୁଲିଲା—ଏକ ପରମ ପ୍ରାପ୍ତିର ଚରମ ଆକାଂକ୍ଷାନେଇ ।

କ୍ରମେ ଶରତ ଋତୁ ଉପସ୍ଥିତ ହେଲା । ଜଳ ଓ ସ୍ଥଳରେ ନାନା ବର୍ଣ୍ଣର ଫୁଲ ଫୁଟିଲା । ଆକାଶ ନିର୍ମଳ ହେଲା । କୃଷ୍ଣା ମୃଗୟା ଉଦ୍ଦେଶ୍ୟରେ ବହିର୍ଗତ ହେଲା । ମାତ୍ର ପୂର୍ବର ସେ ଉତ୍ସାହ ଆଉ ନାହିଁ । ମନରେ ଅସରନ୍ତି ଭାବନା । ଘନ ଘନ ଦୀର୍ଘ-ଶ୍ୱାସ ବୁକୁ ଅରାଇ ବାହାରି ଆସେ । ତାର ଏ ପ୍ରକାର ପରିବର୍ତ୍ତନ ଦେଖି ସହଚରୀ-ମାନେ ପରସ୍ପରର ମୁହଁକୁ ଚାହାଁନ୍ତି । ମାତ୍ର କେହି କିଛି କହିପାରନ୍ତି ନାହିଁ । ନୀରବରେ ସମସ୍ତେ କେବଳ ତାକୁ ଅନୁସରଣ କରିବାରେ ଲାଗିଛନ୍ତି ।

ମଧ୍ୟାହ୍ନ ସମୟରେ ନାରୀବାହିନୀ ନଗରଜ ପର୍ବତର ପାଦ ଦେଶରେ ଆସି ଉପସ୍ଥିତ ହେଲେ । କୃଷ୍ଣା ବହୁ ସମୟ ଏଣେ ତେଣେ ବିଚରଣ କରି ମୋହନର କୌଣସି ସନ୍ଧାନ ନ ପାଇଲା ନାହିଁ । ପରିଶେଷରେ କ୍ଳାନ୍ତ ହୋଇ ନିକଟସ୍ଥ ବୌଦ୍ଧ

ସ୍ତୂପରେ ବିଶ୍ରାମ ନେବା ନିମନ୍ତେ ଅଗ୍ରସର ହେଲ । ସହଚରୀମାନେ ନିଜ ନିଜର ସୁଶିକ୍ଷିତ ଅଶ୍ୱମାନଙ୍କୁ ସେଠାରେ ଚରଣ ନିମନ୍ତେ ଛାଡ଼ି ଦେଇ କୃଷ୍ଣାର ଅନୁଗମନ କଲେ । ମାତ୍ର ହଠାତ୍ ଅଘଟଣ ସଂଘଟିତ ହେଲ ।

ଭାଗ୍ୟ ଏବଂ ଭବିତବ୍ୟ ଏ ଦୁଇଟିକୁ ଯେଉଁମାନେ ଅସ୍ୱୀକାର କରନ୍ତି, ସେମାନେ ଜାଣନ୍ତି ନାହିଁ ଯେ ମନୁଷ୍ୟର ନିଜର ଇଚ୍ଛା ଶକ୍ତି ବ୍ୟତୀତ ଆଉ ଗୋଟିଏ ଅଦୃଶ୍ୟ ଶକ୍ତି ପ୍ରତି ମୁହୂର୍ତ୍ତରେ ତାକୁ ନିୟନ୍ତ୍ରଣ କରେ । ସେ କେତେବେଳେ ମନୁଷ୍ୟକୁ ହସାଏ, କେତେବେଳେ କନ୍ଦାଏ, କେତେବେଳେ ଉଦ୍‌ବେଳିତ କରେ ଆନନ୍ଦରେ, ଆଉ କେତେବେଳେ ପକ୍ଷି ବୁକୁ ଫଟା ଆର୍ତ୍ତନାଦରେ ତାକୁ ମୁମୂର୍ଷ କରି ତୋଳେ । ମନୁଷ୍ୟ ବହୁ ସାଧ୍ୟ ସାଧନା କରି ମଧ ତାହାର କୌଣସି କୂଳ କିନାରା ପାଏ ନାହିଁ । ଏହାହିଁ ବିଶ୍ୱ-ନିୟନ୍ତାଙ୍କର ଏକ ଅଲୌକିକ ରହସ୍ୟ । ସେଥିପାଇଁ ଆନନ୍ଦରେ ନ ହେଲେ ମଧ ଦୁଃଖ ବା ବିପଦ ସମୟରେ ମନୁଷ୍ୟ ଏହି ଭାଗ୍ୟ ଉପରେ ନିର୍ଭର କରେ ଏବଂ ଭବିଷ୍ୟତ ହାତରେ ନିଜକୁ ସମର୍ପି ଦେବାକୁ ବାଧ୍ୟ ହୁଏ ।

ସାରଙ୍ଗଗଡ଼ର ଯୁବରାଜ ସେଦିନ ଆସିଥିଲେ ମୃଗୟା ଉଦ୍ଦେଶ୍ୟରେ । ବହୁ-ସ୍ଥାନ ଭ୍ରମଣ କରି ସେ ନଗିରି ପର୍ବତର ବୌଦ୍ଧ ସ୍ତୂପ ନିକଟରେ ଆମୋଦ ପ୍ରମୋଦରେ ବ୍ୟସ୍ତ ଥିବାବେଳେ କୃଷ୍ଣା ନିଜର ସହଚରୀମାନଙ୍କ ସହ ସେଠାରେ ଉପସ୍ଥିତ ହେଲ ।

ଅରଣ୍ୟର ନିର୍ଜ୍ଜନ ପ୍ରଦେଶରେ ଯେଉଁ ବନ୍ୟ ପ୍ରକୃତି ଲୁଚି ରହିଥାଏ, ତାହା ଅନେକ ସମୟରେ ମାନବକୁ ବିବ୍ରତ କରେ । ବିଶେଷତଃ ନାରୀର ଦେହଶ୍ରୀ ତାକୁ ଆହୁରି ଉନ୍ମାଦ କରିଦିଏ । ଅଙ୍ଗେ ଅଙ୍ଗେ ସଞ୍ଚରଣ କରେ ଆଦିମ ପ୍ରବୃତ୍ତିର ଆକାଂକ୍ଷା । ତରଳ ଆଗ୍ନେୟଗିରିର ଲାଭାସ୍ରୋତ ପରି ତାହା ପ୍ରତ୍ୟେକ ଶିରା ପ୍ରଶିରା ଏବଂ ରକ୍ତରେ ପ୍ରବାହିତ ହୁଏ ।

ନଗିରି ପର୍ବତର ନିର୍ଜ୍ଜନ ବନ ପ୍ରଦେଶରେ ନବ ଯୌବନା କୃଷ୍ଣା ଓ ତାର ସହଚରୀମାନଙ୍କୁ ଦେଖି ଯୁବରାଜ ଏବଂ ତାଙ୍କର ବନ୍ଧୁମାନେ ବହୁ କାଳର ବୁଭୁକ୍ଷୁ ସୁସ୍ୱାଦୁ ଖାଦ୍ୟ ଦ୍ରବ୍ୟ ପ୍ରତି ଚାହିଁ ରହିବା ପରି ସେମାନଙ୍କ ଚଲା ପଥକୁ ଚାହିଁ ରହିଲେ ।

ନାରୀଦଳ ଭଗବାନ ବୁଦ୍ଧଙ୍କ ନିକଟରେ ଆଣ୍ଠୁ ମାଡ଼ି ସଭକ୍ତି ପ୍ରଣାମ ନିବେଦନ କଲେ । ତାପରେ କେତେ ସମୟ ସେଠାରେ ବସି ପଦାକୁ ବାହାରିବା ମାତ୍ରେ ଦେଖିଲେ ଯେ ସେମାନେ ଦଳେ ଯୁବକଙ୍କ ଦ୍ୱାରା ଅବରୁଦ୍ଧ । କୃଷ୍ଣା ଅବଜ୍ଞା

ଦୃଷ୍ଟିରେ ସେମାନଙ୍କୁ ଗୃହିଁ ସହଚରୀମାନଙ୍କୁ ଗୃଲ ଆସିବା ପାଇଁ ନିର୍ଦ୍ଦେଶ ଦେଲା । ମାତ୍ର ମୁହୂର୍ତ୍ତିକରେ ତାର ଗତି ରୁଦ୍ଧ ହେଲା । ଯୁବରାଜ ନିଜେ ଆଗକୁ ଆସି ବିନା ବାକ୍ୟ ବ୍ୟୟରେ ତାର ହାତକୁ ଧରିନେଲେ । ଯୁବା ଦଳ ଚତୁର୍ଦ୍ଦିଗରୁ ଘେରି ଗଲେ ।

ସମସ୍ତେ ଭୟ ପାମାଯ୍ୟରେ ପ୍ରମତ୍ତ । କୃଷ୍ଣା ମୁହୂର୍ତ୍ତେ ବିଳମ୍ବ ନ କରି ଯୁବ-ରାଜଙ୍କୁ ସଜୋରରେ ଆଘାତ କରି ନିଜକୁ ମୁକ୍ତ କରିନେଲା । ଯୁବରାଜ ସେ ଆଘାତରେ ଭୂମିରେ ପଡ଼ିଗଲେ । ତାଙ୍କର ପୌରୁଷରେ ଆଘାତ ଲାଗିଲା । ସେ କ୍ରୁଦ୍ଧ କମ୍ପିତ ସ୍ୱରରେ କହିଲେ—ଏହାର ପରିଣାମ ପ୍ରତି ଚିନ୍ତା କରୁଛ ତ' ?

କୌଣସି ପରିଣାମର ଅପେକ୍ଷା ରଖେନା' କୃଷ୍ଣା—ଏକ ଦୃପ୍ତ କଣ୍ଠ ସ୍ୱର ଧ୍ୱନିତ ହେଲା ।

ନାରୀବାହିନୀ କଟିସ୍ଥିତ କରବାଳରେ ହସ୍ତ ନିକ୍ଷେପ କଲେ ।

ଯୁବକମାନଙ୍କର ସମସ୍ତ ଆନନ୍ଦ କୋଳାହଳରେ ଭଟ୍ଟା ପଡ଼ିଗଲା । ସମସ୍ତେ ସ୍ତବ୍ଧ ବିସ୍ମୟରେ ନାରୀ ବାହିନୀକୁ ଗୃହିଁ ରହିଲେ । ତାଙ୍କ ମଧ୍ୟରୁ ଜଣେ କହିଲା—ଏ ପ୍ରକାର ଦୁଃସାହସ କର ନାହିଁ କୁମାରୀ । ସାରଙ୍ଗଗଡ଼ର ଯୁବରାଜ ନିଜେ ତୁମର ପ୍ରଣୟ ପ୍ରାର୍ଥୀ ।

କୃଷ୍ଣା ଏକ ତାଚ୍ଛଲ୍ୟର ହସ ହସି ଉତ୍ତର ଦେଲା— ଏହି ଶ୍ୱାରୁ··· ସାରମେୟ...

ମୁହୂର୍ତ୍ତିକରେ ତାର ମୁଖର ରଙ୍ଗ ପରିବର୍ତ୍ତିତ ହୋଇଗଲା । ସେ ବଜ୍ର ଗମ୍ଭୀର କଣ୍ଠରେ କହିଲା—ସାବଧାନ ଦସ୍ୟୁଗଣ ଆଉ ପାଦେ ଅଗ୍ରସର ହେଲେ କେହି ଅକ୍ଷତ ଶରୀରରେ ନିଜ ଗୃହକୁ ଫେରିଯାଇ ପାରିବ ନାହିଁ । ନାରୀ କେବଳ ସୁରତୋତ୍ସବର ଅଭିସାରିକା ନୁହେଁ; ସେ କାଳାନଳ ସଦୃଶ ଜ୍ୱାଳାମୟୀ, ବଜ୍ର ପରି ଭୀଷଣ ଓ ପ୍ରସ୍ତର ତୁଲ୍ୟ ନିର୍ମ୍ମମ । ସୀତାଙ୍କ ସକାଶେ ସ୍ୱର୍ଣ୍ଣ ଲଙ୍କା, ସୁଭଦ୍ରାଙ୍କ ସକାଶେ ଯଦୁବଂଶ ଏବଂ ଦ୍ରୌପଦୀଙ୍କ ପାଇଁ କୁରୁବଂଶର ଯେଉଁ ଅବସ୍ଥା ଘଟିଥିଲା, ତାହା ବୋଧ-ହୁଏ ଦସ୍ୟୁଗଣଙ୍କୁ ଅଗୋଚର ନ ଥିବ ? ମନେ ରଖ—ସଂସାର କ୍ଷେତ୍ରରେ ଯେଉଁ ନାରୀ ଶିବ, ସାଧନ କ୍ଷେତ୍ରରେ ସେ ଭୋଳାନାଥ, ଯୁଦ୍ଧକ୍ଷେତ୍ରରେ ସେ ପୁଣି ନଟରାଜ ।

କୃଷ୍ଣା ନାରୀ ବାହିନୀକୁ କଣ ଇଙ୍ଗିତ ଦେଲା । ସମସ୍ତେ ବ୍ୟୂହ ରଚନା କରି

ଉନ୍ମୁକ୍ତ କରବାଳରେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । କେଶରିଣୀର ଆକ୍ରମଣରେ ଗଜଯୂଥ ବିକ୍ଷିପ୍ତ ଭାବରେ ପଳାୟନ କଲା ପରି ଯୁବାଦଳ ମୁହୂର୍ତ୍ତିକରେ କେଉଁଆଡ଼େ ଅଦୃଶ୍ୟ ହୋଇଗଲେ ।

ସ୍ନିଗ୍ଧ ଶରଦର ଆକ୍ରମଣରେ ମେଘ ଖଣ୍ଡମାନ ମଧ୍ୟ ସେହିପରି ଆକାଶର ସୁନୀଳ ବକ୍ଷରୁ ଅଦୃଶ୍ୟ ହୋଇଗଲେ । ଦକ୍ଷିଣ ଦିଗରେ ଅଗସ୍ତ୍ୟତାରା ଉଦିତ ହେଲେ । ଜଳରେ କୁମୁଦ, କହ୍ଲାର ଏବଂ ସ୍ଥଳରେ ଯୂଇ, ଜାଇ, ଗଙ୍ଗଶିଉଳି ପ୍ରସ୍ଫୁଟିତ ହୋଇ ବାସ ବିତରଣ କଲେ ।

ସେଦିନ ଥିଲା ଶରତକାଳର ଏକ ମେଘ ବିମୁକ୍ତ ନିର୍ମଳ ପ୍ରଭାତ । ଶାନ୍ତ ସ୍ନିଗ୍ଧ ପ୍ରକୃତି । ଗାଢ଼ ନୀଳ ବର୍ଣ୍ଣରେ ସମସ୍ତ ଆକାଶ ଶୋଭିତ । ଖଣ୍ଡିଏ ଖଣ୍ଡିଏ ଶୁଭ୍ର ମେଘ ଯେହ୍ନ ନୀଳାମ୍ବୁଧି ତୁଲ୍ୟ ଆକାଶ ସାଗରରେ ଶୁଭ୍ର ପାଲଟେଲା ନୌକା-ପରି ଯାତାୟତ କରୁଛନ୍ତି । ସୁଗନ୍ଧିଣୀ ସମ ଗତିରେ ଆଳସ୍ୟ ବିଜଡ଼ିତ ମନ୍ଥରତା । ନୂତନ ଜନ୍ମିତ କ୍ଷୁଦ୍ର କ୍ଷୁଦ୍ର ଘାସ ଉପରେ ପକ୍ଷୀଦଳ ଶସ୍ୟ ସଂଗ୍ରହ କରି ପ୍ରଭାତର ଆଗମନୀ ସଙ୍ଗୀତ ଗାନରେ ବ୍ୟସ୍ତ । ଜଳ, ସ୍ଥଳ ଏବଂ ଅନିଳରେ— ପୁଷ୍ପର ଶୋଭା, ବର୍ଣ୍ଣର ଐଶ୍ୱର୍ଯ୍ୟ ଏବଂ ସୌରଭର ଗୌରବ । ନଦୀ ପଠାରେ କାଶଗୁଚ୍ଛ ନିଜର ଶ୍ୱେତ ଚାମର ଦୋଳାଇ ଏବଂ ଶସ୍ୟଶାଳୀ କେଦାର ଧାନ୍ୟ ଶୀର୍ଷ ହଲାଇ ମାତୃ ଆଗମନୀର ବନ୍ଦନା ଗାନ କରୁଛନ୍ତି ।

ମୋହନ ଏବଂ କାଦମ୍ବିନୀ ଚାଲିଛନ୍ତି । ମୋହନର ହସ୍ତରେ କ୍ଷୁଦ୍ର ଏକ ପେଟିକା । ପଲ୍ଲୀ ଗ୍ରାମର ବିସ୍ତୃତ ପଥ । ଚତୁର୍ଦ୍ଦିଗରେ ସୌନ୍ଦର୍ଯ୍ୟର ହାଟ ବସିଛି । ପ୍ରକୃତି ସବୁଜ ସମ୍ଭାରରେ ପରିପୂର୍ଣ୍ଣ । ଅଫୁରନ୍ତ ଆନନ୍ଦର ଢେଉ ଚାରିଆଡ଼େ ବହି ଚାଲିଛି । ପଲ୍ଲୀର ସରଳ ଜୀବନ ମଧ୍ୟରେ ଏହାହିଁ ପ୍ରାଣ ପ୍ରାଚୁର୍ଯ୍ୟର ସମୟ । ଏତିକ-ବେଳେ ସମସ୍ତ ବର୍ଷର ଦୁଃଖ, ବିଷାଦ, ହତାଶା, ଆଶାଭଙ୍ଗ ଏବଂ ବିପର୍ଯ୍ୟୟତା ଲୋପ ପାଇଯାଏ । ନବଧାନ୍ୟର ପୁଷ୍ପାଞ୍ଜଳି ଦେଇ ସମସ୍ତେ ଆବାହନ କରନ୍ତି ଜଗନ୍ମାତାଙ୍କୁ ।

ଦୀର୍ଘପଥ ଅତିକ୍ରମ କଲା ପରେ ଦୁହେଁଯାକ ଏକ ପୁଷ୍କରିଣୀ ତଟରେ ବିଶ୍ରାମ ନେଲେ । ଉଭୟେ କ୍ଲାନ୍ତ । କାହାରି ମୁହଁରେ କଥା ନାହିଁ । ପୁଷ୍କରିଣୀର ସ୍ଥିର ଜଳରେ

ବିରହିଣୀ କୁମୁଦିନୀ ମନ ଦୁଃଖରେ ତଳକୁ ମୁଣ୍ଡ ନୁଆଁଇ ଦେଇଛି । ପତି ବିରହରେ ହୃଦୟ ତାର ଭାରାକ୍ରାନ୍ତ । ଭ୍ରମର ଆସି ଗୁଣୁ ଗୁଣୁ ସ୍ୱନରେ ଚାଟୁ ପ୍ରକାଶ କଲେ ସେ ପବନ ବେଗେ ମୁଣ୍ଡ ହଲାଇ ନାହିଁ ନାହିଁ କରୁଛି । ମାତ୍ର ପଦ୍ମିନୀ ଆନନ୍ଦରେ ଉତ୍ଫୁଲ୍ଲ ହୋଇଉଠିଛି । ଲକ୍ଷ ଲକ୍ଷ ଯୋଜନ ଦୂରରେ ଥାଇ ମଧ୍ୟ ସେ ପତିପ୍ରେମରେ ଆତ୍ମହରା । ଅରୁଣ ସହସ୍ର ଧାରାରେ ଢାଳି ଦେଉଛନ୍ତି ଅଜସ୍ର ଚୁମ୍ବନ । କୁମାରୀ କନ୍ୟା ପରି ଶଙ୍କିତ ହୃଦୟରେ କଳିକାଟିଏ ଦେଖୁଛି— ଦୁହିଁଙ୍କର ଆନନ୍ଦ ଓ ବିଷାଦ ।

ଠିକ୍ ଏହିପରି ଅନୂଢ଼ା କୁମାରୀମାନେ ପୁଷ୍କରିଣୀ ତଟରେ ଚାହିଁଛନ୍ତି ନବ ବିବାହିତା ରମଣୀମାନଙ୍କୁ । ବିବାହପରେ ବାପ ଘରକୁ ଆସି ସୌଭାଗ୍ୟବତୀମାନେ ଅଯତ୍ନ ବେଶ ଭୂଷାରେ ସ୍ୱାମୀ ସାନ୍ନିଧ୍ୟର ଲୋଭନୀୟ କାହାଣୀ ବର୍ଣ୍ଣନା କରୁଛନ୍ତି । ସ୍ୱାମୀ ପ୍ରେମ ଅତ୍ୟାଚାରର ଚିହ୍ନ ମଧ୍ୟ ଦେଖାଉଛନ୍ତି ନିଜ ଶରୀରରେ । ପତି ବିରହିଣୀ ନାରୀମାନେ ତଳକୁ ଚାହିଁ ଦୀର୍ଘ ନିଶ୍ୱାସ ତ୍ୟାଗ କରୁଛନ୍ତି । କୁମାରୀ କନ୍ୟାମାନେ ନୀରବରେ ଉଭୟଙ୍କୁ ଚାହୁଁଛନ୍ତି । ଈର୍ଷା, ଦୁଃଖ, ରୋମାଞ୍ଚ ଓ ବେଦନାର ଅପୂର୍ବ ଅନୁଭୂତିରେ ହୃଦୟ ସେମାନଙ୍କର ପରିପୂର୍ଣ୍ଣ । ହୁଏତ ଦିବସର କାର୍ଯ୍ୟ ଶେଷରେ ସମସ୍ତ ରାତ୍ରି ଅନିଦ୍ରା ରହି ସେମାନେ ଏସବୁ ଅନୁଭୂତି ବିଷୟ ଚିନ୍ତା କରିବେ, ଏକଡ଼ ସେକଡ଼ ହୋଇ ଦୀର୍ଘ ନିଶ୍ୱାସ ମୋଚନ କରିବେ ।

ଏଇଥିପାଇଁ ବୋଧହୁଏ ପ୍ରେମ ଜଗତରେ ସମସ୍ତେ ସର୍ବଶୂନ୍ୟା ହୋଇ ତୃପ୍ତି ପାଆନ୍ତି, ନିଜର ସର୍ବସ୍ୱ ସମର୍ପଣ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ ।

କାଦମ୍ବିନୀ ମନରେ ଭାବେ—ଏହାରି ନାମ ବୋଧହୁଏ ଜୀବନ । ଏହି ଟିକକ ପାଇବା ପାଇଁ ନାରୀ ଯୁଗ ଯୁଗ ଧରି ସାଧନା କରି ଆସିଛି । ହୃଦୟର ସମସ୍ତ ରସ ଢାଳି ଢାଳି ଉତ୍ସର୍ଗ କରି ଅନ୍ୟକୁ ତୃପ୍ତି ଦେଇଛି, ନିଜେ ମଧ୍ୟ ତୃପ୍ତ ହୋଇଛି । ମାତ୍ର ସେ କେବଳ ଆଲେୟାଏ ମରୀଚିକା ପଛରେ ଦୌଡ଼ି ଆସିଛି, ଯୌବନକୁ ଝଡ଼ ତୋଫାନ ପରି ଉଡ଼ାଇ ଦେଇଛି । ତେଣୁ ଜୀବନର ସ୍ୱର୍ଗ ସୁଖ ସେ ଅନୁଭବ କରି-ପାରିନାହିଁ । ଯାହା ପାଇଛି—ତାହା କେବଳ ଅନ୍ତଃସାର ଶୂନ୍ୟ ଏକ ଉଚ୍ଛ୍ୱାସ—ନିଶା-ଘୋରରେ ମାତାଲମାନେ ଯେପରି ଅନୁଭବ କରନ୍ତି । କିନ୍ତୁ ସେ ନିଶା କଟିଗଲେ

ନିଃଶେଷ ହୋଇଗଲେ ସେହି ଆବେଗ, ଅଚ୍ଛିନ୍ନତା... ?

କାଦମ୍ବିନୀର ବୁକୁ ବିଦାରି ଏକ ଦୀର୍ଘ ଶ୍ୱାସ ବାହାରି ଆସିଲା । ସେ ହୃଦୟର କୋହକୁ ଚାପି ରଖି ମୋହନର ମୁଖକୁ ଅନାଇଲା

ସରଳ, ଶାନ୍ତ ଏବଂ ନିଷ୍ପାପ ଏକ ମୁଖ । ଦୀର୍ଘାୟିତ ନେତ୍ର ଯୁଗଳରେ ଆକାଶ ପରି ମୁକ୍ତିର ସ୍ୱପ୍ନ । କାଦମ୍ବିନୀ ନିର୍ନିମେଷ ନୟନରେ ଚାହିଁ ରହିଲି ତାଆଡ଼କୁ । ଅଙ୍ଗ, ପ୍ରତ୍ୟଙ୍ଗ, ଶିରା, ପ୍ରଶିରା ଏବଂ ଅନ୍ତ ତନ୍ତରେ ତାର ବହିଚାଲିଛି କି ଏକ କାମନାର ତୋଫାନ ଯାହା ନାରୀକୁ ସର୍ବସ୍ୱ ସମର୍ପଣର ମନ୍ତ୍ର ଦାନ କରେ । ତହିଁରେ ସେ ଆନନ୍ଦ ପାଏ ଏବଂ ଆନନ୍ଦ ଦିଏ ।

ଆଜି କାଦମ୍ବିନୀ ଏକ ନୂତନ ପଥର ପଥିକା ଏବଂ ଅନ୍ତହୀନ ମହାଯାତ୍ରାର ଯାତ୍ରୀ । ଏ ଯାତ୍ରା ଯେ କେଉଁଠି ଶେଷ ହେବ କିଏ ଜାଣେ ?

"ଦୁର୍ଗମ ଗିରି କାନ୍ତାର ମରୁ ଲଙ୍ଘିବାକୁ ହେବ ତୀର
ଯାତ୍ରୀ ହୁସିଆର
ମଙ୍ଗ ସଳଖି ଧର ।"

ବିଶ୍ରାମ ଶେଷରେ ମୋହନ ଏବଂ କାଦମ୍ବିନୀ ଦୁହେଁଯାକ ଅଗ୍ରସର ହେଲେ ।

ସୂର୍ଯ୍ୟ କ୍ରମେ ପଶ୍ଚିମ ଆକାଶକୁ ଢଳିଲେ । ପଶ୍ଚିମ ଆକାଶ ରକ୍ତରଙ୍ଗା । ଉଦାସ କରୁଣ ସ୍ୱରରେ ରାବ ଦେଇ କେଁ କେଁଇଟିଏ ଉଡ଼ିଯାଉଛି । ଆସନ୍ନ ପ୍ରିୟ ବିଚ୍ଛେଦ ଦୁଃଖରେ ଚକ୍ରବାକ ବିଷର୍ଣ୍ଣ । ଗୋଠ ବାହୁଡ଼ା ଗୋରୁର ଘଣ୍ଟା ଧ୍ୱନିରେ ଗୋଧୂଳି ସନ୍ଧ୍ୟା ମୁଖରିତ । ସମୟେ ସମୟେ ନିସ୍ତବ୍ଧ ଧରଣୀର ବୁକୁ ଥରାଇ ଭାସି ଆସୁଛି ଗୋପାଳ ବାଳକର ବଂଶୀଧ୍ୱନି ।

ଯାଉଁଳି କାନ୍ଧରେ ବାଟୋଇଟିଏ ଚାଲିଛି । ପଛରେ ହରିତ ବସନା ସୁନ୍ଦରୀ, ଷୋଡ଼ଶୀ-ଯୁବତୀ । ମନେହୁଏ ପିତୃ ଗୃହକୁ ଯାଉଛି । ପାଦ ଚଞ୍ଚଳ । ବହୁଦିନରୁ ସାଙ୍ଗ, ସାଥି, ଭାଇ ଭଉଣୀମାନଙ୍କୁ ଦେଖିନାହିଁ । ସେଥି ପାଇଁ ଉଦ୍‌ବିଗ୍ନମନା । ମସ୍ତକ ଅବନତ । ସମୟେ ସମୟେ ମୁଣ୍ଡ ଉଠାଇ ଦୂରକୁ ଚାହୁଁଛି । ସ୍ୱାମୀ ସାନିଧ୍ୟର ମଧୁ-ସ୍ମୃତି ବର୍ତ୍ତମାନ ସେ ଭୁଲି ଯାଇଛି । ଜୀବନର ସେହି ମଧୁଗନ୍ଧ ଭରା ଦିବସଗୁଡ଼ିକର ସ୍ମୃତି ଶାଶ୍ୱତ କରିବା ଉଦ୍ଦେଶ୍ୟରେ ସେ ବିରହକୁ ବରଣ କରି ନେଇଛି ।

ବାସ୍ତବରେ ଏ ସଂସାରରେ ନୂତନ ଭାବରେ କାହାରିକୁ ପାଇବାକୁ ହେଲେ ବାରମ୍ବାର ହରାଇବାର ଦୁଃଖ ସହ୍ୟ କରିବାକୁ ପଡ଼େ । ଆତ୍ମୀୟ ହେଉ, ବନ୍ଧୁ ହେଉ,

ସ୍ତ୍ରୀ ବା ସ୍ୱାମୀ ହେଉ, ସ୍ୱେଚ୍ଛାରେ ମଝିରେ ମଝିରେ ଭୌଗୋଳିକ ବ୍ୟବଧାନ ସୃଷ୍ଟି ନ କଲେ ଅନ୍ୟ କୌଣସି ଶକ୍ତି ବ୍ୟବଧାନ ମଝିରେ ଦେଖାଦିଏ । ହୁଏତ ଛିଡ଼ ବିଚ୍ଛେଦ ବି ମିଳନର ମୁଖା ପିନ୍ଧି ଗ୍ରହଣ କରେ ।

ମାତ୍ର କାଦମ୍ବିନୀ ଆଜି ସର୍ବଶୂନ୍ୟା । ଏ ସମସ୍ତ ଅନୁଭୂତି ତା ନିକଟରେ ସ୍ୱପ୍ନର ବସ୍ତୁ । ମଧୁକର ଜଳ ତାର ଦୁରନ୍ତ ଯୌବନର ଶେଷ ରସ ଟିକକ ପର୍ଯ୍ୟନ୍ତ ତାକୁ ବାସି ଫୁଲ ପରି ଛାଡ଼ି ଯାଇଛନ୍ତି । ଏ ପ୍ରେମ, ଏ ଅନୁଭୂତି ଏ ସୌଭାଗ୍ୟ ଆଉ ତା ପକ୍ଷେ ସମ୍ଭବ ନୁହେଁ । କାଦମ୍ବିନୀର ଅନ୍ତର ଭିତରଟା ହୁ, ହୁ କରି କାନ୍ଦି ଉଠିଲା । ଟୋପାଏ ଦୁଇ ଟୋପା ଲୁହ ତାର ବି ବାରଣ ନ ମାନି ଭୂମିରେ ପଡ଼ିଗଲା ।

ମୋହନ ନୀରବରେ ପଥ ଚାଲୁ ଚାଲୁ ପ୍ରଶ୍ନ କଲା— ଆଉ କେତେ ଦୂର ?

କାଦମ୍ବିନୀ ତରବରରେ ଅଶ୍ରୁ ସମ୍ବରଣ କରି ଉତ୍ତର ଦେଲା—ବେଶୀ ଦୂର ନୁହେଁ; ଆମେ ଏହିପରି ଭାବରେ ପଥ ଚାଲିଲେ ରାତ୍ରି ପ୍ରହରକ ମଧ୍ୟରେ ସେଠାରେ ପହଞ୍ଚି ଯିବା ।

ମୋହନ ଆଉ କୌଣସି ପ୍ରଶ୍ନ ନ କରି ପଥ ଚାଲିଲା ।

କେତେ ସମୟ ପରେ କାଦମ୍ବିନୀ ମୌନତା ଭଙ୍ଗ କରି କହିଲା—ଆଚ୍ଛା, ମୋହନ କୁମାର ! ମୁଁ ଏ ସଂସାରର ଯେତେ ଲୋକଙ୍କ ସଂପର୍କରେ ଆସିଲିଣି, ସମସ୍ତଙ୍କୁ ଦେଖିଲେଣି ଯେ ସେମାନେ ସୁଖ, ସମ୍ଭୋଗ ଓ ବିଳାସ, ବ୍ୟସନରେ ମାତି ରହିଛନ୍ତି । ମାତ୍ର ଆପଣ ଏପରି ନିସ୍ପୃହ ଜୀବନ ବିତାଉଛନ୍ତି କାହିଁକି ?

ମୋହନ ଉତ୍ତର ଦେଲା—ଭଦ୍ରେ ! ଉଜାଣିରେ ଭାସି ବୁଲିବାକୁ ସମସ୍ତେ ଭଲ ପାଆନ୍ତି, ମାତ୍ର ଯିଏ ସନ୍ତରଣ କରିପାରେ, ସେହି କେବଳ ପ୍ରବାହ ଠେଲି ସମୁଦ୍ର ଭିତରକୁ ଯାଏ । ମୁଁ ଯେତେବେଳେ ସର୍ବସ୍ୱ ତ୍ୟାଗର ମନ୍ତ୍ର ଗ୍ରହଣ କରିଛି, ସେତେବେଳେ ପ୍ରବାହ ଠେଲି ଚାଲିବାରେ ବିଚକ୍ଷଣତା କଣ ଅଛି ?

—ତେବେ ଆପଣ କଣ ସମସ୍ତ ପ୍ରବୃତ୍ତିକୁ ଦମନ କରିପାରିଛନ୍ତି ?

ମୋହନ ମୃଦୁ ମୃଦୁ ହସି ଉତ୍ତର ଦେଲା— ପ୍ରବୃତ୍ତି ଓ ନିବୃତ୍ତି ଏ ଦୁଇଟି-ଯାକ ତ ଗୋଟିଏ ସୂତ୍ରରେ ବନ୍ଧା । ତାକୁ ପରିତ୍ୟାଗ କରାଯିବ କିପରି ? ଗୋଟିଏ ଧ୍ୱଂସ ହେଲେ ଅନ୍ୟଟି ତାର ପ୍ରତିଧ୍ୱନି । ପ୍ରେମ, ଅନୁରାଗ, ହିଂସା, କ୍ରୋଧ, ଲାଳସା, ସ୍ୱେଚ୍ଛାଚାରିତା, ସ୍ନେହ, ପ୍ରୀତି ଓ ମମତା ପ୍ରଭୃତି ସମସ୍ତ ଦୋଷ ଓ ଗୁଣ ମନୁଷ୍ୟ ବୁକୁରେ ଜମାଟ ବାନ୍ଧି ରହିଛି । ତା ମଧ୍ୟରୁ କିଏ ପ୍ରବୃତ୍ତିକୁ ଧ୍ୱଂସ କରି ନିବୃତ୍ତିକୁ

ପ୍ରତିଧ୍ୱନି କରେ ତ ଆଉ କଏ ବା ଠିକ୍ ତାର ଓଲଟା ଆଚରଣ କରେ ।

କାଦମ୍ବିନୀ ନୀରବ ହେଲ ।

ପରିଶେଷରେ ଦୁହେଁ ଆସି କେନ୍ଦୁବିଲ୍ୱରେ ଉପସ୍ଥିତ ହେଲେ ।

ରାତ୍ରିର ପ୍ରଥମ ପ୍ରହର । ଚନ୍ଦ୍ର ମେଘ ଉହାଡ଼ରେ । ପ୍ରକାଶ କ୍ଷୀଣ । ପ୍ରାଚୀ ନଦୀ କୁଳୁ କୁଳୁ ତାନରେ ବହିଯାଉଛି ।

ଭକ୍ତକବି ଜୟଦେବଙ୍କ ଲୀଳାଭୂମି ଏହି କେନ୍ଦୁବିଲ୍ୱ ଶାସନ ଗଜପତି ମହାରାଜାଙ୍କର ଅକ୍ଷୟ କୀର୍ତ୍ତି । ଦେବ ଦ୍ୱିଜମାନଙ୍କ ପାଇଁ ଉତ୍କଳରାଜ ମାନେ ଏହିପରି ନାନା ସ୍ଥାନରେ ଅକ୍ଷୟ କୀର୍ତ୍ତି ସ୍ଥାପନ କରିଯାଇଛନ୍ତି । ବ୍ରାହ୍ମଣମାନେ ନିଷ୍କର ବୃତ୍ତି ଭୋଗ କରି ଦେଶରେ ଆଧ୍ୟାତ୍ମିକ ଶକ୍ତିର ବିକାଶ ତଥା ନୈତିକ ମାନଦଣ୍ଡର ରକ୍ଷା ଲାଗି ଏହିସବୁ ସ୍ଥାନରେ ସାଧନ ଭଜନରେ ବ୍ୟାପୃତ ଅଛନ୍ତି ।

ପ୍ରାଚୀ ନଦୀ ଅଭିସାରିକା ବେଶରେ ମୃଦୁ ଗୁଞ୍ଜନ ତୋଳି ସାଗର ସଙ୍ଗମ ଆଶାରେ ବହି ଚାଲିଛି । ନଦୀର ଉଭୟ ପାର୍ଶ୍ୱରେ ତାଳ, ତମାଳ, ପୁନ୍ନାଗ ଓ ଚୂତଆମ୍ରର ନିବିଡ଼ ଉଦ୍ୟାନ । ସୂର୍ଯ୍ୟ କିରଣ ଭୂମିରେ ପଡ଼େ ନାହିଁ । ଚତୁର୍ଦ୍ଦିଗରେ ଚିର ଶ୍ୟାମଳିମାର ରାଜତ୍ୱ । ସ୍ନିଗ୍ଧ ସମୀରଣ ସ୍ପର୍ଶରେ ସ୍ଥାନଟି ସୁଶୀତଳ । ମନେହୁଏ ବସନ୍ତ ଯେପରି ମୂର୍ତ୍ତି ପରିଗ୍ରହ କରି ଏଠାରେ ବସତି ସ୍ଥାପନ କରିଛି ।

ପୁରାତନ ଲୋକେ କହନ୍ତି—ପ୍ରଥମେ ଏଠାରେ ନଦୀର କୌଣସି ଚିହ୍ନବର୍ଣ୍ଣ ନ ଥିଲା । ଏ ସ୍ଥାନର ଦୁଇକୋଶ ଦୂରରେ ଉତ୍କଳ ଜାହ୍ନବୀ ଚିତ୍ରୋତ୍ପଳାର ଶାଖା ପ୍ରାଚୀ ନଦୀ ପ୍ରବାହିତ ହେଉଥିଲା । ଭକ୍ତକବି ଜୟଦେବ ପ୍ରତିଦିନ ପ୍ରଭାତରୁ ଉଠି ନଦୀକୁ ସ୍ନାନ ଓ ତର୍ପଣ କରିବାକୁ ଯାଆନ୍ତି । ସେଠାରୁ ଫେରି ଦେବାର୍ଚ୍ଚନ ଓ ଆହାର ପରେ ରଚନା କରନ୍ତି—ଶ୍ରୀ ଗୀତଗୋବିନ୍ଦର ପଦାବଳୀ ।

ଦିବସ ପରେ ଦିବସ ତାପରେ ମାସ ଓ ବର୍ଷ ଅତିକ୍ରାନ୍ତ ହେଲା । କେତେ ବସନ୍ତ ଚୂତଆମ୍ର, ଚମ୍ପକ ଏବଂ ନାଗେଶ୍ୱର ବୃକ୍ଷରୁ ପୁଷ୍ପର ପରାଗ ଲୁଟାଇ, ତମାଳ ଶାଖାରେ କୋକିଳର ସ୍ୱର ଫୁଟାଇ ବହିଗଲା । କେତେ ଗ୍ରୀଷ୍ମର ଘୂର୍ଣ୍ଣିବାୟୁରେ ଶୁଷ୍କ ପତ୍ର ଭୂମିରେ ପତିତ ହେଲା । ବର୍ଷାରେ ପ୍ରାଚୀ ନଦୀରେ ଜଳ କଲ୍ଲୋଳ ସୃଷ୍ଟି ହେଲା । ଶରତରେ ତମାଳ ଶାଖାରେ ନବପଲ୍ଲବ ଜାତ ହେଲା । ହେମନ୍ତରେ ଭାସି ଆସିଲା—ପାଚିଲା ଧାନର ସୁବାସ, ପୁଣି ଶୀତର ଶିଁ ଶିଁ ପବନରେ ଗଛରୁ ଖସି ପଡ଼ିଲା ପାଚିଲା ପତ୍ର ।

ଶ୍ରୀଗୀତ ଗୋବିନ୍ଦ ଲଳିତ ପଦାବଳୀ ରଚନାରେ ଜୟଦେବ ଗୋସ୍ୱାମୀ ନିଜର କାୟ-ମନ-ବାକ୍ୟ ସମସ୍ତ ଉତ୍ସର୍ଗ କରିଦେଲେ । ପ୍ରତିଦିନ ସେ ଯେଉଁ ଅଭିନବ ରଚନା ତାଳପତ୍ରରେ ଲେଖି ଦିଅନ୍ତି, ସନ୍ଧ୍ୟା ସମୟରେ ନାରୀ ଶିରୋମଣି ପଦ୍ମାବତୀ ତାହା ରାଧା ମାଧବଙ୍କ ନିକଟରେ ସୁଲଳିତ ସ୍ୱରରେ ଗାନ କରନ୍ତି । ସେ ସୁର-ଲହରୀରେ ସ୍ତମ୍ଭୀଭୂତ ହୋଇଯାଏ ପବମାନ, ସ୍ତମ୍ଭୀଭୂତ ହୋଇଯାଆନ୍ତି ତମାଲ ଶାଖାରେ ଶୁକଶାରୀ, ମୁଗ୍ଧ ଦୃଷ୍ଟିରେ ଗୃହିଁରହନ୍ତି ପଶୁପକ୍ଷୀଗଣ । ସ୍ତିମିତ ଦୀପା-ଲୋକରେ ମୁରଲୀଧରଙ୍କ ପ୍ରସ୍ତର ପ୍ରତିମାରେ ପ୍ରାଣ ସଞ୍ଚାରିତ ହେବାପରି ପ୍ରତୀତ ହୁଏ । ସାନ୍ଧ୍ୟ ସମୀରଣ ବଂଶୀର ରନ୍ଧ୍ରରେ ପଶି ଅସ୍ଫୁଟ ସ୍ୱନ ସୃଷ୍ଟି କରେ । ରାଧିକାଙ୍କ ଅଞ୍ଚଳ ଉଡ଼ି ଶ୍ରୀକୃଷ୍ଣଙ୍କ ବକ୍ଷରେ ପତିତ ହୁଏ ।

କ୍ରମେ ନବମ ସର୍ଗ ସମାପ୍ତ ହେଲା । ଦଶମ ସର୍ଗରେ ଜୟଦେବସ୍ୱାମୀ ଏକ ଅପୂର୍ବଧାର ସମ୍ମୁଖୀନ ହେଲେ । କଣ କରିବେ କିଛି ସ୍ଥିର କରିପାରିଲେ ନାହିଁ ବିଷୟଟି ହେଉଛି—

ଶରତର ଏକ ଜ୍ୟୋତ୍ସ୍ନା ଧୌତ ରାତ୍ରୀ । କୁଞ୍ଜେ କୁଞ୍ଜେ କେତେ ଫୁଲ ଫୁଟିଛି । ଅଦୂରରେ ନୀଳାମ୍ବରୀ ଯମୁନାର ମୃଦୁ ଗୁଞ୍ଜନ । ସମୀରଣ ସ୍ନିଗ୍ଧ । ଶ୍ରୀକୃଷ୍ଣଙ୍କ ସଙ୍କେତ ପାଇ ଅଭିସାରିକା ରାଧା କୁଞ୍ଜରେ ଅପେକ୍ଷା କରିଛନ୍ତି । ମାତ୍ର ଦଗାଦାର ଶ୍ରୀକୃଷ୍ଣ ଆସିଲେ ନାହିଁ । ବିରହିଣୀ ରାଧାଙ୍କ ମନରେ ଜାଗିଲା ଅଭିମାନ । ସେ ସ୍ଥିର କଲେ—ଶ୍ରୀକୃଷ୍ଣଙ୍କ ସହ ଆଉ କଥା କହିବେ ନାହିଁ । କ୍ରମେ ରଜନୀ ଅତୀତ ହେଲା । ଅରୁଣ ଉଦିତ ହେବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣ ଆସି କୁଞ୍ଜ ଦ୍ୱାରରେ ଉପସ୍ଥିତ ହେଲେ । ତାଙ୍କୁ ଦେଖି କୁପିତା ରାଧା କହିଲେ—

"ହରି ହରି ଯାହି ମାଧବ ଯାହି କେଶବ ମା ବଦ କୈତବ ବାଦଂ
ତା ମନୁସର ସରସୀରୁହ ଲୋଚନ ଯା ତବ ହରତି ବିଷାଦଂ ।"

ହେ କେଶବ, ମୋ ନିକଟରେ ଆଉ ଧୂର୍ତ୍ତ କଥା ନ କହ ଯେଉଁଠି କାଲି ରାତିରେ ରହିଲ ସେଠାକୁ ଚାଲିଯାଅ ।

ଶ୍ରୀକୃଷ୍ଣ ତାଙ୍କର ଅଭିମାନ ଭାଙ୍ଗିବା ପାଇଁ ଯେତେ ଚାଟୁ କଥା କହିଲେ, ତହିଁରେ ସେ ବୋଧ ହେଲେ ନାହିଁ । କେବଳ କାନ୍ଦିବାରେ ଲଗିଲେ । ପରିଶେଷରେ ସଖି ଆସି ବହୁତ ବୁଝାଇଲା । ତଥାପି ଅଭିମାନିନୀର ମାନ ଭାଙ୍ଗିଲା ନାହିଁ । କ୍ରମେ ଦିବସ ଯାଇ ସନ୍ଧ୍ୟା ଉପସ୍ଥିତ ହେଲା । ଶ୍ରୀକୃଷ୍ଣ କୁଞ୍ଜ କୁଟୀରରେ ଉପସ୍ଥିତ ହୋଇ

ଦେଖିଲେ—ରାଧାଙ୍କର ମାନ ଦୂର ହୋଇନାହିଁ ବରଂ ତାହା ଦ୍ୱିଗୁଣିତ ହୋଇଛି । ତହୁଁ ସେ ପୂର୍ବପରି ସ୍ତୁତି ପ୍ରକାଶ କଲେ—

"ସ୍ଥଳ କମଳ ଗଞ୍ଜନଂ ମମ ହୃଦୟ ରଞ୍ଜନଂ

ଜନିତ ରତିରଙ୍ଗ ପରଭାଗଂ

ଭଣ ମସୃଣ ବାଣୀ— କରବାଣୀ ଚରଣଦ୍ୱୟଂ

ସରସ ଲସଦ-ଲକ୍ତ ରାଗଂ ।"

"—କୋଟିଏ ଲବଣ୍ୟ ଜିଣି ଯେଉଁ ପାଦ ଗଞ୍ଜଇ ସ୍ଥଳ କମଳ

ରତିରଙ୍ଗ ପାଇଁ ମନ ସହିତରେ ଗଞ୍ଜଇ ମୋ ହୃଦସ୍ଥଳ ।

ସେ ଚରଣ ସଖି ଦିଅ ମୋତେ ଏବେ କରେ ଅଳତା ରଞ୍ଜନ

ଏ ମୋର ଦଯ଼୍ୟିତା ଶୁଣି ରମାବର କହ କୋମଳ ବଚନ ।"

ମାତ୍ର ଅଭିମାନିନୀ ନିରୁତ୍ତର । ପୂର୍ବ ପରି ସେ ଅଧୋବଦନା ହୋଇ ବସି ରହି-ଛନ୍ତି । ଏଣେ ବେଳକୁ ବେଳ ଶ୍ରୀକୃଷ୍ଣ କାମ ପୀଡ଼ାରେ ଅସ୍ଥିର । ଏହାପରେ ଏକ-ମାତ୍ର ଉପାୟ ପାଦ ଧରି କ୍ଷମା ମାଗି ନେବା ।

ଲେଖନୀ ସ୍ଥଗିତ ହେଲା । ଯିଏ ବ୍ରହ୍ମାଣ୍ଡର ଠାକୁର ସେ ପୁଣି ସାଧାରଣ କାମୁକଙ୍କ ପରି ଗୋଟିଏ ନାରୀର ଚରଣ ଧରିବେ କିପରି ? ମନରେ ତାଙ୍କର ଅସଂଖ୍ୟ ପ୍ରଶ୍ନ । ଉଭୟ ଦିଗରେ ବିପଦ । ଲେଖନୀ ବନ୍ଦ କଲେ କାବ୍ୟ ଅସମ୍ପୂର୍ଣ୍ଣ ରହିବ, ଅନ୍ୟପଟେ ଲେଖନୀ ଚାଳନା କଲେ ଶ୍ରୀକୃଷ୍ଣଙ୍କୁ ରାଧାଙ୍କ ପାଦ ତଳେ ପକାଇବାକୁ ହେବ । କଣ କରିବେ କିଛି ସ୍ଥିର କରି ପାରିଲେ ନାହିଁ । ଏଥିପାଇଁ ଆହାର ନିଦ୍ରା ପର୍ଯ୍ୟନ୍ତ ପରିତ୍ୟାଗ କଲେ ।

ଦିବସ ପରେ ଦିବସ ଅତିକ୍ରାନ୍ତ ହେଲା । ପରିଶେଷରେ ସେ କାବ୍ୟଟି ଅସମ୍ପୂର୍ଣ୍ଣ ରଖିବାକୁ ସିଦ୍ଧାନ୍ତ କଲେ ।

ସେଦିନର ରାତ୍ରି ଯାଇ ପ୍ରଭାତ ହେଲା । ସକାଳୁ ଜୟଦେବ ନିଜର ନିତ୍ୟକର୍ମ ସାରି ନଦୀକୁ ସ୍ନାନ କରିବାକୁ ଗଲେ । ଦିବସର ପ୍ରଥମ ପ୍ରହର ଉତ୍ତୀର୍ଣ୍ଣ ହେଲା । ପଦ୍ମାବତୀ ପ୍ରଭାତରୁ ସ୍ନାନ କରି ସ୍ୱାମୀଙ୍କ ନିମନ୍ତେ ରନ୍ଧନ କାର୍ଯ୍ୟରେ ବ୍ୟସ୍ତ ରହିଲେ । ଏହି ସମୟରେ ହଠାତ୍ ଜୟଦେବ ଆସି ଦ୍ୱାରରେ ଉପସ୍ଥିତ ହେଲେ ।

ପଦ୍ମାବତୀ ବିସ୍ମିତା । ଏତେ ଶୀଘ୍ର ସ୍ୱାମୀ କିପରି ଫେରିଆସିଲେ ? ଥରେ

ଦୁଇଥର ସ୍ୱାମୀଙ୍କ ମୁହଁକୁ ଅନାଇ ପ୍ରଶ୍ନ କଲେ—ଆଜ୍ଞା ଏତେ ଶୀଘ୍ର ଫେରିଆସିଲ କିପରି ?

ଜୟଦେବ ଉତ୍ତର ଦେଲେ— ଯେଉଁ କବିତାର ପାଦ ପୂରଣ ପାଇଁ ଅସୁବିଧାରେ ପଡ଼ିଥିଲି, ତାହା ଦୂର ହୋଇଗଲା । ତେଣୁ ଲେଖିବା ପାଇଁ ତରବରରେ ସ୍ନାନ ଛାଡ଼ି ଚାଲି ଆସିଲି ।

ପତିଭକ୍ତା ନାରୀ ଆଉ କୌଣସି କଥା ନ କହି ରନ୍ଧନ କାର୍ଯ୍ୟ ଶୀଘ୍ର ଶେଷ କରିବା ପାଇଁ ଚାଲିଗଲେ । ଏଣେ ଜୟଦେବ ପୂଜା ଓ ଅର୍ଚ୍ଚନା ଶେଷ କରି ପୋଥି-ନେଇ ଲେଖାରେ ମନ ଦେଲେ । ପଦ୍ମାବତୀ ସ୍ୱାମୀଙ୍କୁ ଖାଇବାକୁ ଦେଲେ । ଜୟଦେବ ଖାଇ ସାରି ବିଶ୍ରାମ ନେବାରୁ ପଦ୍ମାବତୀ ସ୍ୱାମୀଙ୍କ ପ୍ରସାଦ ପାଇବା ପାଇଁ ତାଙ୍କର ଉଚ୍ଛିଷ୍ଟ ପାତ୍ରରେ ଖାଇ ବସିଲେ ।

ଏତିକିବେଳେ ଜୟଦେବ ଆସି ଦ୍ୱାରରେ କରାଘାତ କଲେ । ପଦ୍ମାବତୀ ଖାଇବ ସ୍ଥାନରୁ ଉଠି ଯାଇ ଦ୍ୱାର ଖୋଲି ଦେଲେ । ମାତ୍ର ଏ କଣ ? ସ୍ୱାମୀ ପଦାକୁ ଗଲେ କେତେବେଳେ ? ସେ ବିସ୍ମୟରେ ତାଙ୍କ ମୁହଁକୁ ଚାହିଁ ରହିଲେ ।

ଜୟଦେବ ମଧ୍ୟ ପଦ୍ମାବତୀଙ୍କୁ ଅଇଣ୍ଠା ହାତରେ ଦେଖି ବିସ୍ମିତ ହୋଇ-ଗଲେ । ପତିଭକ୍ତା ନାରୀ ସ୍ୱାମୀର ଭୋଜନ ପୂର୍ବରୁ ଜଳ ଗ୍ରହଣ କରିବା ନିଷେଧ । ସେ ନ ଆସୁଣୁ ପଦ୍ମା ଖାଇ ବସିଲେ କିପରି ?

ଦୁହେଁ ଦୁହିଁଙ୍କୁ ଚାହିଁ ରହିଛନ୍ତି । କାହାରି ମୁହଁରେ କଥା ନାହିଁ । କେତେ-ସମୟ ପରେ ପଦ୍ମାବତୀ ପ୍ରଶ୍ନ କଲେ— ତୁମେ ଖାଇ ପିଇ ଘରେ ଶୋଇଲ ? ମୁଁ କବାଟ ବନ୍ଦ କରି ଖାଇ ବସିଲି । ପୁଣି ବାହାରୁ ଆସିଲ କିପରି ?

ଜୟଦେବ ରହସ୍ୟ କିଛି ବୁଝିପାରିଲେ ନାହିଁ । ସ୍ତ୍ରୀଙ୍କର ମସ୍ତିଷ୍କ ବିକୃତି ଘଟିଛି ବୋଲି ସେ ଅନୁମାନ କରି ନୀରବ ରହିଲେ ।

ପଦ୍ମାବତୀ ପୁଣି କହିଲେ—ଏହି ଅଳ୍ପ ସମୟ ପୂର୍ବରୁ ତୁମେ ସ୍ନାନ ସାରି ଫେରିଆସି କହିଲ—ଗୋଟିଏ ପାଦ ମନେ ପଡ଼ିବାରୁ ତାକୁ ପୂରଣ କରିବା ପାଇଁ ତରବରରେ ଚାଲି ଆସିଲି । ତୁମେ ଲେଖନୀ ତାଳପତ୍ର ନେଇ ଲେଖି ବସିଲ, ମୁଁ ଭାତ ବାଢ଼ି ଦେଲି, ଖାଇସାରି ଘରେ ଶୋଇଲ । ତାପରେ······?

ଜୟଦେବଙ୍କ ସନ୍ଦେହ ତଥାପି ଦୂରୀଭୂତ ହେଲନାହିଁ । ସେ ପୋଥି ଆଣିବା ପାଇଁ ପଦ୍ମାବତୀଙ୍କୁ ନିର୍ଦ୍ଦେଶ ଦେଲେ ।

ପଦ୍ମାବତୀ ଠାକୁର ଘରୁ ପୋଥି ଆଣି ଦେଲେ । ଜୟଦେବ ଦେଖିଲେ—ତାଙ୍କର ଅସମାପ୍ତ ପାଦ ପୂରଣ ହୋଇଛି । ତହିଁରେ ଲେଖାଅଛି—

"ସ୍ମର ଗରଳ ଖଣ୍ଡନଂ, ମମ ଶିରସି ମଣ୍ଡନଂ
ଦେହି ପଦ ପଲ୍ଲବ ମୁଦାରଂ
ଜ୍ୱଳନ୍ତମସ୍ମି ଦାରୁଣୋ ମଦନ କଦନାନଳେ ।
ହରତୁ ତଦୁ ପାହିତ ବିକାରଂ ।"

ଜୟଦେବ ଆନନ୍ଦରେ ଅଧୀର ହୋଇ କହିଲେ—ପଦ୍ମା, ପଦ୍ମା କିଏ ଘରେ ଶୋଇଛି, ଚାଲ ମୁଁ ଦେଖିବି ।

ଦୁହେଁଯାକ ଶୟନ କକ୍ଷକୁ ଗଲେ । ମାତ୍ର ଦେଖିଲେ—କକ୍ଷଶୂନ୍ୟ, କେବଳ ଅଗୁରୁ ଚନ୍ଦନର ବାସ ଭାସି ଆସୁଛି ।

ଜୟଦେବ ଆବେଗଭରା କଣ୍ଠରେ କହିଲେ—ପଦ୍ମା, ତୁମେ ଭାଗ୍ୟବତୀ । ତୁମେ ଭଗବାନଙ୍କ ଦର୍ଶନ ଲାଭ କଲ । ପଦ୍ମା, ସେ ଆଉ କେହି ନୁହନ୍ତି ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ । ମୁଁ ପାପୀ ତାଙ୍କ ଦର୍ଶନ ପାଇଲି ନାହିଁ ।

ସେହି ଦିବସର ରଜନୀ ଅତୀତ ହେଲା । ଭଗବାନଙ୍କ ଦର୍ଶନରୁ ବଞ୍ଚିତ ହୋଇ ଜୟଦେବ ମନ ଦୁଃଖରେ ନଦୀକୁ ସ୍ନାନ କରିବାକୁ ଗଲେ । ନଦୀରେ ସ୍ନାନ କରୁ କରୁ ଅନ୍ତରରେ ତାଙ୍କର ଦାରୁଣ ବିଷାଦ ଜାତ ହେଲା । ସେ ସେହି ନଦୀ ଜଳରେ ଧ୍ୟାନ ମଗ୍ନ ହେଲେ । କ୍ରମେ ତାଙ୍କର ଚେତନା ଲୋପ ପାଇଗଲା ଏବଂ ସେ ନଦୀ ସ୍ରୋତରେ ଭାସି ଭାସି ଗଲେ ।

ଦିବସ ଯାଇ ସନ୍ଧ୍ୟା ଉପଗତ ହେଲା । ଜୟଦେବ ଫେରିଲେ ନାହିଁ । ସତୀ-ଶିରୋମଣି ପଦ୍ମା ଅନାହାରରେ ସ୍ୱାମୀଙ୍କ ପଥ ଚାହିଁ ରହିଲେ । ନୟନରେ ଲୋତକ, ହୃଦୟରେ କୋହ, ସ୍ୱାମୀଙ୍କର କୌଣସି ସମ୍ବାଦ ନାହିଁ । ଦିଅଁଙ୍କର ମଧ୍ୟ ପୂଜା ଅର୍ଚ୍ଚନା ହୋଇ ନାହିଁ ।

ସନ୍ଧ୍ୟା ଆଗମନ ଦେଖି ଘରେ ଘରେ ସନ୍ଧ୍ୟାଦୀପ ଜଳିଲା । ଦେବାଳୟ-ମାନଙ୍କରୁ ଶୁଭିଲା—ଶଙ୍ଖ, ଘଣ୍ଟା ଓ ମୃଦଙ୍ଗର ଆରତିକ ଶବ୍ଦ । ପଦ୍ମାବତୀ ରାଧା ମାଧବଙ୍କ ନିକଟରେ ସନ୍ଧ୍ୟାଦୀପ ଜାଳି ଦେଇ ପ୍ରଣାମ କଲେ । ତାପରେ ଠାକୁରଙ୍କ ନିକଟରେ ବସି କାନ୍ଦି କାନ୍ଦି ନିବେଦନ କଲେ—ହେ ଦେବତା, ତାଙ୍କୁ ଫେରାଇ ଆଣ ।

ସତୀର ଅନ୍ତିମ ଗୁହାରି ଦେବତାଙ୍କ କାନରେ ବାଜିଲା । ଜୟଦେବ ସେତେବେଳେ ନଦୀବକ୍ଷରେ ଭାସି ଭାସି ଯାଉଥାଆନ୍ତି । ହଠାତ୍ ସମୁଦ୍ରର କୂଅର ଫୁଲି ଉଠି ଏକ ଜଳ ପ୍ରବାହ ବେଳା ଅଞ୍ଚଳକୁ ମାଡ଼ି ଆସିଲା । ଜୟଦେବ ତହିଁରେ ଭାସି ଭାସି ଆସିଲେ । ସେ ଜଳସ୍ରୋତ କେନ୍ଦୁବିଲ୍ୱ ନିକଟରେ ପହଞ୍ଚିବା ମାତ୍ରେ ଏକ ଲହରୀର ଆଘାତରେ ଜୟଦେବ ଆସି ନୀଳ ତମାଳ ବନରେ ଲାଗିଲେ—ତାପରେ ମୁହୂର୍ତ୍ତକ ମଧ୍ୟରେ ସେ ସୋତଯାଇ ପ୍ରାଚୀ ନଦୀରେ ମିଳିତ ହେଲା । ଜଳସ୍ରୋତର ନିର୍ଘୋଷ ଗର୍ଜନ ଶୁଣି ଲୋକମାନେ ଧାଇଁ ଆସି ଦେଖିଲେ—ଶାସନ ନିକଟରେ ନଦୀଟିଏ ବହିଯାଉଛି ଏବଂ ନଦୀ କୂଳରେ ଜୟଦେବ ଠାକୁର ଅଚେତ ଅବସ୍ଥାରେ ପଡ଼ି ରହିଛନ୍ତି ।

ଅବଶେଷରେ ମୋହନ ଏବଂ କାଦମ୍ବିନୀ ଦୁହେଁ ଆସି ରାଧାମାଧବଙ୍କ ମନ୍ଦିର ନିକଟରେ ଉପସ୍ଥିତ ହେଲେ । ରଜନୀ ପ୍ରଥମ ପ୍ରହର, ସ୍ନିଗ୍ଧ ଜ୍ୟୋତ୍ସ୍ନା, ରଜତଶୁଭ୍ର ଆକାଶ । ସବୁମିଳି କପରି ଏକ ମନୋମୁଗ୍ଧକର ପରିବେଶ ।

ପୂଜକ କେତେବେଳୁ ପୂଜା ବଢାଇ ଚାଲିଯାଇଛି । ମନ୍ଦିରର ଗର୍ଭଗୃହରେ ସ୍ତିମିତ ଦୀପାଲୋକ । ପବନରେ ଝୁଣା ଏବଂ ଗୁଗ୍ଗୁଳର ସୁରଭି । କାଦମ୍ବିନୀ ଏବଂ ମୋହନ ରାଧାମାଧବଙ୍କୁ ପ୍ରଣାମ କରି ପ୍ରାର୍ଥନା ଗାନ କଲେ—

"କଦାଚିତ୍ କାଳିନ୍ଦୀତଟ-ବିପିନ ସଙ୍ଗୀତ କର ବୋ
ମୁଦାଭୀରୀନାରୀ ବଦନ କମଳାସ୍ୱାଦ-ମଧୁପଃ
ରମାଶମ୍ଭୁବ୍ରହ୍ମା ସୁରପତିଗଣେଶାର୍ଚ୍ଚିତ ପଦୋ ।
ଜଗନ୍ନାଥଃ ସ୍ୱାମୀ, ନୟନପଥଗାମୀ ଭବତୁମେ ।
ଭୁଜେ ସବ୍ୟେ ବେଣୁଂ ଶିରସି ଶିଖି ପୁଚ୍ଛଂ କଟିତଟେ ।
ଦୁକୂଳଂ ନେତ୍ରାନ୍ତେ ସହଚର କଟାକ୍ଷଂ ବିଦଧତେ
ସଦାଶ୍ରୀମଦ୍ ବୃନ୍ଦାବନ ବସତିଲୀଳା ପରିଚୟୋ—
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁମେ ।"

ପ୍ରାର୍ଥନା ଶେଷରେ ଦୁହେଁ ଆସି ମନ୍ଦିର ଚତ୍ୱରର ତମାଳ ବୃକ୍ଷ ମୂଳରେ

ଉପବେଶନ କଲେ । ତମାଳର କୃଷ୍ଣ କଳେବରରେ ନବଡ଼ ଶ୍ୟାମଳ ପଲ୍ଲବ । ତହିଁରେ ଲାଗିଥିବା ଶିଶିର ବିନ୍ଦୁରେ ଚନ୍ଦ୍ରକିରଣ ପ୍ରତିଫଳିତ ହୋଇ ଅପୂର୍ବ ଶୋଭା ଧାରଣ କରିଛି । ମନେହୁଏ ସତେ ଯେପରି ହେମ ଗୌରାଙ୍ଗୀ ରାଧିକାଙ୍କର ବାହୁ ବେଷ୍ଟନରେ ରସରାଜ ଶ୍ରୀକୃଷ୍ଣ ଆବଦ୍ଧ । ପତ୍ରର ଫାଙ୍କେ ଫାଙ୍କେ ଗୋଟିଏ ଦୁଇଟି ଜ୍ୟୋତ୍ସ୍ନାର ଧାର ଆସି ପଡ଼ୁଥିଲା କାଦମ୍ବିନୀର ମୁଖରେ । ଦୁହେଁ ଦୁହିଁଙ୍କୁ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଥିଲେ ।

କାଦମ୍ବିନୀର ପ୍ରତିଟି ଦୃଷ୍ଟିର ନୂତନ ପଲକରେ ସ୍ନେହ, ମମତା, ପ୍ରେମ ଓ ଅନୁରାଗର ପୁଷ୍ପଗୁଡ଼ିକ ପ୍ରସ୍ଫୁଟିତ ହେଉଥିଲା । ଲୋହିତ ଉଚ୍ଛ୍ୱସିତ ଓଷ୍ଠର ଅପରୂପ କମ୍ପନରେ ତାର ପ୍ରତିଟି ପାଖୁଡ଼ା ଖୋଲି ଯାଉଥିଲା । ତହିଁରେ ଅଧ୍ୟାତ୍ମ କ୍ଷୁଧା ଅପେକ୍ଷା ପ୍ରାଣ ପ୍ରାଚୁର୍ଯ୍ୟର ତାଡ଼ନା ଓ ଯୌବନ ଚେତନାର ଦୁରନ୍ତ ବ୍ୟାକୁଳତା ଥିଲା ବେଶୀ ।

ଚତୁର୍ଦ୍ଦିଗରେ ଅଖଣ୍ଡ ନୈଶ ନିସ୍ତବ୍ଧତା । ଗୋଟିଏ ଦୁଇଟି ନିଶାଚର ପକ୍ଷୀ ମନ୍ଦିର ଚତ୍ୱର ଉପରେ ଆକାଶରେ ଉଡ଼ି ଉଡ଼ି ଯାଉଛନ୍ତି । ଅଦୂରରୁ ଭାସି ଆସୁଛି ଜଳଦେବୀଙ୍କର କଙ୍କଣ ନିକ୍ୱଣ ପରି ପ୍ରାଚୀ ନଦୀର କଳ କଳ ଧ୍ୱନି ।

ମୋହମୟୀ ରଜନୀ । ସ୍ୱପ୍ନାବିଷ୍ଟ ଚରାଚର ଜଗତ ।

କେତେ ସମୟ ଅତୀତ ହେଲାପରେ କାଦମ୍ବିନୀ ଗୁଣ୍ ଗୁଣ୍ ସ୍ୱରରେ ଆରମ୍ଭ କଲା— ଶ୍ରୀ ଗୀତଗୋବିନ୍ଦ ପଦାବଳୀ । କ୍ରମେ ତାର ଅସ୍ଫୁଟ ସ୍ୱର ଝଙ୍କାର ସ୍ପଷ୍ଟତର ହେବାକୁ ଲାଗିଲା । କାଦମ୍ବିନୀ ଗାନ କଲା ବସନ୍ତ ବର୍ଣ୍ଣନା—

"ଉନ୍ମଦ ମଦନ ମନୋରଥ ପଥିକ ବଧୂଜନ ଜନିତ ବିଳାପେ,
ଅଳିକୁଳ ସଂକୁଳ କୁସୁମ ସମୂହ ନିରାକୁଳ ବକୁଳ କଳାପେ
ମୃଗମଦ ସୌରଭ ରଭସ ବଶମ୍ବଦ ନବଦଳ ମାଳ ତମାଳେ
ଯୁବାଜନ ହୃଦୟ ବିଦାରଣ ମନସିଜ ନଖରୁଚି କିଂଶୁକ ଜାଲେ ।"

କାଦମ୍ବିନୀର ସୁଲଳିତ ସ୍ୱର ଲହରରେ ମୋହନ ଆତ୍ମ ବିସ୍ମୃତ । ତାର ମନେ ହେଉଥିଲା— ଦେବତା ନିକଟରେ କାଦମ୍ବିନୀର ଏ ନିବେଦନ ଯେପରି ଜୀବନର ନୈବେଦ୍ୟ ସେ ଏ ନୈବେଦ୍ୟ ମନୁଷ୍ୟ ନିକଟରେ ଟେକି ଧରିନାହିଁ, ମନୁଷ୍ୟକୁ ସାକ୍ଷୀ ରଖି ଟେକି ଧରିଛି ତାର ଉଦ୍ଦେଶ୍ୟ ।

ରୂପସୀ ନାରୀ— ପୁଣି ସଙ୍ଗୀତ ପଟିୟସୀ ।

ନୀରବ ନିସ୍ତବ୍ଧ ଧରଣୀ ।

ନିର୍ଜ୍ଜନ ପରିବେଶ ।

ମୋହନ ହୃଦସ୍ପନ୍ଦର ତରଙ୍ଗ ବିକ୍ଷୋଭକୁ ବହୁ କଷ୍ଟରେ ସଂଯତ କରୁଥିଲା ।

ହଠାତ୍ ଏକ ବର୍ଚ୍ଛା ଆସି କାଦମ୍ବିନୀର ବୁକ୍ ଭେଦ କଲା । ସେ ଚିତ୍କାର କରି ଭୂମିରେ ପତିତ ହେଲା ।

ସେ ଶବ୍ଦରେ ପ୍ରାଙ୍ଗଣର ମୁକୁଳିତ ତମାଳ ଶାଖାରେ ବିଶ୍ରାମରତ ଚକ୍ରବାକ ଦମ୍ପତ୍ତି ଚମକି ଚିତ୍କାର କରି ଉଠିଲେ । ଆକାଶର ଗ୍ରହ ଓ ନକ୍ଷତ୍ରର ଜ୍ୟୋତି ନିଷ୍ପ୍ରଭ ହୋଇଗଲା । ପ୍ରାଚୀର ଉତ୍ତାଳ ଜଳରାଶି ଅଧୀର ସ୍ୱରରେ ବେଳା ଭୂମିରେ ମୁଣ୍ଡ ପିଟି ଦେଲେ । ଅଗସ୍ତ୍ୟ ବୃକ୍ଷରୁ ଝଡ଼ି ପଡ଼ିଲା ଦୁଇ ଗୁଚ୍ଛି ଛିନ୍ନ ମୁକୁଳ ।

ମୋହନ କିଂକର୍ତ୍ତବ୍ୟ ବିମୂଢ଼ ଅବସ୍ଥାରେ କେବଳ ଚତୁର୍ଦ୍ଦିଗକୁ ନିରୀକ୍ଷଣ କରିବାରେ ଲାଗିଲା ।

କେତେଜଣ ଲୋକ ମନ୍ଦିର ଚତ୍ୱରକୁ ପଶି ଆସି ତାର ହସ୍ତ, ମୁଖ ଓ ପାଦ ବାନ୍ଧି ଦେଲେ । ଜଣେ ଆଦେଶ ଦେଲା— ଏହାକୁ ନେଇ ମହୋଦଧିରେ ଜୀବନ୍ତ ସମାଧି ଦିଅ ।

ପ୍ରତିହିଂସାର ତୀବ୍ର ପ୍ରତିଶୋଧ ।

*　　　*

*

ପ୍ରତିଶୋଧର ଅଗ୍ନି ମଧ୍ୟ ଜଳି ଉଠିଥିଲା କ୍ଷୁଦ୍ର ଅରଣ୍ୟଗଡ଼ ଦୁର୍ଗରେ । ସାରଙ୍ଗ-ଗଡ଼ର ଯୁବରାଜ ଅବରୋଧ କରିଛନ୍ତି ଦୁର୍ଗକୁ । ଜନାର୍ଦ୍ଦନ ଧରି ଦୁର୍ଗ ଦ୍ୱାର ବନ୍ଦ । ମୁଷ୍ଟିମେୟ ସୈନ୍ୟ ଆତ୍ମରକ୍ଷାରେ ବ୍ୟାପୃତ ଅଛନ୍ତି । ଦୁର୍ଗର ଗୁପ୍ତ ଦ୍ୱାର ବାଟେ ଜଣେ ଅଶ୍ୱାରୋହୀ ଦୂତ ଗଜପତିଙ୍କର ସାହାଯ୍ୟ ଭିକ୍ଷା କରି କଟକ ଦୁର୍ଗକୁ ଯାଇଛି ।

ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ କଳବର୍ଗେଶ୍ୱର-ଧିରାଜ, ଭୂତ, ଭୈରବ, ଦେବ-ସାଧୁ ଶାସନୋତ୍କୀର୍ଣ୍ଣ ରାଉତରାଜ, ଅତୁଳବଳ ପରାକ୍ରମ, ସଂଗ୍ରାମ ସହସ୍ରବାହୁ, କ୍ଷତ୍ରୀୟକୁଳ ଧୂମକେତୁ, ଶ୍ରୀ ଶ୍ରୀ ମୁକୁନ୍ଦଦେବ ମହାରାଜା ବର୍ତ୍ତମାନ ଉତ୍କଳର ଗଜପତି । କଟକର ବାରବାଟୀ ଦୁର୍ଗରେ ନବତଳ ପ୍ରାସାଦ ନିର୍ମାଣ

କରୁଛନ୍ତି ତନ୍ମଧ୍ୟରେ ବାସ କରୁଛନ୍ତି । ଅଶୋକଙ୍କ କଳିଙ୍ଗ ବିଜୟଠାରୁ ଦୀର୍ଘ ଦୁଇ ହଜାର ବର୍ଷ ଧରି ଉତ୍କଳ କେବଳ ତାର ସ୍ୱାଧୀନତା ରକ୍ଷା କରିନାହିଁ, ବରଂ ନୂଆ ନୂଆ ରାଜ୍ୟ ଜୟ କରି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରି ପାରିଛି ।

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ରକ୍ତବାହୁଠାରୁ ଆରମ୍ଭ କରି ମହମ୍ମଦ ସିରାଜ, ତୋଘାନ ଖାଁଙ୍କ ପର୍ଯ୍ୟନ୍ତ ସମସ୍ତେ ଉତ୍କଳ ଆକ୍ରମଣ କରି ବ୍ୟର୍ଥ ହୋଇଛନ୍ତି । ବଙ୍ଗଳାର ଶେଷ ସ୍ୱାଧୀନ ହିନ୍ଦୁରାଜା ଲକ୍ଷ୍ମଣ ସେନ ଏହି ଉତ୍କଳୀୟର ବିଶାଳ ବାହୁକୁ ଆଶ୍ରୟ କରିଛନ୍ତି; ପୁଣି ବୁଦ୍ଧ, ନାନକ, ଚୈତନ୍ୟ, ଶଙ୍କର, ଜୀନ ପ୍ରଭୃତି ମହାପୁରୁଷ-ମାନେ ସେମାନଙ୍କ ଧର୍ମମତ ଏହିଠାରେ ପ୍ରଚାର କରି ଯାଇଛନ୍ତି ଉତ୍କଳ ଶତ୍ରୁମାନଙ୍କ ନିକଟରେ ଯେପରି ପ୍ରବଳ ପରାକ୍ରମ ଦେଖାଇ ଆସିଛି: ମିତ୍ରମାନଙ୍କୁ ମଧ୍ୟ ସେହିପରି ଉଦାରତା ଦେଖାଇଛି । ତେଣୁ ଓଡ଼ିଆ ସେମାନଙ୍କ ରାଜାଙ୍କ ପାଇଁ ଗର୍ବ କରେ, ଜନ୍ମ ପତ୍ରିକାରେ ନିଜକୁ ଗଜପତି ଦେଶର ପ୍ରଜା ବୋଲି ପରିଚୟ ଦିଏ । ତନ୍ମଧ୍ୟରେ ଉଲ୍ଲେଖ କରେ—ବୀରଶ୍ରୀ ଗଜପତି, ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ କଳ-ବର୍ଗେଶ୍ୱର······

ଦୁର୍ଗାରଣ୍ୟ ଉତ୍କଳର ରାଜଧାନୀ ବାରବାଟୀ ଦୁର୍ଗ ଚନ୍ଦନ ବୃକ୍ଷ ସଦୃଶ ବିରାଜ-ମାନ । ଗଜପତି ମହାରାଜାମାନେ ମୃଦୁ ସମୀରଣ ପରି ଚତୁର୍ଦ୍ଦିଗରେ ଏହାର ସୁବାସ ବିତରଣ କରାଉଛନ୍ତି । ଚନ୍ଦନ ବୃକ୍ଷକୁ ଭୁଜଙ୍ଗ ଜଗି ରହିବା ପରି ଚୌଦ୍ୱାର, ବିଡାନାସୀ ଓ ସାରଙ୍ଗଗଡ଼ ଦୁର୍ଗ କାଳ ଭୁଜଙ୍ଗତୁଲ୍ୟ ଏହାର ଉତ୍ତର, ଦକ୍ଷିଣ ଏବଂ ପଶ୍ଚିମ ଦିଗ ଜଗି ରହିଛନ୍ତି । ସର୍ପର ପୁଚ୍ଛ ସଦୃଶ ବହି ଯାଉଛି ମହାନଦୀ ଓ କାଠଯୋଡ଼ି । ଓଡ଼ିଶାର ଗଜପତିମାନେ ଏହିଠାରେ ରହି ଆ ଗଙ୍ଗା ଗୋଦାବରୀ ରାଜ୍ୟ ଶାସନ କରନ୍ତି ।

ବାରବାଟୀର ନବତଳ ପ୍ରାସାଦ । ଷୋଡ଼ଶ ଶତାବ୍ଦୀରେ ସମଗ୍ର ଭାରତରେ ଏକ ବିସ୍ମୟକର ଅଟ୍ଟାଳିକା । ଦୁର୍ଗର ଚତୁଃପାର୍ଶ୍ୱରେ ଦୁଇଟି ପ୍ରସ୍ତର ପ୍ରାଚୀର । ଗୋଟିଏ ବାହାରେ ଏବଂ ଅନ୍ୟଟି ଭିତରେ ! ବାହାର ପ୍ରାଚୀରର ପୂର୍ବ ଦିଗରେ ପ୍ରକାଣ୍ଡ ଦ୍ୱାରଦେଶ । ତାର ଚତୁଃପାର୍ଶ୍ୱରେ ବୃହତ ପରିଖା । ଦୁର୍ଗର ପ୍ରଥମ ମହଲ ହସ୍ତୀ, ଓଟ ଘୋଟକ ପ୍ରଭୃତି ପାଳିତ ପଶୁମାନଙ୍କ ନିମନ୍ତେ ଉଦ୍ଦିଷ୍ଟ । ଦ୍ୱିତୀୟ ତଳ ଗୋଳାଗୁଳି ଓ ଅନ୍ୟାନ୍ୟ ଯୁଦ୍ଧୋପକରଣ ଏବଂ ପ୍ରହରୀମାନଙ୍କ ବାସସ୍ଥାନ । ତୃତୀୟ ଦୁର୍ଗ ରକ୍ଷକ ଦ୍ୱାରୀ ଓ ଅନ୍ୟାନ୍ୟ ଆଜ୍ଞାବାହୀମାନଙ୍କ ବାସସ୍ଥାନ ଚତୁର୍ଥତଳ ଶିଳ୍ପୀ ଓ

କଳାକାରମାନଙ୍କ ପାଇଁ ଉଦ୍ଦିଷ୍ଟ । ୫ମ ତଳରେ ରନ୍ଧନଶାଳା, ଆଗନ୍ତୁକମାନଙ୍କ ସହ ସାକ୍ଷାତ ଓ ଆଳାପ ଏବଂ ୬ଷ୍ଠ ତଳ ରାଜ ଦରବାର ନିମନ୍ତେ ବ୍ୟବହୃତ ହୁଏ । ୭ମ ତଳରେ ରାଜାଙ୍କର ବିଳାସ କକ୍ଷ । ତନ୍ମଧ୍ୟରେ ପାଶବାଶକ ଓ ଗୋପନୀୟ କାର୍ଯ୍ୟମାନ ସାଧିତ ହୁଏ । ମହିଳାମାନେ ଅଷ୍ଟମ ତଳରେ ବାସ କରନ୍ତି । ନବମ ତଳ ରାଜାଙ୍କର ଶୟନାଗାର ।

ସ୍ଥାପତ୍ୟକଳାଶାଳିନୀ, ମନ୍ଦିରମାଳିନୀ, ସ୍ୱର୍ଣ୍ଣପ୍ରସୂ ଉତ୍କଳର ଗଜପତିମାନେ କେବଳ ବିଳାସ ବ୍ୟସନରେ ଦିନ କାଟନ୍ତି ନାହିଁ, ରାଜ୍ୟର ଦୂରତମ ପ୍ରାନ୍ତର କଠିନ ଚିନ୍ତା ମଧ୍ୟ କରନ୍ତି । ସେ ଚିନ୍ତା ନିଷ୍ପନ୍ଦିତ, ହୁଏତ ଅହରହ । ନିଜ ରାଜ୍ୟ ବ୍ୟତୀତ ଅପର ବନ୍ଧୁରାଷ୍ଟ୍ରମାନଙ୍କର ମଧ୍ୟ ସୁଖ, ଦୁଃଖ ଓ ଜଟିଳ ରାଜନୀତି ପରିସ୍ଥିତିର ଆଲୋଚନା ଚାଲେ ।

ସୂର୍ଯ୍ୟୋଦୟର ଦୁଇ ଘଡ଼ି ଆଗରୁ ମହାରାଜା ଶଯ୍ୟାତ୍ୟାଗ କରି ପ୍ରାତଃକୃତ୍ୟ ଶେଷ କରନ୍ତି । ତାପରେ ବିଭିନ୍ନ ଦେଶରୁ ଆସିଥିବା ଗୁପ୍ତଚରମାନଙ୍କ ଠାରୁ ବିବରଣୀ ସଂଗ୍ରହ କରନ୍ତି । ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ ସ୍ନାନ ଓ ଦେବତା ଆରାଧନା । ଏ କାର୍ଯ୍ୟ ଶେଷ ହେବା ପରେ ଦୀନ ଦୁଃଖୀମାନଙ୍କର ଆବେଦନ ନିବେଦନ ବିଚାର ହୁଏ । ଦିବସର ପ୍ରଥମ ପ୍ରହରରେ ମନ୍ତ୍ରଣା କକ୍ଷରେ ସାଧାରଣ ଦରବାର ଆରବ୍ଧ ହୁଏ । ସେଠାରେ ଯୋଗ୍ୟ ବ୍ୟକ୍ତିଙ୍କୁ ପଦ ମର୍ଯ୍ୟାଦା ଓ ପୁରସ୍କାର ଦିଆଯାଏ ଏବଂ ଦୈନିକ ଆୟବ୍ୟୟର ହିସାବ ମଧ୍ୟ ହୁଏ ।

ଦିବସର ୨ୟ ପ୍ରହର ବେଳକୁ ମହାରାଜା ଅନ୍ତଃପୁରକୁ ଯାଆନ୍ତି । ଖାଇବା ପିଇବା ଶେଷ ହୁଏ । ତାପରେ ସାମୟିକ ବିଶ୍ରାମ । ୩ୟ ପ୍ରହରରେ ଅନ୍ତଃପୁରର ଆପତ୍ତି ଅଭିଯୋଗ, ଆତ୍ମୀୟମାନଙ୍କର ବୃତ୍ତି, କୁମାରୀ କନ୍ୟାମାନଙ୍କର ବିବାହ, ଯୌତୁକ, ପୂଜା-ପାର୍ବଣ ଏବଂ ମଙ୍ଗଳ ଅନୁଷ୍ଠାନ ପାଇଁ ଖର୍ଚ୍ଚ ମଞ୍ଜୁରିର ବ୍ୟବସ୍ଥା ହୁଏ ।

୪ର୍ଥ ପ୍ରହରରେ ବସେ ଖୋଲା ଦରବାର । ସେଠାରେ ଜଟିଳ ପ୍ରଶ୍ନର ଆଲୋଚନା ହୁଏ ଏବଂ ରାଜନୈତିକ ବିଭିନ୍ନ ସମସ୍ୟାର ସମାଧାନ ହୁଏ । କାହାର ଦଣ୍ଡ ବିଧାନ ହୁଏ, କାହାର ଦଣ୍ଡ ମକୁବ ରହେ, କାହାକୁ ବା ଖଲାସ ମିଳେ । ମିତ୍ର ରାଜା ଓ ବନ୍ଧୁମାନଙ୍କର ଆପତ୍ତି ଅଭିଯୋଗର ବିଚାର କରାଯାଏ । ଯୁଦ୍ଧ, ସନ୍ଧି ପ୍ରଭୃତି ଗୂଢ଼ତମ ପ୍ରଶ୍ନର ସମାଧାନ ଏବଂ ରାଜ୍ୟର ଉନ୍ନତି ତଥା ପ୍ରଜାମାନଙ୍କର ମଙ୍ଗଳ ବିଧାନ

ପାଇଁ ନାନା ପ୍ରଶ୍ନ ଆଲୋଚିତ ହୁଏ । ରାତ୍ରିର ପ୍ରଥମ ପ୍ରହରରେ ହୁଏ ଗୁଣୀ, ପଣ୍ଡିତ ଏବଂ ବିଦୂଷକମାନଙ୍କର ସମାବେଶ । କବିତା, ସାହିତ୍ୟ ଓ ଧର୍ମତତ୍ତ୍ୱର ଆଲୋଚନା ସେଠାରେ ହୁଏ । ତାପରେ ଆମୋଦ-ପ୍ରମୋଦ ଓ ବିଶ୍ରାମ ।

ଏହିପରି ଏକ ଦିବସର ଖୋଲା ଦରବାର ସମୟରେ ବାର୍ତ୍ତାବହ ଆସି ସମ୍ବାଦ ଦେଲା— ଅରଣ୍ୟଗଡ଼ ଦୁର୍ଗ ଅବରୋଧ ଏବଂ ଅରଣ୍ୟଗଡ଼ର ସର୍ଦ୍ଦାର ଗଜପତିଙ୍କର ସାହାଯ୍ୟ ପ୍ରାର୍ଥୀ । ମୁହୂର୍ତ୍ତେ ବିଳମ୍ବ ହେଲେ କ୍ଷୁଦ୍ର ଦୁର୍ଗଟି ଭୂମିସାତ ହୋଇ ଯିବାର ସମ୍ଭାବନା ।

ମହାରାଜା ମୁକୁନ୍ଦଦେବ ମହାମାତ୍ୟଙ୍କ ମୁହଁକୁ ଚାହିଁଲେ । ମହାମାତ୍ୟ ପରାମର୍ଶ ଦେଲେ— ମହାବଳାଧିକ୍ଷ ଯୁଦ୍ଧ ପାଇଁ ପ୍ରସ୍ତୁତ ହୁଅନ୍ତୁ ଏବଂ ଦୁଇଜଣ ବିଶ୍ୱସ୍ତ ଗୁପ୍ତଚର ଦ୍ରୁତଗାମୀ ଅଶ୍ୱପୃଷ୍ଠରେ ଯାଇ ଆଜି ରାତ୍ରି ମଧ୍ୟରେ ଯୁଦ୍ଧର ସମସ୍ତ ବିବରଣୀ ସଂଗ୍ରହ କରି ପ୍ରଭାତ ପୂର୍ବରୁ ଉପସ୍ଥାପନ କରନ୍ତୁ । ମହାରାଜା ସ୍ୱୀକୃତି ଦେଲେ । ଆଦେଶ ପ୍ରତିପାଳିତ ହେଲା ।

ସାରଙ୍ଗଗଡ଼ର ଗୁପ୍ତଚର ଏ ସମ୍ବାଦ ଶୁଣି ସଙ୍ଗେ ସଙ୍ଗେ ଯାଇ ଯୁବରାଜଙ୍କ ନିକଟରେ ସମସ୍ତ ବାର୍ତ୍ତା ପ୍ରଦାନ କଲା । ଯୁବରାଜ ସେହି ମୁହୂର୍ତ୍ତରେ ଅବରୋଧ ଉଠାଇ ନେଇ ସସୈନ୍ୟେ ନିଜ ରାଜଧାନୀକୁ ଯାତ୍ରା କଲେ । ଅରଣ୍ୟଗଡ଼ ମୁକ୍ତ ହେଲା । ମାତ୍ର ମୁକୁନ୍ଦଦେବ ରାଜ୍ୟରେ ବିଶୃଙ୍ଖଳା ପାଇଁ ସାରଙ୍ଗଗଡ଼ର ରାଜାଙ୍କୁ ଦାୟୀ କରି ସତର୍କ କରାଇଦେଲେ ।

ଏହିଠାରୁ ବିରୋଧ ସଂଘର୍ଷର ଆରମ୍ଭ । ରାଜା ରାମଚନ୍ଦ୍ର ଭଞ୍ଜ ଏ ଅପମାନର ପ୍ରତିଶୋଧ ନେବା ପାଇଁ ଦୃଢ଼ ପ୍ରତିଜ୍ଞ ହେଲେ ।



ମହାକାଳର ରଥ ଚକ୍ର ସତତ ଗତିଶୀଳ । କାହାରି ମୁହଁକୁ ଚାହିଁ ମାୟା, ମମତାରେ ସେ ତାର ଚାଲିବା ପଥ ବନ୍ଦ କରେ ନାହିଁ । ନିର୍ମ୍ମମ ନିରଳସ ସେ ଗତି । କାଳର ଏହି ଗତି ପଥରେ କେତେ ଯେ ଉତ୍‌ଥାନ ପତନ ଘଟେ, କେତେ ରାଜ୍ୟ ଧ୍ୱଂସ ହୁଏ ଏବଂ ପୁଣି ଦିନେ ସେହି ଧ୍ୱଂସ ସ୍ତୂପରୁ କେତେ ଯେ ନୂତନ ରାଜ୍ୟ ଗଢ଼ି ଉଠେ, ତାର ହିସାବ କିଏ ରଖେ ! ତାହା ଜାଣେ କେବଳ ମହାକାଳ । ସମସ୍ତଙ୍କ

ଅଲକ୍ଷ୍ୟରେ ସେ ତାଙ୍କୁ ଟିପି ରଖେ, ନିଜର ହିସାବ ଖାତାରେ । ସେହି ପୃଷ୍ଠା ଓଲଟି ଯାଏ ତାହା ହୁଏ ଅତୀତ, ଯାହା ଚାଲେ ତାହା ବର୍ତ୍ତମାନ ଏବଂ ଯାହା ଆସିବ ତାହା ହେଉଛି ଭବିଷ୍ୟତ ।

ଭାରତରେ ମୋଗଲ ସାମ୍ରାଜ୍ୟର ସ୍ଥାପକ ବାବରଙ୍କ ମୃତ୍ୟୁ ପରେ ତାଙ୍କର ଜ୍ୟେଷ୍ଠପୁତ୍ର ହୁମାୟୁନ ଦିଲ୍ଲୀ ସିଂହାସନରେ ବସିଲେ । ମାତ୍ର ରାଜଲକ୍ଷ୍ମୀ ଅନୁକୂଳ ହେଲେ ନାହିଁ । ଶେରସାହ ନାମକ ଜଣେ ଜାଗୀରଦାର ତାଙ୍କୁ ପରାସ୍ତ କରି ଭାରତର ରାଜଧାନୀ ଅଧିକାର କଲେ । ହୁମାୟୁନ ଆଫଗାନସ୍ଥାନ ଅଭିମୁଖେ ପଳାଇଗଲେ ।

ରଙ୍ଗମଞ୍ଚରେ ପ୍ରତିନିୟତ ପଟ୍ଟ ପରେ ପଟ୍ଟ ଉତ୍ତୋଳିତ ଏବଂ ଦୃଶ୍ୟ ପରେ ଦୃଶ୍ୟ ପରିବର୍ତ୍ତିତ ହେଲା ପରି ସଂସାରରେ ମଧ୍ୟ ଉତ୍ଥାନ ପତନ ଏବଂ ସୁଖ ଦୁଃଖର ସମସ୍ତ କିଛି ପରିବର୍ତ୍ତିତ ହୁଏ ।

ଶେରସାହାଙ୍କ ମୃତ୍ୟୁପରେ ତାଙ୍କର ଦୁର୍ବଳ ବଂଶଧରମାନେ ଦିଲ୍ଲୀ ସିଂହାସନରେ ବସିଲେ । ମାତ୍ର ସେମାନଙ୍କ ଦୁର୍ବଳତାର ସୁଯୋଗନେଇ ରାଜ୍ୟରେ ବିଦ୍ରୋହ ଦେଖା-ଦେଲା । ଏତିକବେଳେ ହୁମାୟୁନ ନିଜ ଭାଗ୍ୟ ପରୀକ୍ଷା କରିବାପାଇଁ ପୁଣି ଥରେ ଦିଲ୍ଲୀ ଆକ୍ରମଣ କଲେ । ଶେରସାହାଙ୍କ ବଂଶଧର ଇବ୍ରାହିମ ଖାଁ ଯୁଦ୍ଧରେ ପରାଜିତ ହୋଇ ଦିଲ୍ଲୀ ପରିତ୍ୟାଗ କଲେ । ୧୫୫୫ ଖ୍ରୀଷ୍ଟାବ୍ଦରେ ହୁମାୟୁନ ଦିଲ୍ଲୀର ସିଂହାସନ ଅଧିକାର କଲେ । ମାତ୍ର ପରିଶେଷରେ ତାଙ୍କୁ ମହାକାଳ ନିକଟରେ ପରାଜିତ ହେବାକୁ ପଡ଼ିଲା । ତତ୍ ପରବର୍ଷ ସେ ସେହି ନିଷ୍ଠୁର ମହାକାଳ ନିକଟରେ ନିଜକୁ ସମର୍ପି ଦେବାକୁ ବାଧ୍ୟହେଲେ ।

ହୁମାୟୁନଙ୍କ ମୃତ୍ୟୁପରେ ଆକବର ମସ୍ତକରେ କଣ୍ଟକର ମୁକୁଟ ପିନ୍ଧି ସିଂହା-ସନରେ ବସିଲେ । ସେତେବେଳକୁ ତାଙ୍କର ବୟସ ମାତ୍ର ଚଉଦବର୍ଷ । ତେଣୁ ଘରେ ଓ ବାହାରେ ବିଦ୍ରୋହର ଅଗ୍ନି ଜଳି ଉଠିଲା । ଇବ୍ରାହିମ ଖାଁ ପୁଣିଥରେ ଦିଲ୍ଲୀ ଆକ୍ରମଣ କଲେ । ମାତ୍ର ପରାଜିତ ହୋଇ ବଙ୍ଗଳାକୁ ପଳାଇଗଲେ । ସେଠାରେ ସୁଲତାନ ସୁଲେମାନ କରାଣୀ ତାଙ୍କୁ ନିଜର ପ୍ରତିଦ୍ୱନ୍ଦୀ ଜାଣି ବନ୍ଦୀ କରିବାକୁ ଉଦ୍ୟମ କରିବାରୁ ସେ ବାଧ୍ୟହୋଇ ଉତ୍କଳକୁ ପଳାଇ ଆସି ଗଜପତି ମୁକୁନ୍ଦଦେବଙ୍କର ସାହାଯ୍ୟ ପ୍ରାର୍ଥୀ ହେଲେ । ମୁକୁନ୍ଦଦେବ ତାଙ୍କୁ ଆଶ୍ରୟଦେଇ ବୃତ୍ତି ଖଞ୍ଜି ଦେଲେ । ଏତେଣେ ଆକବରଙ୍କର ଜଣେ ଆତ୍ମୀୟ ଅଲ୍ଲୀକୁଲୀଖାଁ । ବିଦ୍ରୋହ କରି ପରାଜିତ ହେବାରୁ ସୁଲେମାନ କରାଣୀଙ୍କର ସାହାଯ୍ୟ ପାଇଁ ବଙ୍ଗଳା ଯାତ୍ରାକଲେ ।

ଭାରତରେ ସେତେବେଳେ ଦୁଇଟିମାତ୍ର ସ୍ୱାଧୀନ ପରାକ୍ରମଶାଳୀ ଶକ୍ତି। ତା ମଧ୍ୟରୁ ଗୋଟିଏ ବଙ୍ଗ ଓ ଅନ୍ୟଟି ଉତ୍କଳ । ଆଲୀକୁଲୀ ଖାଁ ବଙ୍ଗଳାକୁ ଯିବାରୁ ଆକବର ମୁକୁନ୍ଦଦେବଙ୍କ ସହିତ ବନ୍ଧୁତା କରିବାପାଇଁ ହାସାନଖାଁ ନାମକ ଜଣେ ମନ୍ତ୍ରୀଙ୍କୁ ଗଜପତିଙ୍କ ଦରବାରକୁ ପଠାଇଲେ । ମୁକୁନ୍ଦଦେବ ତାଙ୍କୁ ସାଗ୍ରହରେ ଅଭ୍ୟର୍ଥନା କଲେ । ସନ୍ଧିର ସର୍ତ୍ତ ରହିଲ—ଯଦି ସୁଲେମାନ କରାଣୀ ଆଲୀକୁଲୀ ଖାଁଙ୍କୁ ସାହାଯ୍ୟ କରନ୍ତି, ତେବେ ମୁକୁନ୍ଦଦେବ ବଙ୍ଗଳା ଆକ୍ରମଣ କରିବେ ଏବଂ ମୋଗଲ ବାହିନୀ ତାଙ୍କୁ ସାହାଯ୍ୟ ଦେବେ ।

*

ସୂର୍ଯ୍ୟାୟନ ଭଳି ଜୀବାୟନ ନ ଥିଲେ ମାନବର ଜୀବନ ସ୍ଥାବର ହୋଇ-ଯାଆନ୍ତା । ଅୟନ ଅଛି ବୋଲି ଜୀବନ ଜଙ୍ଗମ ଏବଂ ଗତିଶୀଳ । ସୂର୍ଯ୍ୟଦେବ ତାଙ୍କର ଅୟନ ପଥରେ ବୁଲି ବୁଲି ଏକ ସମୟରେ ସୀମାରେଖାରେ ଆସି ସ୍ଥିର ହୁଅନ୍ତି । ତାପରେ ଅୟନ ପଥ ବଦଳାଇ ନୂତନ ଅୟନରେ ଗତିବାନ ହୁଅନ୍ତି । ଉତ୍ତରାୟଣରୁ ଦକ୍ଷିଣାୟନ—ପୁଣିଆସି ସେହି ଉତ୍ତରାୟଣ । ଠିକ୍ ସେହିପରି ଜୀବନସୂର୍ଯ୍ୟ ଥରେ ସୁଖର ଅୟନରେ ଓ ଥରେ ଦୁଃଖର ଅୟନରେ ଚଳନ୍ତି । ଏହି ସୁଖ ଦୁଃଖ ଦୁଇଟିକୁ ନେଇ ମାନବ ଜୀବନର ସୃଷ୍ଟି । ଗୋଟିଏକୁ ଛାଡ଼ିଦେଲେ ଅନ୍ୟଟିର କଳ୍ପନା କରିବା ନିରର୍ଥକ । ଯେଉଁମାନେ ଦୁଃଖକୁ ଫାଙ୍କିଦେଇ କେବଳ ସୁଖର ପରଶ ପଥର ଖୋଜି ବୁଲନ୍ତି, ସେମାନେ ହୁଏତ ପାଗଳ, ନଚେତ୍ ମରୁଭୂମିରେ ମରିଚୀକା ପଛରେ ଧାଇଁ-ବୁଲୁଥିବା ତୃଷାର୍ତ୍ତମାନବ । ଏଇଥିପାଇଁ ମହାପୁରୁଷମାନେ କହିଛନ୍ତି—ସୁଖ ସ୍ୱର୍ଗୀୟ ବସ୍ତୁ, ତାହା ବିଳାସିତାର ଅଳସ୍ୟରେ ମିଳେନାହିଁ । ତାକୁ ପାଇବାକୁ ହେଲେ ସଂସାରର ବୈରାଗ୍ୟ ଅନଳରେ ପ୍ରଦୀପ୍ତ କରିବାକୁ ହେବ ହୃଦୟର ଯଜ୍ଞଭୂମି । ଜନ୍ମେ ଜନ୍ମେ ଅତି ଦୁର୍ଗମ ପଥରେ, ରକ୍ତାକ୍ତ ଚରଣ ଓ ହୃଦୟରେ ସେହି ଦୁର୍ଲଭ ବସ୍ତୁକୁ ପରମ ପ୍ରାପ୍ତିର ଆକାଂକ୍ଷା ନେଇ ଯାତ୍ରା କରିବାକୁ ହେବ । ତାହାହେଲେ ଇହଲୋକରେ ନ ହେଲେ ମଧ୍ୟ ପରଲୋକରେ ତାକୁ ପାଇବ ।

ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀର ମଧ୍ୟଭାଗରୁ ଦୀର୍ଘ ଛଅଶହ ବର୍ଷଧରି ଉତ୍କଳର ଗଜପତିମାନେ ଧର୍ମ, ସମାଜ, ସଂସ୍କୃତି ଏବଂ ସ୍ୱାଧୀନତାକୁ ରକ୍ଷାକରିବା ପାଇଁ ଯେଉଁ

ଦୁର୍ଗମ ପଥରେ ଯାତ୍ରା କରିଛନ୍ତି, ରାଜ୍ୟର ଗୁରୁ ଦାୟିତ୍ୱ ବହନ କରି ଆଗଙ୍ଗା ଗୋଦାବରୀ ପର୍ଯ୍ୟନ୍ତ ବିଶାଳ ଭୂଖଣ୍ଡକୁ ଏକ ପରିବାର ପରି ପାଳନ କରି ଆସିଛନ୍ତି, ବିଶ୍ୱଇତିହାସରେ ତାର ପଟାନ୍ତର ନାହିଁ । ତାର ମୂକସାକ୍ଷୀ କେବଳ ବାରବାଟୀର ମାଟି ଓ ପ୍ରସ୍ତର ଗଦାମାନ । କ୍ଷୟିଷ୍ଣୁ ଅବସ୍ଥାରେ ତାହା ଏ ପର୍ଯ୍ୟନ୍ତ ରହିଛି । ଆଜିର ଓଡ଼ିଆ ଯେଉଁ ପୂଣ୍ୟ ଭୂମିର ସନ୍ତାନ ବୋଲି ଗର୍ବ କରେ, ନିଜର ଅତୀତ ମହିମାସ୍ମୃତି ଓ ବୀରା-ଲତା ପ୍ରତି ଗର୍ବରେ ହାତ ବଢ଼ାଇ ଦିଏ, ସେ ଗୁହିଁ ଗୁହିଁ ଦେଖୁଛି ତାର ବିପର୍ଯ୍ୟୟ । ଯେଉଁ ପ୍ରସ୍ତର ଖଣ୍ଡରେ ମସ୍ତକ ଲଗାଇ ସାରା ଭାରତର ରାଜା ମହାରାଜାମାନେ ନିଜକୁ ଧନ୍ୟ ମନେ କରୁଥିଲେ, ସେହି ପୂଣ୍ୟ ସ୍ଥଳ ଆଜି ଗୋ-ମେଷ ଓ ମର୍କଟମାନଙ୍କର କ୍ରୀଡ଼ାସ୍ଥଳ । ପୂର୍ବର ସେ ଗୌରବ ଲୁପ୍ତ ଏବଂ ଆଜିର ଓଡ଼ିଆ ସୁପ୍ତ । ଯେଉଁ ବୀର-ରକ୍ତରେ ତାର ପିଣ୍ଡ ଗଢ଼ା ଯାଇଥିଲା, ଅର୍ଦ୍ଧାଶନ ଓ ଅନାଶନରେ ତାହା ଚିତ୍କାର କରୁଛି—ଭିକ୍ଷାଂ ଦେହି ।

ଅତୀତ ମିଶିଯାଉଛି ଅତୀତରେ—ବର୍ତ୍ତମାନ ପୂରି ରହିଛି ସ୍ୱାର୍ଥର ଘନ ଅନ୍ଧ-କାରରେ । ପୂର୍ବର ସେ ଶୌର୍ଯ୍ୟ, ବୀର୍ଯ୍ୟ, ସେବା, ତ୍ୟାଗ ଓ ତିତିକ୍ଷା ବର୍ତ୍ତମାନ ଆକାଶ କୁସୁମତୁଲ୍ୟ ପ୍ରତୀତ ହୁଏ ।

ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀରେ ନୃପକେଶରୀ କଟକ ନଗର ସ୍ଥାପନ କରିଥିବା କିମ୍ବଦନ୍ତୀ ମିଳେ । ତାପରେ ଦୀର୍ଘ ଦୁଇଶହ ବର୍ଷ ଧରି ଉତ୍କଳରେ ଚିରଶାନ୍ତି ବିରାଜିତ ହୋଇଥିଲା । ୧୨୦୩ ଖ୍ରୀଷ୍ଟାବ୍ଦରେ ମୁସଲମାନମାନଙ୍କ ଦ୍ୱାରା ପରାଜିତ ହୋଇ ବଙ୍ଗଳାର ଶେଷ ହିନ୍ଦୁରାଜା ଲକ୍ଷ୍ମଣ ସେନ ଓଡ଼ିଶାରେ ଆଶ୍ରୟ ନେଲେ । ୧୨୦୫ ଖ୍ରୀଷ୍ଟାବ୍ଦରେ ଉତ୍କଳରେ ପ୍ରଥମଥର ପାଇଁ ରଣଦୁନ୍ଦୁଭି ବାଜି ଉଠିଲା । ମହମ୍ମଦଘୋରିଙ୍କ ସେନାପତି ମହମ୍ମଦ ସିରାଜ ଉତ୍କଳ ଆକ୍ରମଣ କଲେ । ପରିଶେଷରେ ସେ ପରାଜୟର ଟୀକା ଶିରରେ ବହନ କରି ପଳାୟନ କଲେ । ଉତ୍କଳର ଉନ୍ନତ ମସ୍ତକ ଉନ୍ନତତର ହେଲା ।

ତ୍ରୟୋଦଶ ଶତାବ୍ଦୀର ମଧ୍ୟଭାଗରେ ପୁଣି ଥରେ ରଣଭେରୀ ବାଜି ଉଠିଲା ଉତ୍କଳରେ । ବାହାମନୀର ହିନ୍ଦୁରାଜାଙ୍କୁ ନରସିଂହଦେବ ସାହାଯ୍ୟ କରି ସୈନ୍ୟ ପ୍ରେରଣ କଲେ । ଏହିକବେଳେ ବଙ୍ଗଳାର ସୁଲତାନ ତୋଘାନଖାଁ ଉତ୍କଳ ଆକ୍ରମଣ କଲେ । ଯେଉଁ ସୈନ୍ୟ ରାଜଧାନୀରେ ଥିଲେ ସେମାନଙ୍କୁ ନେଇ ନରସିଂହଦେବ ବଙ୍ଗଳା ଆକ୍ରମଣ କରି ରାଜଧାନୀ 'ଲକ୍ଷନୌଟି' ଅଧିକାର କଲେ । ବଙ୍ଗଳା ବିଜିତ

ହେଲ । ଉତ୍କଳର ଗଜପତି ହେଲେ ଗୌଡ଼େଶ୍ୱର ।

୧୪୭୦ ଖ୍ରୀଷ୍ଟାବ୍ଦରେ ହମ୍ବୀରଙ୍କ ବିରୁଦ୍ଧରେ ମଙ୍ଗଳରାୟଙ୍କ, ସାହାଯ୍ୟ କରିଥିଲେ କପିଳେନ୍ଦ୍ର ଦେବ । ତାପରେ ପୁରୁଷୋତ୍ତମ ଦେବ କାଞ୍ଚି ଅଭିଯାନ କରି ବିଜୟୀ କଲେ । ତାଙ୍କ ଅନ୍ତେ ଉତ୍କଳର ଗଜପତି ହେଲେ ପ୍ରତାପରୁଦ୍ରଦେବ । ୧୫୧୦ ଖ୍ରୀଷ୍ଟାବ୍ଦରେ ସେ ଦାକ୍ଷିଣାତ୍ୟରେ ଯୁଦ୍ଧରେ ବ୍ୟାପୃତ ଥିବାବେଳେ ବଙ୍ଗନବାବ ହୋସେନସାହଙ୍କର ସେନାପତି ଇସ୍‌ମାଇଲ୍ ଖାଁ । ବାରବାଟୀ ଅଧିକାର କରିନେଲେ ।

ପ୍ରତାପରୁଦ୍ରଦେବ ଏ ସମ୍ବାଦ ପାଇବାମାତ୍ରେ ଦାକ୍ଷିଣାତ୍ୟରୁ ଫେରି ଆସିଲେ । ତାଙ୍କର ଫେରିଆସିବା ସମ୍ବାଦ ହିଁ ଆକ୍ରମଣକାରୀଙ୍କୁ ଉତ୍କଳରୁ ତଡ଼ିବାକୁ ଯଥେଷ୍ଟ ହୋଇଥିଲା । ମାତ୍ର ପ୍ରତାପରୁଦ୍ରଦେବ ତାଙ୍କୁ ଅନୁଗମନ କରି ଗଙ୍ଗାକୂଳ ପର୍ଯ୍ୟନ୍ତ ଯାଇ ଫେରି ଆସିଲେ ।

ଦେଶରେ ବୈଦେଶିକ ଆକ୍ରମଣ ପ୍ରତିହତ ହେଲା ସତ; ମାତ୍ର ଅନ୍ତର୍ବିପ୍ଳବ ଆରମ୍ଭ ହୋଇଗଲା । ଖେମଣ୍ଡିର ରାଜାମାନେ ବିଦ୍ରୋହ କଲେ । ପ୍ରତାପରୁଦ୍ରଦେବ ସେମାନଙ୍କ ବିରୁଦ୍ଧରେ ବାଧ୍ୟହୋଇ ଯୁଦ୍ଧ ଘୋଷଣା କଲେ । ବିଦ୍ରୋହ ପ୍ରଶମିତ ହେଲା । ଠିକ୍ ଏତିକବେଳେ ବଙ୍ଗର ସୁଲତାନ କୁତବ ସାହ ଉତ୍କଳ ଆକ୍ରମଣ କଲେ । ପ୍ରତାପରୁଦ୍ରଦେବ ଖେମୁଣ୍ଡିରୁ ଫେରି ଆସି ମୁସଲମାନ ଆକ୍ରମଣକାରୀଙ୍କ ଗତିରୋଧ କଲେ । ବହୁ ଯୁଦ୍ଧ ପରେ କୁତବ ପରାଜିତ ହୋଇ ପଳାୟନ କଲେ ।

ପ୍ରତାପରୁଦ୍ରଦେବ ମୁସଲମାନ ଆକ୍ରମଣରୁ ଦେଶକୁ ରକ୍ଷାକରିବାପାଇଁ ବିଜୟ-ନଗରର ହିନ୍ଦୁରାଜା କୃଷ୍ଣଦେବ ରାୟଙ୍କ ସହିତ ସନ୍ଧି କରି କୃଷ୍ଣାନଦୀର ଦକ୍ଷିଣାଞ୍ଚଳବର୍ତ୍ତୀ ରାଜ୍ୟ ସମୂହ ଛାଡ଼ି ଦେଇଥିଲେ । ମାତ୍ର ଗୋଲକୁଣ୍ଡାର ନବାବଙ୍କୁ ବାଧ୍ୟହୋଇ କୃଷ୍ଣା ଓ ଗୋଦାବରୀ ମଧ୍ୟବର୍ତ୍ତୀ ରାଜ୍ୟଗୁଡ଼ିକ ଛାଡ଼ି ଦେଲେ ।

ଉତ୍କଳ ଇତିହାସରେ ଗଜପତି କପିଳେନ୍ଦ୍ରଦେବ ଏବଂ ପ୍ରତାପରୁଦ୍ରଦେବଙ୍କ ବ୍ୟତୀତ ଆଉ ବୋଧହୁଏ କୌଣସି ନରପତି ଜୀବନର ଏତେ ଅଧିକ ସମୟ ଯୁଦ୍ଧରେ ଅତିବାହିତ କରି ନାହାନ୍ତି । ମାତ୍ର ଏଯୁଦ୍ଧ ରାଜ୍ୟଭୋଗ ଲିପ୍ସା ବା ଅଖଣ୍ଡ ପ୍ରଭୁତ୍ୱ ସ୍ଥାପନପାଇଁ ଉଦ୍ଦିଷ୍ଟ ନ ଥିଲା । ହିନ୍ଦୁଧର୍ମର ରକ୍ଷା, ପ୍ରଜାମାନଙ୍କୁ ଧର୍ମଦ୍ୱେଷୀ ମାନଙ୍କ ହସ୍ତରୁ ଉଦ୍ଧାର, ରାଜ୍ୟରେ ସୁଶାସନ ଏବଂ ପ୍ରଜାରଞ୍ଜନ ନିମନ୍ତେ ତାହା ଉଦ୍ଦିଷ୍ଟ ଥିଲା । ମାତ୍ର ଉଭୟ ଗଜପତିଙ୍କ ମଧ୍ୟରେ ଯୁଦ୍ଧରୀତି ଓ ଗତିରେ ପ୍ରଭେଦ ଥିଲା

କପିଳେନ୍ଦ୍ରଦେବ ନିଜର ପୂର୍ଣ୍ଣ ଶକ୍ତି ପ୍ରୟୋଗ କରି ଶତ୍ରୁ ବିରୁଦ୍ଧରେ ଯୁଦ୍ଧ କରୁଥିବା-ବେଳେ ପ୍ରତାପରୁଦ୍ରଦେବ ତହିଁରୁ ବଞ୍ଚିତ ହୋଇଥିଲେ । ଏହାର ଏକମାତ୍ର କାରଣ ଅନ୍ତର୍ବିପ୍ଳବ । ପ୍ରତାପରୁଦ୍ରଦେବଙ୍କ ଅନୁପସ୍ଥିତିରେ ସୁଯୋଗ ପାଇ ଉତ୍କଳର କ୍ଷୁଦ୍ର କ୍ଷୁଦ୍ର ରାଜ୍ୟର ରାଜାମାନେ ବିଦ୍ରୋହ ଆରମ୍ଭ କରି ଦେଇଥିଲେ । ତେଣୁ ତାଙ୍କୁ ଗୃହଶତ୍ରୁ ଓ ବହିଃଶତ୍ରୁ ଉଭୟଙ୍କର ସମ୍ମୁଖୀନ ହେବାକୁ ପଡ଼ୁଥିଲା ।

ଜୀବନର ଅର୍ଦ୍ଧାଧିକ ସମୟ ରାଜ୍ୟ ବାହାରେ ଯୁଦ୍ଧରେ ବ୍ୟାପୃତ ହୋଇ ପ୍ରତାପରୁଦ୍ରଦେବ ପରିଶେଷରେ କ୍ଳାନ୍ତ ହୋଇ ପଡ଼ିଲେ । କ୍ରମେ ବାର୍ଦ୍ଧକ୍ୟ ଆସି ତାଙ୍କ ଶରୀରରେ ପ୍ରଭୁତ୍ୱ ବିସ୍ତାର କରିବାରେ ଲାଗିଲା ।

ଆୟୁର୍ବେଦ ଶାସ୍ତ୍ରର ପଦ୍ଧତି ଅନୁସାରେ ଅନେକ ସମୟରେ ଦେଖାଯାଇଥାଏ ଯେ, ଚିକିତ୍ସକମାନେ ରୋଗୀମାନଙ୍କୁ ସୁଷୁପ୍ତି ବଟୀକା ପ୍ରଦାନ କରିଥାଆନ୍ତି । କାରଣ ଏହାଦ୍ୱାରା ଶରୀର ଓ ମନ ଉଭୟ ସୁସ୍ଥ ହୁଏ । ଚଞ୍ଚଳ ସ୍ନାୟୁ ଧୀରସ୍ଥ ହୁଏ ଏବଂ ଦୁର୍ବଳ ସ୍ନାୟୁ ବିଶ୍ରାମ ପାଏ । ମାତ୍ର ଅଧିକ ପରିମାଣରେ ତାହା ବ୍ୟବହାର କଲେ ରୋଗୀର ଶୋଚନୀୟ ମୃତ୍ୟୁ ଘଟେ ।

ଜରା ଆକ୍ରମଣରେ କ୍ଳାନ୍ତ ଓ ଅବସନ୍ନ ହୋଇ ପ୍ରତାପରୁଦ୍ରଦେବ ପରିଶେଷରେ ଏହି ସୁଷୁପ୍ତି ବଟିକା ସେବନ କରିବାକୁ ମନ ବଳାଇଲେ । ଶ୍ରୀ ଚୈତନ୍ୟଦେବ ସେତେବେଳେ ପୁରୀରେ ଅବସ୍ଥାନ କରୁଥାଆନ୍ତି । ରାଜମାହେନ୍ଦ୍ରୀର ଶାସନକର୍ତ୍ତା ରାୟ ରାମାନନ୍ଦଙ୍କ ପ୍ରରୋଚନାରେ ପ୍ରତାପରୁଦ୍ର ଦେବ ଚୈତନ୍ୟଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । 'ରାଜାନୁଗତ ଧର୍ମ' ନୀତିରେ ପ୍ରଜାମାନେ ମଧ୍ୟ ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲେ । ଧର୍ମର ଏହି ଅନ୍ଧାନୁସରଣରେ ଜାତି ନିସ୍ତେଜ ଏବଂ ସୁପ୍ତ ହୋଇପଡ଼ିଲା । କ୍ରମେ ତାହାର ମାତ୍ରା ବୃଦ୍ଧି ପାଇବାରେ ଲାଗିଲା । ଯେଉଁ ଓଡ଼ିଆ ସାତ ସମୁଦ୍ର ତେର ନଈରେ ବୋଇତ ଭସାଇ, ପଥରରେ ଅଥବା ରୂଢ଼ି ବାନ୍ଧି, ଖଣ୍ଡାଧାରରେ ଜାତିକୁ ଗଢ଼ିଥିଲା; ନିଜର ଧର୍ମ, ସ୍ୱାଧୀନତା ଓ ଗୌରବ ରକ୍ଷା ଲାଗି ମୃତ୍ୟୁକୁ ସାଦର ଆଲିଙ୍ଗନ କରୁଥିଲା, ଖଣ୍ଡା ଛାଡ଼ି ସେ ଧରିଲା— ଖୋଳ ଓ କରତାଳ । ଯେଉଁ ଓଡ଼ିଆ ଜୀବନର ମୂଳମନ୍ତ୍ର ଥିଲା— "ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍", ସେ ପୁଣି କହିଲା—

"ଭାଇ ଭାଇ, ଶ୍ରୀ ଗୌର ନିତାଇ ।"

ଓଡ଼ିଆର ବୀର ରକ୍ତରେ ଆଳସ୍ୟ ଏବଂ ବିଳାସର ବୀଜାଣୁ ସଂକ୍ରମିତ ହେଲା ।

*

"ଜବା କୁସୁମ ସଂକାଶଂ କାଶ୍ୟପେୟଂ ମହାଦ୍ୟୁତି ।
ଧ୍ୱାନ୍ତାରିଂ ସର୍ବ ପାପଘ୍ନଂ ପ୍ରଣତୋଽସ୍ମି ଦିବାକରଂ ॥"

ଜଣେ ଯୁବତୀ ସୂର୍ଯ୍ୟଦେବଙ୍କର ବନ୍ଦନା ଗାଇ ଚାଲିଛି । ଦୃଷ୍ଟି ପୂର୍ବ ଆକାଶ ବକ୍ଷରେ ନିବଦ୍ଧ । ପାର୍ଶ୍ୱରେ ପୃଥିବୀ ପ୍ରସିଦ୍ଧ କୋଣାର୍କର ସୂର୍ଯ୍ୟ ମନ୍ଦିର । ମାତୃଭକ୍ତ ରାଜା ନରସିଂହଦେବଙ୍କର ଅମର କୀର୍ତ୍ତି । ବାରଶହ ଶିଳ୍ପୀ ବୁକୁର ରକ୍ତ ଏବଂ ଅସ୍ଥି ପିଞ୍ଜର ବିନିମୟରେ ନିର୍ମାଣ କରିଛନ୍ତି ପୃଥିବୀର ଏହି ଅତୁଳନୀୟ ବିରାଟ ବସ୍ତୁ । ରାଜମାତାଙ୍କର ସ୍ୱପ୍ନ ସାର୍ଥକ ହୋଇଛି ଏବଂ ତା ସହିତ ସାର୍ଥକ ହୋଇଛି ଉତ୍କଳର ଚାରୁକଳା ନାମ ।

ପ୍ରାକ୍‌ଉଷାର ଏକ ମନୋମୁଗ୍‌ଧକର ପରିବେଶ । ସମୀରଣ ମୃଦୁ । ଅଦୂରରେ ମହୋଦଧିର ଅସ୍ପୁଟ ଗୁଞ୍ଜନ ଏବଂ ମୈତ୍ରେୟ ବନରେ ପକ୍ଷୀର କୂଜନ ।

ଜଣେ ଯୁବକ ବାଲୁକା ସ୍ତୁପ ଉପରେ ନିଜର ଅଳସ ଦେହ ଢାଳି ଦେଇ ମୁଗ୍‌ଧ ଦୃଷ୍ଟିରେ ଚାହିଁ ରହିଛି ଯୁବତୀର ଅଙ୍ଗ ସୁଷମାକୁ ।

ଯୁବତୀ ସଦ୍ୟସ୍ନାତା । ମୁକ୍ତ କୁନ୍ତଳରୁ ଝରି ପଡ଼ୁଛି ବିନ୍ଦୁ ବିନ୍ଦୁ ସଲିଳ । ଯୁକ୍ତ-କରରେ ଅର୍ଦ୍ଧ ନିମୀଳିତ ନୟନରେ ସେ ଦଣ୍ଡାୟମାନ । ହସ୍ତରେ ନୀଳ ଅରବିନ୍ଦ । ସିକ୍ତବାସ ଶରୀରରେ ଜଡ଼ିତ ହୋଇ ମନେ ହୁଏ— ସେ ଯେପରି ମନ୍ଦିର ଗାତ୍ରରେ ନିର୍ମିତ ଏକ ଅପ୍ସରା । କକ୍ଷଚ୍ୟୁତ ତାରକା ଭଳି ମନ୍ଦିର ଗାତ୍ରରୁ ବିଚ୍ୟୁତ ହୋଇ ଚନ୍ଦ୍ରଭାଗା କୂଳରେ ଅବସ୍ଥାପିତ ହୋଇଛି ।

ଯୁବତୀ ଅପରୂପ ରୂପସୀ, ମାତ୍ର ଶରୀର କୃଶ । କଠୋର ସାଧନାରେ ସେ ଆତ୍ମ ନିୟୋଗ କରିଥିବା ପରି ମନେ ହୁଏ । ତେଣୁ ଯାହା ଆଗେ ଯୌବନର ଖର-ରୌଦ୍ର ଥିଲା, ତାହା ବର୍ତ୍ତମାନ ଅବସନ୍ନ ଗୋଧୂଳିରେ ପରିଣତ ହୋଇଛି । ପରିଧାନରେ ପାରିପାଟ୍ୟତା ନାହିଁ କି କୁନ୍ତଳ କଳାପରେ ବିହ୍ୱଳତା ନାହିଁ । କାତର କମନୀୟତା ଆସିଛି ଅଙ୍ଗ ଯଷ୍ଟିରେ । ସେ ପୂର୍ଣ୍ଣିମାର ଚନ୍ଦ୍ର ନୁହେଁ— ଆକାଶ କୋଣରେ ପୁଞ୍ଜିଭୂତ

ଶିଥିଳ ମେଘମାଳା । ଚକ୍ଷୁରେ କ୍ଳାନ୍ତି, ହୃଦୟରେ ଆଳସ୍ୟ ।

କେତେସମୟ ଅତିବାହିତ ହେଲା ପରେ ଯୁବତୀଟି ଯୁବକ ନିକଟକୁ ଆସି ମୃଦୁ ମୃଦୁ ହସିଲା । ମାତ୍ର ସେ ହସରେ ଦୀପ୍ତି ନାହିଁ କି ଚକ୍ଷୁରେ ଛଟା ନାହିଁ ।

ଶାନ୍ତ ସଂଯତ ନାରୀ ମୂର୍ତ୍ତି,
ସନ୍ନ୍ୟାସିନୀ-କରୁଣାମୟୀ ।

ଯୁବକ କମ୍ପିତ କଣ୍ଠରେ କହିଲା—ଲଳିତା । ଏବେ ଫେରି ଚାଲ । ଏପରି ଭାବରେ ଏଠାରେ ଜୀବନଟାକୁ ନଷ୍ଟ କରୁଛ କାହିଁକି ?

ଲଳିତା ଧୀରଭାବରେ ଆସି ତା ନିକଟରେ ବସି ଉତ୍ତର ଦେଲା—ଯେଉଁ ଜୀବନ କ୍ଷୟ ହୋଇଯାଇଛି, ତା ପାଇଁ ଚିନ୍ତା କ'ଣ ? ତୁମେ ବରଂ ଫେରିଯାଅ, ଘର ସଂସାର କରି ଆନନ୍ଦରେ ରୁହ—ଏହା ହିଁ ମୋର କାମନା । ମୁଁ ସନ୍ନ୍ୟାସିନୀ । ଜୀବନର ସମସ୍ତ ସମ୍ଭୋଗ ପରିତ୍ୟାଗ କରି ଦେବତା ନିକଟରେ ନିଜକୁ ଉତ୍ସର୍ଗ କରିଛି । ତାଙ୍କରି ସେବା ଜୀବନର ବ୍ରତ କରି ନେଇଛି । ଶୁଣିଛି, ଏହି ସ୍ଥାନରେ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ତପସ୍ୟା କରି ପିତୃ ଅଭିଶାପରୁ ମୁକ୍ତ ହୋଇଛନ୍ତି । ଉତ୍କଳର ରାଜମାତା ଏହିଠାରେ ତପସ୍ୟା କରି ସୂର୍ଯ୍ୟସମ ତେଜୋଦୀପ୍ତ ପୁତ୍ର ନରସିଂହ ଦେବଙ୍କୁ ପାଇଛନ୍ତି । ପୁଣି ସୂର୍ଯ୍ୟଦେବ ଏହିଠାରେ ଅର୍କଦୈତ୍ୟକୁ ବିନାଶ କରିଛନ୍ତି ଏବଂ ନିଜେ ମଧ୍ୟ ଶାପ ମୁକ୍ତ ହୋଇଛନ୍ତି । ତେଣୁ ଏହି ସ୍ଥାନରେ ବସି ମୁଁ ତପସ୍ୟା କରୁଛି ଶକ୍ତି ଏବଂ ନିରାସକ୍ତ ହୃଦୟରେ ।

ଯୁବକ ପ୍ରଶ୍ନ କଲା—ତୁମେ ଏଠାକୁ କିପରି ଆସିଲ ?

ମୁହୂର୍ତ୍ତକ ପାଇଁ ଲଳିତାର ଚକ୍ଷୁ ଦୁଇଟି ଉଜ୍ଜ୍ୱଳ ହୋଇ ଉଠିଲା । ନେତ୍ରର ଜ୍ୟୋତି ପ୍ରଖର ହୋଇଗଲା । ମାତ୍ର ବହୁ କଷ୍ଟରେ ସେ ନିଜକୁ ସଂଯତ କରି ଉତ୍ତର ଦେଲା—ମୋହନ । ସେଦିନ ସିଦ୍ଧେଶ୍ୱର ମହାଦେବଙ୍କ ମନ୍ଦିର ଚତ୍ୱରରୁ ଗୋଦାବରୀ ଗର୍ଭକୁ ଉଭୟେ ଲମ୍ଫ ପ୍ରଦାନ କଲେ । ତାପରେ ସେହି ଅନ୍ଧକାରରେ ତୁମେ କେଉଁଆଡ଼େ ଭାସିଗଲ, ମୁଁ ତାର କୌଣସି କୂଳ କିନାରା ପାଇଲି ନାହିଁ । କେତେ-ଦୂର ଭାସି ଭାସି ଯିବାପରେ ସ୍ଥଳଭାଗର ସୂଚନା ପାଇ ନଦୀ କୂଳକୁ ଚାଲିଗଲି । ମାତ୍ର ସମସ୍ତ ଶରୀର କ୍ଳାନ୍ତିରେ ଅବସନ୍ନ ହୋଇପଡ଼ିଲା । ମୁଁ ସେହିଠାରେ ଜ୍ଞାନଶୂନ୍ୟା ହୋଇ ପଡ଼ିଲି ।

ଚେତନା ଫେରିଆସିବା ପରେ ଦେଖିଲି, ଦଳେ ସନ୍ନ୍ୟାସୀ ମୋତେ

ଚତୁର୍ଦ୍ଦିଗରେ ଘେର ବସିଛନ୍ତି । ଶୁଣିଲି, ସେମାନେ କନ୍ୟାକୁମାରୀ ଦର୍ଶନରୁ ଫେରିବାବେଳେ ପଥରେ ମୋତେ ଅଜ୍ଞାନ ଅବସ୍ଥାରେ ଦେଖି ତୋଳି ଆଣିଲେ । ମୁଁ ପୂର୍ବକଥା ସ୍ମରଣ କରି ପୁଣି ମୂର୍ଚ୍ଛିତା ହୋଇପଡ଼ିଲି ।

ସନ୍ନ୍ୟାସୀମାନଙ୍କ ସେବା ଯତ୍ନରେ ମୁଁ କେତେଦିନ ପରେ ସମ୍ପୂର୍ଣ୍ଣ ସୁସ୍ଥ ହୋଇଗଲି । ସେତେବେଳକୁ ସେମାନେ ବହୁଦୂର ଆସିଯାଇଥାନ୍ତି । ସମାଜଚ୍ୟୁତ ଭୟରେ ମୋର ଆଉ ଘରକୁ ଫେରିବାକୁ ଇଚ୍ଛା ହେଲନାହିଁ । ପରିଶେଷରେ ସେମାନଙ୍କ ସାଥିରେ ଆସି ଏହି ସ୍ଥାନରେ ପହଞ୍ଚିଲି । ସନ୍ନ୍ୟାସୀମାନେ ଏଠାରୁ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ଉତ୍ତର ଭାରତ ଗମନ କଲେ । ମାତ୍ର ଦେବଭୂମି ଉତ୍କଳକୁ ଛାଡ଼ି ଦୂର-ଦେଶକୁ ଯିବାପାଇଁ ମୋର ମନ ବଳିଲା ନାହିଁ । ମୁଁ ସେମାନଙ୍କ ନିକଟରେ ମନକଥା ଜଣାଇଲି । ସେମାନେ ମୋତେ ଦୀକ୍ଷା ଦେଲେ ଏବଂ ଆଶୀର୍ବାଦ କରି କହିଲେ—ମା, ଏହା ହେଉଛି ଅର୍କକ୍ଷେତ୍ର । ଜମ୍ବୁ ଦ୍ୱୀପର ପୁଣ୍ୟକ୍ଷେତ୍ରମାନଙ୍କ ମଧ୍ୟରେ ଅନ୍ୟତମ । ନିଜେ ସୂର୍ଯ୍ୟଦେବ ଏଠାରେ ତପସ୍ୟା କରି ଶାପ ମୁକ୍ତ ହୋଇଥିବାରୁ ଏହାକୁ ନିଜର ବାସସ୍ଥଳୀ ରୂପେ ବାଛି ନେଇଛନ୍ତି । ଏ କ୍ଷେତ୍ରରେ ସାରହ ନିଷ୍ଠାରେ ସାଧନା କଲେ ମନର କୌଣସି ବାସନା ଅପୂର୍ଣ୍ଣ ରହେ ନାହିଁ । ତୁ ଏଠାରେ ବିରଞ୍ଚି ନାରାୟଣଙ୍କର ସେବା ପୂଜା କରି ନିର୍ବିଘ୍ନରେ ଜୀବନ ଅତିବାହିତ କର, ଏହାହିଁ ଆମ୍ଭେମାନେ ଆଶୀର୍ବାଦ କରୁଛୁଁ ।

ସନ୍ନ୍ୟାସୀମାନେ ଚାଲିଗଲେ । ମାତ୍ର ମୁଁ ଭାବି ପାରିଲି ନାହିଁ, କିଣପାଇଁ ତପସ୍ୟା କରିବି ? ବହୁ ଚିନ୍ତାପରେ ମନରେ ପଡ଼ିଲା ତୁମରି କଥା । ମୁଁ ଭଗବାନ ଭାସ୍କରଙ୍କୁ ପ୍ରଣତି ଜଣାଇ କହିଲି—ହେ ଭଗବାନ, ଥରେମାତ୍ର ତାଙ୍କ ସହିତ ସାକ୍ଷାତ କରାଇ ଦିଅ । ତାପରେ ସେହିଦିନରୁ ଐକାନ୍ତିକ ନିଷ୍ଠାରେ ବିବସ୍ୱାନଙ୍କର ପୂଜା କରିବାରେ ଲାଗିଲି ।

ବେଳେ ବେଳେ ମନରେ ସଂଶୟ ଜାଗେ । ସୁଦୂର ରାଜମାହେନ୍ଦ୍ରୀରୁ କୋଣାର୍କ । ସମ୍ପୂର୍ଣ୍ଣ ଅବିଶ୍ୱାସ୍ୟ ଏବଂ ଅବାସ୍ତବ । ମାତ୍ର ଆଜି ଦେଖୁଛି—ସ୍ୱପ୍ନ ମୋର ସାର୍ଥକ ହୋଇଛି । ମନର ଦେବତା ମୋର ଗୁହାରି ଶୁଣି ତୁମକୁ ପଠାଇ ଦେଇ-ଛନ୍ତି । ଏବେ ତୁମଠାରୁ ବିଦାୟନେଇ ମୁଁ ମୋ ପଥରେ ଅଗ୍ରସର ହେବି ।

ମୋହନ କ ଉତ୍ତର ଦେବ ସ୍ଥିର କରି ପାରିଲା ନାହିଁ । ସେ ବ୍ୟାକୁଳ ଭାବରେ ବସିବା ସ୍ଥାନରୁ ଉଠି ତା ନିକଟକୁ ଯାଇ ବହୁ କଷ୍ଟରେ କହିଲା—ଲଳିତା, ତୁମେ

ଏ କଣ କହୁଛ ? ତୁମକୁ ଛାଡ଼ି ମୁଁ କଣ ସ୍ଥିର ରହିପାରେ ?

ଲଳିତା ଟିକିଏ ପଛକୁ ଘୁଞ୍ଚିଯାଇ କହିଲା—ସ୍ପର୍ଶ କରନାହିଁ । ଯେଉଁ ଆର୍ଯ୍ୟ ଭାରତର ନାରୀ ଗୋଟିଏ ରାତ୍ରୀ ପିତୃଗୃହରେ ଅବସ୍ଥାନ କରିଥିବାରୁ ସ୍ୱାମୀ ତାଙ୍କୁ ବହିଷ୍କାର କରି ଦେଇଥିଲେ ଏବଂ ସ୍ୱୟଂ ଭଗବାନ ରାମଚନ୍ଦ୍ର ପତିପ୍ରାଣା ସୀତାଙ୍କୁ ନିର୍ବାସନ ଦଣ୍ଡ ଦେଇଥିଲେ ସେହି ଭାରତରେ ତୁମର ଜନ୍ମ । ବର୍ଷ ବର୍ଷ ଧରି ମୁଁ ଏକାକିନୀ ବୃନ୍ଦାବନରେ ମୋତେ ସ୍ପର୍ଶ କରିବାକୁ ଇଚ୍ଛା କରୁଛ କିପରି ?

ମୋହନ ଉତ୍ତର ଦେଲା—ମାତ୍ର ମୋର ହୃଦୟ କହୁଛି—ତୁମେ ସମ୍ପୂର୍ଣ୍ଣ ନିଷ୍କଳଙ୍କ ।

ଲଳିତା ମୃଦୁ ମୃଦୁ ହସି କହିଲା—ମାତ୍ର ମନେ ରଖ, ମନୁଷ୍ୟ ସମାଜବଦ୍ଧ ଜୀବ । ତାର ଏକ ସାମାଜିକ ନିୟମ କାନୁନ ଅଛି । ତାର ଦଣ୍ଡ, ତାର ଶାସନ ସମସ୍ତଙ୍କୁ ମୁଣ୍ଡପାତି ସହିନେବାକୁ ପଡ଼ିବ । ତାକୁ ତୁମେ ଅବଜ୍ଞା କରିବ କିପରି ?

ପୃଥିବୀର କ୍ରମାନ୍ୱିତ ବିବର୍ତ୍ତନ ଇତିହାସରେ ମୁହୂର୍ତ୍ତେ ମୁହୂର୍ତ୍ତେ ଯେଉଁ ଛନ୍ଦପାତ ଘଟେ, ତାହା ଲକ୍ଷ୍ୟ କରିବାର ନୁହେଁ । ଘୂର୍ଣ୍ଣିମାନ ଯେଉଁଠି ଯେତେ ବେଶୀ ପ୍ରଚଣ୍ଡ, ତାହାର ସ୍ଥିତି ସେତିକି ସ୍ୱାଭାବିକ । ଯେହେତୁ ସେଠାରେ କାରଣ ଅପେକ୍ଷା କାର୍ଯ୍ୟର ମହତ୍ୱ ବେଶୀ ।

ମାନବ ଜୀବନରେ ମଧ୍ୟ ତାହାହିଁ ଘଟେ । ଦୃଶ୍ୟମାନ ଜୀବନର ଗତି-ପଥରେ ଶୋକ ଓ ଦୁଃଖର ପ୍ରଲେପ ସମୟରେ ଘୁଞ୍ଚିଯାଏ । ତାହା ନ ହେଲେ ଏ ପୃଥିବୀର ଗତି ଅଚଳ ହୋଇ ପଡ଼ନ୍ତା, ସମସ୍ତେ ଏକ ସ୍ଥାନରେ ବସି କାନ୍ଦଣା ରୋଳ ତୋଳନ୍ତେ ।

ଅବଶେଷରେ ଲଳିତା ସନ୍ନ୍ୟାସୀ ମାନଙ୍କର ଆଶୀର୍ବାଦ ଲାଭକରି ଅର୍କ-କ୍ଷେତ୍ରରେ ଅବସ୍ଥାନ କଲା ସମୟରେ ଦୁଃଖ ଏବଂ ଶୋକର ଉଚ୍ଛ୍ୱାସ ମଧ୍ୟ ଦୂରୀଭୂତ ହେଲା । ଦେବତାର ସେବାଦାସୀ ଭାବରେ ସେ ନିଜକୁ ଉତ୍ସର୍ଗ କରିଦେଲା ।

ସେଦିନ ଥିଲା ଶରତର ଏକ ତମିସ୍ର ରଜନୀ । ଚତୁର୍ଦ୍ଦିଗରେ ସୂଚୀଭେଦ୍ୟ ଅନ୍ଧକାର । ରାତ୍ରି ପବନର ପ୍ରତିରୋଧରେ ଶୁଭୁଛି—ମହୋଦଧିର କ୍ରୁଦ୍ଧ ଗର୍ଜ୍ଜନ ଧ୍ୱନି ।

ଅଦୂରରୁ ଭାସିଆସୁଛି ଝାଉଁବଣର କରୁଣ କ୍ରନ୍ଦନ ।

ନିସ୍ତବ୍ଧ ଧରଣୀ
ନିଷ୍ପ୍ରାଣିକାମୟୀ ରଜନୀ ।
ସ୍ୱପ୍ନାବିଷ୍ଟ ଚରାଚର ଜଗତ ।

ସମୟେ ସମୟେ ନିଶାଚର ବିହଙ୍ଗମର କରୁଣ ସ୍ୱନ ରଜନୀର ବକ୍ଷ ବିଦୀର୍ଣ୍ଣ କରି ଭାସି ଆସୁଛି ।

ଲଳିତା ଗୃହର ଅଭ୍ୟନ୍ତରରୁ ପଦାକୁ ଆସିଲା । ଆଜି ହୃଦୟରେ କି ଏକ ଅନ୍ତର୍ଦ୍ୱନ୍ଦ୍ୱ ଜାତ ହୋଇଛି । ତାହାର ସ୍ୱର ନାହିଁ, ଛନ୍ଦ ନାହିଁ, ଭାଷା ନାହିଁ, ଭାବ ନାହିଁ କି ତାହା ସ୍ପଷ୍ଟ ନୁହେଁ । ସମସ୍ତ ହୃଦୟ ରିକ୍ତତାରେ ପରିପୂର୍ଣ୍ଣ । ଆଉ ତା ଭିତରେ ସଞ୍ଚରଣ କରୁଛି ଏକ ଆକୁଳ କ୍ରନ୍ଦନ—କ୍ରନ୍ଦସୀର ଚିରକାଳୀନ ହାହାକାର ।

ଲଳିତା ଅଗଣାର ଏକ ପ୍ରସ୍ତର ବେଦୀକା ଉପରେ ଦେହ ଢାଳିଦେଇ ଅପଲକ ନୟନରେ ଆକାଶ ବକ୍ଷକୁ ଦୃଷ୍ଟିପାତ କଲା ।

କଳା ଆକାଶ ବକ୍ଷରେ ଲକ୍ଷ କୋଟି ତାରା ଜଳି ଉଠିଛି । ସମସ୍ତ ଆକାଶରେ କି ଏକ ମୁକ୍ତିର ସ୍ୱପ୍ନ ।

ଲଳିତା ମନରେ ଭାବେ—କି ଲାଭ ଆଶାରେ ସେ ଏହି କୃଚ୍ଛ୍ରବ୍ରତ ଧାରଣ କରିଛି ? କାହିଁକି ବା ତାର ଏହି ସାଧନା ?—କାହାପାଇଁ ତାର ଏହି ତପସ୍ୟା ଉଦ୍ଦିଷ୍ଟ ? ଜୀବନ ଏବଂ ମୃତ୍ୟୁ ଏ ଦୁଇଟିଯାକ ବର୍ତ୍ତମାନ ତା ପକ୍ଷେ ସମାନ ।

ଆଶା ଏବଂ ନିରାଶାର ଦ୍ୱନ୍ଦ୍ୱ ।

ବେଳେବେଳେ ତାହା ଉନ୍ମନା କରି ତୋଳେ । ମନରେ ଅସଂଖ୍ୟ ପ୍ରଶ୍ନ-ବାଚୀ ? ସେ ଆଜି ଯାହା ପାଇଁ ରାତ୍ରି ଉଜାଗର ହୋଇ ଉଗ୍ର ତପସ୍ୟାରେ ନିଜକୁ କ୍ଳିଷ୍ଟ କରୁଛି, ସେ ହୁଏତ···

ଲଳିତା ଆଉ ଭାବି ପାରେ ନାହିଁ । ମାତ୍ର ପର ମୁହୂର୍ତ୍ତରେ କାହାର ଏକ ସୌମ୍ୟ ମୂର୍ତ୍ତି ମାନସ ପଟରେ ଭାସି ଉଠେ । ସେ ନିଜକୁ ସାନ୍ତ୍ୱନା ଦିଏ । କେବଳ ନାରୀ ଯେ ପୁରୁଷର ଅପେକ୍ଷାରେ ସର୍ବସ୍ୱ ତ୍ୟାଗ କରେ ତାହା ନୁହେଁ; ପୁରୁଷ ମଧ୍ୟ ନାରୀପାଇଁ ନିଜକୁ ଉତ୍ସର୍ଗ କରିଦିଏ । ତାର ଭୂରି ଭୂରି ପ୍ରମାଣ ପୃଥିବୀର ଆଦିମ ଯୁଗରୁ ଏ ପର୍ଯ୍ୟନ୍ତ ରହିଛି । ନିଜେ ଏହି ବିବସ୍ୱାନ ତାର ସାକ୍ଷୀ । ସାମାନ୍ୟ ଜଣେ

ନାରୀ ପାଇଁ ସେ ଅଭିଶାପ ଗ୍ରସ୍ତ ।

ଆଦ୍ୟ ସତ୍ୟଯୁଗର କାହାଣୀ । ମୃର୍ଯ୍ୟ ସେତେବେଳେ ସହସ୍ର ଧାରରେ ବିଭକ୍ତ ହୋଇ ନ ଥିଲେ ।

ତେଜସ୍ୱୀ, ଦୀପ୍ତୀମାନ ଯୁବା—କନ୍ଦର୍ପୋପମ ଦେହକାନ୍ତି ।

ନିଜର ଅଖଣ୍ଡ କିରଣରେ ସେ ସମଗ୍ର ବିଶ୍ୱକୁ ଉଜ୍ଜ୍ୱଳ କରି ରଖିଥିବାରୁ ବିଶ୍ୱଚକ୍ଷୁ ନାମରେ ନାମିତ ହେଉଥିଲେ ।

ଦିନକରେ ସୂର୍ଯ୍ୟ ଯାଇଥିଲେ ବ୍ରହ୍ମାଙ୍କର ଦର୍ଶନ ପାଇଁ । ବ୍ରହ୍ମା ସେତେ-ବେଳେ ବିଶ୍ରାମ କରୁଥାଆନ୍ତି । ପାଖରେ ପୁତ୍ର ଗୌତମ ବସି ପଦସେବାରେ ବ୍ୟସ୍ତ । ସେ'ଗକୁ ଏହିଲଳବେଳେ ଦେବରାଜ ଇନ୍ଦ୍ର ମଧ୍ୟ ସେଠାରେ ଉପସ୍ଥିତ ହେଲେ । ବ୍ରହ୍ମା ବିଶ୍ରାମ ତ୍ୟାଗ କରି ସେମାନଙ୍କ ସହିତ କଥୋପକଥନରେ ବ୍ୟସ୍ତ ରହିଲେ ।

ବ୍ରହ୍ମାଙ୍କର ମାନସ କନ୍ୟା ଅହଲ୍ୟା । ସୁନ୍ଦରୀ, ସୁକୁମାରୀ, ଷୋଡ଼ଶୀ । ରକ୍ତ-କୋକନଦ ସଦୃଶ ପଦଯୁଗଳ, ଚମ୍ପକ କଳିକାପରି କରାଙ୍ଗୁଳି, ସୁମଧ୍ୟା, ଶୁକଚଞ୍ଚୁ ଜିଣା ନାସିକା, ଡାଳିମ୍ବ ବୀଜ ଦଶନା, ଉନ୍ନତ ବକ୍ଷ, ଦେହର ବର୍ଣ୍ଣ ଚମ୍ପକ କୁସୁମ-ସମ ଉଜ୍ଜ୍ୱଳ ।

ମୋଟଉପରେ ବିଶ୍ୱରେ ନାରୀ ସୃଷ୍ଟିର ସମସ୍ତ ସୌନ୍ଦର୍ଯ୍ୟ ଯେପରି ମୂର୍ତ୍ତି ପରିଗ୍ରହ କରି ଏକତ୍ରିତ ହୋଇଛି । କଟାକ୍ଷରେ ବିଶ୍ୱ ବିମୋହନର ଶକ୍ତି ।

ଅହଲ୍ୟା ଆସି ପିତାଙ୍କ ନିକଟରେ ଉପବେଶନ କଲେ ।

ସୂର୍ଯ୍ୟ ଏବଂ ଇନ୍ଦ୍ର ଉଭୟେ ନିର୍ନିମେଷ ନୟନରେ ସେ ରୂପସୁଧା ପାନ କରିବାରେ ଲଗିଲେ । ଦୁହିଁଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲା ।

ଉଭୟେ ବ୍ରହ୍ମାଙ୍କ ନିକଟରେ ନିଜର ମନୋବାସନା ବ୍ୟକ୍ତ କରି କହିଲେ— ପିତାମହ ! ଆମ୍ଭେ ଦୁହେଁଯାକ ଏ କନ୍ୟାରତ୍ନ ଲାଭ କରିବା ପାଇଁ ଆଗ୍ରହୀ । ଆପଣ ନିଜ ଇଚ୍ଛା ଅନୁସାରେ ଏହାକୁ ସମ୍ପ୍ରଦାନ କରନ୍ତୁ ।

ବ୍ରହ୍ମା କ୍ଷଣେକାଳ ନୀରବ ରହି କଣ ଯେପରି ଚିନ୍ତା କରିବାରେ ଲାଗିଲେ । ତାପରେ ଉତ୍ତର ଦେଲେ—ଏ ଏକ ବିଷମ ସମସ୍ୟା । ତୁମେ ଦୁହେଁ ମୋ ନିକଟରେ ସମାନ । ମୁଁ କାହାକୁ କନ୍ୟା ସମ୍ପ୍ରଦାନ କରିବି ସ୍ଥିର କରିପାରୁନାହିଁ । ଏଣୁ ତୁମେ ଦୁହେଁ ପୃଥିବୀ ପ୍ରଦକ୍ଷିଣରେ ଯାଅ । ଯେ ପ୍ରଥମେ ଆସି ଉପସ୍ଥିତ ହେବ ତାକୁ ହିଁ କନ୍ୟା ସମର୍ପଣ କରିବି ।

ସୂର୍ଯ୍ୟ ଏବଂ ଇନ୍ଦ୍ର ପୃଥିବୀ ପ୍ରଦକ୍ଷିଣରେ ବହିର୍ଗତ ହେଲେ ।

ଗୌତମ ବସିଥିଲେ ପିତାଙ୍କ ନିକଟରେ ।

ପିତାମହ ପ୍ରଶ୍ନ କଲେ—ବତ୍ସ ତୁମେ ଏ ପ୍ରତିଦ୍ୱନ୍ଦିତାରେ ଅଂଶ ଗ୍ରହଣ କଲ ନାହିଁ କାହିଁକି ?

ଗୌତମ ନୀରବରେ ପିତାଙ୍କୁ ପ୍ରଦକ୍ଷିଣ କରି ଉତ୍ତର ଦେଲେ—ପିତା, ଆପଣ ତ୍ରିଜଗତର ସୃଷ୍ଟିକର୍ତ୍ତା । ଆପଣଙ୍କୁ ପ୍ରଦକ୍ଷିଣ କଲେ ବିଶ୍ୱ ପ୍ରଦକ୍ଷିଣ ସଙ୍ଗେ ସମାନ ହେଲା ନାହିଁ କି ?

ବ୍ରହ୍ମା ତାଙ୍କର ଏ ଉତ୍ତରରେ ସନ୍ତୁଷ୍ଟ ହୋଇ ଗୌତମଙ୍କ ସହ ଅହଲ୍ୟାଙ୍କର ବିବାହ ଦେଲେ ।

ସୂର୍ଯ୍ୟ ଏବଂ ଇନ୍ଦ୍ର ପୃଥିବୀ ପ୍ରଦକ୍ଷିଣ ଶେଷ କରି ବ୍ରହ୍ମାଙ୍କ ନିକଟରେ ଉପସ୍ଥିତ ହେଲେ । ଦେଖିଲେ ଯେ ଗୌତମଙ୍କ ସହ ଅହଲ୍ୟାଙ୍କର ବିବାହ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇ ସାରିଲାଣି । ତେଣୁ ମନଦୁଃଖରେ ଦୁହେଁଯାକ ପ୍ରତ୍ୟାବର୍ତ୍ତନ କଲେ । ମାତ୍ର ଅହଲ୍ୟା ପ୍ରାପ୍ତିର କାମନା ଦୁହିଁଙ୍କ ହୃଦୟରୁ ଦୂରୀଭୂତ ହେଲା ନାହିଁ । ଉତ୍କଣ୍ଠା ଯେତିକି ବଢ଼ି ବଢ଼ି ଚାଲିଲା, ଦୁହିଁଙ୍କର ଅବ୍ୟକ୍ତ ବାସନା ସେତିକି ବଳବତ୍ତର ହୋଇ ଉଠିଲା ।

ତାତ୍ତ୍ୱିକ ଦୃଷ୍ଟିରୁ ବିଚାରକଲେ ଦେଖାଯାଏ ଯେ ଦେହ ଓ ମନର ସମ୍ପର୍କ ଅବିଚ୍ଛେଦ୍ୟ । ଅନିୟନ୍ତ୍ରିତ ଆସକ୍ତିର କଳଙ୍କରେ ମନକୁ କଳୁଷିତ ହେବାକୁ ଦେଲେ ତାର ସକଳ ସଂଯମର ଶକ୍ତି ବିଧ୍ୱଂସିତ ହୋଇଯାଏ । ସେ ଦୁର୍ବଳତାର ସୁଯୋଗରେ ନିଜର ଅଜ୍ଞାତରେ କଳୁଷିତ ହୋଇଉଠେ ଦେହ । ସକଳ ଧର୍ମାଧାର ଏହି ଦେହ ଅପବିତ୍ର ହୋଇଗଲେ, ପବିତ୍ର କର୍ମର ଅନୁଷ୍ଠାନରୁ ମନ ଆପେ ଆପେ ଅପସରି ଆସେ ।

ଇନ୍ଦ୍ର ଏବଂ ସୂର୍ଯ୍ୟ ଦୁହେଁଯାକ ଅହଲ୍ୟାଙ୍କୁ ପାଇବା ପାଇଁ ବ୍ୟାକୁଳିତ ହୋଇ ଶେଷରେ ଏକ ଉପାୟ ସ୍ଥିରକଲେ ।

ପ୍ରତିଦିନ ବ୍ରାହ୍ମ ମୁହୂର୍ତ୍ତରୁ ଗୌତମ ଯାଆନ୍ତି ତପସ୍ୟାକୁ । ଗଲାବେଳେ ସେ ଅହଲ୍ୟାଙ୍କର ପ୍ରାଣପକ୍ଷୀକୁ ସଙ୍ଗରେ ନେଇ ଯାଆନ୍ତି । ଆଶ୍ରମରେ ପଡ଼ିରହେ-କେବଳ ନିର୍ଜୀବ ଦେହ । ତାପରେ ସନ୍ଧ୍ୟାବେଳେ ତପସ୍ୟାରୁ ଫେରିଆସି ସେ ଜୀବନ୍ୟାସ ମନ୍ତ୍ର-ବଳରେ ଅହଲ୍ୟାକୁ ପୁନର୍ଜୀବନ ଦାନ କରନ୍ତି । ଏରହସ୍ୟ ଜାଣିପାରି ଇନ୍ଦ୍ର ଏବଂ ସୂର୍ଯ୍ୟ ଦୁହେଁ ଆସି ସେଠାରେ ଉପସ୍ଥିତ ହେଲେ । ଗୌତମ ତପସ୍ୟାକୁ ଚାଲିଯିବା ପରେ

କାୟାପ୍ରବେଶ ମନ୍ତ୍ରବଳରେ ଜଣେ ଅହଲ୍ୟା ଶରୀରରେ ପ୍ରବେଶ କରେ ଏବଂ ଅନ୍ୟଜଣେ ତା ସହିତ ପ୍ରଣୟରେ ଲିପ୍ତ ହୁଏ। ଏହିପରି କେତେଦିନ ବିତିଗଲା। ମାତ୍ର ପରିଶେଷରେ ଦିନେ ଏ ରହସ୍ୟ ଉଦ୍‌ଘାଟିତ ହେଲା। ଗୌତମ ଅଭିଶାପଦେଇ ଅହଲ୍ୟାକୁ ପ୍ରସ୍ତର-ମୂର୍ତ୍ତିରେ ପରିଣିତ କରିଦେଲେ। ଇନ୍ଦ୍ରଙ୍କୁ ଅଭିଶାପଦେଲେ—ତୁମ ଶରୀରରେ ସହସ୍ର-ଭଗ ହେଉ ଏବଂ ସୂର୍ଯ୍ୟଙ୍କୁ କହିଲେ—ତୁମେ ସହସ୍ରଭାଗରେ ବିଭକ୍ତ ହୁଅ।

ଦାରୁଣ ଲଜ୍ଜା ଓ ଅପମାନରେ ସୂର୍ଯ୍ୟ ସ୍ୱର୍ଗ ପରିତ୍ୟାଗ କରି ପୃଥିବୀକୁ ପଳାଇ ଆସିଲେ। ଯେଉଁ ପ୍ରେମାମୃତ ପାନ କରିବାପାଇଁ ସେ ସ୍ୱେଚ୍ଛାରେ ମର୍ତ୍ତ୍ୟକୁ ଆସିଥିଲେ, ତାହାର କୁଳିବିଷରେ ଜର୍ଜ୍ଜରିତ ହୋଇ ସେ ପୁଣି ମର୍ତ୍ତ୍ୟକୁ ଆସିବାକୁ ବାଧ୍ୟହେଲେ।

ବହୁସ୍ଥାନ ଭ୍ରମଣକରି ସୂର୍ଯ୍ୟ ପରିଶେଷରେ ଆସି ମହୋଦଧିର ସମୁଦ୍ର ସୈକତରେ ଉପସ୍ଥିତ ହେଲେ। ଏହିଠାରେ ସେ ପ୍ରଥମେ ଅର୍କଦୈତ୍ୟକୁ ବଧ କରିଥିଲେ। ବର୍ତ୍ତମାନ ନିଜ କୃତକର୍ମର ପ୍ରାୟଶ୍ଚିତ ଲାଗି ଗଭୀର ତପସ୍ୟାରେ ନିମଗ୍ନ ହେଲେ। ବିବସ୍ୱାନଙ୍କ ଅନୁପସ୍ଥିତରେ ସମଗ୍ର ବିଶ୍ୱ ତମସାବୃତ ହୋଇଗଲା। ଜୀବଜନ୍ତୁ କେହି ଚଳପ୍ରଚଳ ହୋଇନପାରି କାତରରେ ଆର୍ତ୍ତନାଦ କଲେ। ତ୍ରାହି ତ୍ରାହି ରବରେ ଆକାଶ ପୃଥିବୀ ବିଦୀର୍ଣ୍ଣ ହେଲା। ବିଷ୍ଣୁଙ୍କର ଯୋଗନିଦ୍ରା ଭାଙ୍ଗିଗଲା। ସେ ଆସି ସୂର୍ଯ୍ୟଙ୍କ ତପସ୍ୟା ସ୍ଥାନରେ ଉପସ୍ଥିତ ହୋଇ ଶାପ ମୁକ୍ତିର ପ୍ରତିକାର ବତାଇଦେଲେ। ସୂର୍ଯ୍ୟ ଶାପମୁକ୍ତ ହେଲେ, ମାତ୍ର ତାଙ୍କର ରଶ୍ମି ସହସ୍ର ଭାଗରେ ବିଭକ୍ତ ହେଲା। ସେହିଦିନରୁ ସେ ଏହାକୁ ନିଜର ପ୍ରିୟକ୍ଷେତ୍ରରୂପେ ମନେକଲେ ଏବଂ ନିଜର ପ୍ରମୋଦ ପାଇଁ ମୈତ୍ରେୟ ବନ ସ୍ଥାପନ କଲେ।

ଦ୍ୱାପର ଯୁଗରେ ସତ୍ରାଜିତ ଏଠାରେ ସହସ୍ରାଂଶୁଙ୍କର ଆରାଧନାକରି ସ୍ୟମନ୍ତକ ମଣି ପ୍ରାପ୍ତ ହୋଇଥିଲେ ଏବଂ ଶ୍ରୀକୃଷ୍ଣ ପ୍ରେୟସୀ ସତ୍ୟଭାମାଙ୍କୁ କନ୍ୟାରୂପେ ଲାଭ କରିଥିଲେ। ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ମଧ୍ୟ ଏହିଠାରେ ତପସ୍ୟାକରି କୁଷ୍ଠରୋଗରୁ ମୁକ୍ତ ହୋଇଥିଲେ।

ପୂର୍ବଆକାଶରେ କୁଆଁତାରା ଉଦିତ ହେବାମାତ୍ରେ ଜଳଚର ପକ୍ଷୀମାନେ କଳରବ କରି ଉଠିଲେ। ପ୍ରଭାତ ସମୀରଣ ସ୍ପର୍ଶରେ ମୈତ୍ରେୟ ବନରୁ ମର୍ମରଧ୍ୱନି ଭାସି ଆସିଲା।

ଲଳିତାର ତନ୍ଦ୍ରା ଭାଙ୍ଗିଗଲା । ଅଳ୍ପ ମୁହୂର୍ତ୍ତକ ପରେ ସୂର୍ଯ୍ୟ ଉଦିତ ହେବେ । ସେ ତରବରରେ ଚନ୍ଦ୍ରାଭାଗା ନଦୀକୁ ସ୍ନାନ କରିବାପାଇଁ ଗଲା ।

ଅନ୍ଧକାର ସଂପୂର୍ଣ୍ଣ ବିଦୂରିତ ହୋଇନାହିଁ । ଲଳିତା ଅନ୍ୟମନସ୍କ ଭାବରେ ଯାଉ ଯାଉ ନଦୀ କୂଳରେ କୌଣସି ଏକ ବସ୍ତୁକୁ ତାର ପାଦ ସ୍ପର୍ଶକଲା । ସେ ଚମକି ପଡି ଭୟରେ ପଛକୁ ଅପସରି ଆସିଲା । ତାପରେ ମୁହୂର୍ତ୍ତେ ଠିଆହୋଇ ଆଗକୁ ଦୃଷ୍ଟି ନିକ୍ଷେପକଲା । ଦେଖିଲା—ତାହା ଏକ ମନୁଷ୍ୟମୂର୍ତ୍ତି । ହସ୍ତପଦ ଦୃଢଭାବରେ ବନ୍ଧାଯାଇଛି ମାତ୍ର ସେ ମୃତ କି ଜୀବିତ ଜଣାଯାଉନାହିଁ ।

ଲଳିତା ମନରେ ସାହସ ବାନ୍ଧି ତା ନିକଟକୁ ଗଲା । ତାପରେ ତା ବୁକୁରେ ହାତରଖି ପରୀକ୍ଷା କରିବାରେ ଲାଗିଲା । ଦେଖିଲା—ଜୀବନୀଶକ୍ତି ଅତି କ୍ଷୀଣଭାବରେ ପ୍ରବାହିତ ହେଉଛି । ସେ ତରବରରେ ତାର ହସ୍ତପଦର ବନ୍ଧନ ମୋଚନ କରିଦେଲା ଏବଂ ନିଜର ସମସ୍ତ ଶକ୍ତି ପ୍ରୟୋଗକରି ନଦୀକୂଳରୁ ଶୁଷ୍କ ସ୍ଥାନକୁ ଓଟାରି ଆଣିଲା ।

ଧୀରେ ଧୀରେ ଅନ୍ଧକାର ଦୂରୀଭୂତ ହୋଇଗଲା । ମନୁଷ୍ୟ ମୂର୍ତ୍ତିଟିକୁ ଦେଖି ଲଳିତା ବିସ୍ମୟରେ ଅଭିଭୂତ ହୋଇପଡ଼ିଲା । ଏହା ସ୍ୱପ୍ନ କି ସତ୍ୟ ସେ ପ୍ରଥମେ ବିଶ୍ୱାସ କରିପାରିଲା ନାହିଁ !

……ଏଯେ ସେହି ସ୍ୱପ୍ନର ଧନ—ତାର ଉପାସନାର ବସ୍ତୁ ମୋହନ !! ସେହି ମୁଖ, ସେହି ଚକ୍ଷୁ, ସେହି ବଳିଷ୍ଠକାୟ ଶରୀର ।

ଲଳିତା କଣ କରିବ ପ୍ରଥମେ କିଛି ସ୍ଥିର କରିପାରିଲା ନାହିଁ । କେତେ ସମୟ ଶୁଶ୍ରୂଷା କରିବାପରେ ମୋହନର ଚେତନା ଫେରି ଆସିଲା । ତାପରେ ସେ ବହୁ କଷ୍ଟରେ ତାକୁ ନିଜ କୁଟୀରକୁ ଆଣିଲା । ସେଠାରେ ସ୍ନାନାହାର ପରେ ମୋହନ ବିଶ୍ରାମ କଲା । ମାତ୍ର ପୂର୍ବ ରାତ୍ରିର ସ୍ମୃତି ଏପର୍ଯ୍ୟନ୍ତ ବିଦୂରିତ ହୋଇନାହିଁ । ପ୍ରତିମୁହୂର୍ତ୍ତରେ ସେ ଯେପରି କାହାର ଆର୍ତ୍ତନାଦ ଶୁଣିବାକୁ ପାଉଛି । ବେଳେ ବେଳେ ତାହା ଶିହରଣ ଜାତ କରି ସମସ୍ତ ଶରୀରକୁ ଅବଶ କରିଦିଏ । ମୋହନ ଆଖିବୁଜି ପୂର୍ବ ରାତ୍ରିର ସେ ବିଭତ୍ସ ଦୃଶ୍ୟ ମନେ ପକାଏ ।

ବର୍ଚ୍ଛା ବିଦ୍ଧ କାଦମ୍ବିନୀକୁ ନେଇଯିବା ସଙ୍ଗେ ସଙ୍ଗେ ଦସ୍ୟୁଦଳ ମୋହନର ହସ୍ତ ପଦ ବନ୍ଧନ କରି ବୋଇତକୁ ନେଇ ଆସିଲେ । ରାଧାମାଧବଙ୍କ ମନ୍ଦିର

ପ୍ରାଙ୍ଗଣରେ ପଡ଼ିରହିଲା କେବଳ ଗୋଟିଏ ରକ୍ତର ସ୍ରୋତ ।

କେତେସମୟପରେ ମୋହନ ଅଚେତ ହୋଇ ପଡ଼ିଲା । ପୁଣି ଯେତେବେଳେ ସାମୁଦ୍ରିକ ଶୀତଳ ପବନ ସ୍ପର୍ଶରେ ତାର ଚେତନା ଫେରିଆସିଲା, ସେତେବେଳେ ଅନୁଭବ କଲା ଯେ, ସେ ଠିକ୍ ପୂର୍ବପରି ବନ୍ଧନ ଅବସ୍ଥାରେ ଅଛି । ତେଣୁ ନିରୁପାୟ ଭାବରେ ନିଜ ସ୍ଥାନରେ ପଡ଼ି ରହିଲା ।

ବୋଇତ ସମୁଦ୍ରଆଡେ ଚାଲିଛି । କେତେବେଳେ ଗତି କ୍ଷିପ୍ର ତ କେତେବେଳେ ମନ୍ଥର । ସମୁଦ୍ରର କ୍ରୁଦ୍ଧ ଗର୍ଜନ ଧ୍ୱନି କ୍ରମେ ସ୍ପଷ୍ଟରୁ ସ୍ପଷ୍ଟତର ହେବାରେ ଲାଗିଛି ଏବଂ ତା ସହିତ ଆସନ୍ନ ମୃତ୍ୟୁ ଆଶଙ୍କାରେ ମୋହନର ବକ୍ଷର ସ୍ପନ୍ଦନ ଦ୍ରୁତରୁ ଦ୍ରୁତତର ହେବାରେ ଲାଗିଛି ।

ସହସା ବୋଇତରେ ବିଶୃଙ୍ଖଳା ପରିଲକ୍ଷିତ ହେଲା । କେହିଜଣେ କହିଲା— ଆମ୍ଭେମାନେ ବର୍ତ୍ତମାନ ବନ୍ଦର ପ୍ରହରୀଙ୍କ ଦୃଷ୍ଟିରେ ପଡ଼ିଗଲେଣି । ହୁଏତ ଅଳ୍ପସମୟ ମଧ୍ୟରେ ବୋଇତ ଯାଞ୍ଚ କରାଯାଇ ପାରେ । ବର୍ତ୍ତମାନ ଉପାୟ ? ?

ଅନ୍ୟଜଣେ ଉତ୍ତର ଦେଲା—ଭଗବାନ ମଙ୍ଗଳମୟ । ତାଙ୍କର ଇଚ୍ଛାହିଁ ସର୍ବଥା ପୂରଣ ହେବ ! ଏଣୁ ବର୍ତ୍ତମାନ ଆତ୍ମରକ୍ଷା ପାଇଁ ଏହାକୁ ନେଇ ନଦୀ କୂଳରେ ଫିଙ୍ଗିଦିଅ । ତେଣିକି ସେ ତାର କର୍ମ ଭୋଗ କରିବ ।

ସଙ୍ଗେ ସଙ୍ଗେ ତାହାହିଁ କାର୍ଯ୍ୟରେ ପରିଣତ ହେଲା ।

ହେମନ୍ତର ସନ୍ଧ୍ୟା । ପଶ୍ଚିମ ଆକାଶରେ ନାନା ରଙ୍ଗ ସ୍ତରେ ସ୍ତରେ ଫୁଟି ଉଠିଛି । ରଙ୍ଗରେ ଅବଶ୍ୟ ଘନତା ନାହିଁ, ମାତ୍ର ବର୍ଣ୍ଣାଢ୍ୟରେ କୌଣସି ତ୍ରୁଟି ପରିଲକ୍ଷିତ ହୁଏନାହିଁ । ଘନଶ୍ୟାମ ଶସ୍ୟ ସମ୍ଭାରରେ ଧରିତ୍ରୀର ବକ୍ଷ ଝଲମଲ କରୁଥିବାର ଦୃଷ୍ଟିଗୋଚର ହୁଏ । ସ୍ତିମିତ ଅସ୍ତରାଗରେ କେଉଁଠି କେଉଁଠି ବା ଧୂପଛାୟା ରଙ୍ଗ ଖେଳି ଯାଇଛି । ମଧ୍ୟେ ମଧ୍ୟେ ଭାସି ଆସୁଛି—ଧାନଫୁଲର ମନ ମତାଣିଆ ଗନ୍ଧ । କେତେବେଳେ ବା ମୃଦୁ ମୃଦୁ ସନ୍ଧ୍ୟା ସମୀରଣରେ ଧାନ୍ୟଶୀର୍ଷ ଗୁଡ଼ିକ କ୍ରୀଡ଼ାନନ୍ଦରେ ମୁଣ୍ଡ ନୁଆଁଇ ଈଷତ୍ ନର୍ତ୍ତିତ ହେଉଛି ।

ଲଳିତା ସେହି ମୋଦମୟୀ ସନ୍ଧ୍ୟାରେ ପଶ୍ଚିମ ଗଗନକୁ ଚାହିଁ ବସି ରହିଥିଲା । ଦୃଷ୍ଟି ତାର ଅନନ୍ତ ଆକାଶ ବକ୍ଷରେ ନିବଦ୍ଧ । ଅନ୍ୟ ମନସ୍କା । କଣ ସେ ଭାବୁଛି ତାହା କେବଳ ସେହି ଜାଣେ । ବୁକୁ ଥରାଇ ବାହାରି ଆସୁଛି ଘନ ଘନ ଦୀର୍ଘଶ୍ୱାସ ।

ମୋହନ ଅଦୂରରେ ବସି ତା' ଆଡ଼କୁ ମୁଗ୍‌ଧ ଦୃଷ୍ଟିରେ ଚାହିଁ ରହିଛି ।

କେତେ ସମୟ ବିତିଗଲା । ଆକାଶ ବକ୍ଷରୁ ଟୋପା ଟୋପା ଶିଶିର ବିନ୍ଦୁ ଝରିପଡ଼ିଲା ଘନଶ୍ୟାମ ଦୂର୍ବାଦଳ ଉପରେ ।

ମୋହନ ନିସ୍ତବ୍‌ଧତା ଭଙ୍ଗକରି କହିଲା—ଲଳିତା ମନୁଷ୍ୟ ଚିରଦିନ କାମନା କରେ—ପୃଥିବୀର ନିରୋଳା କୋଣରେ ଏକ ନିଭୃତ ନୀଡ଼ ଏବଂ ପାଖରେ ମମତାମୟୀ ଏକ ନାରୀ । ଏହାହିଁ ତାହା ନିକଟରେ ମରୁଦଗ୍‌ଧ ପ୍ରାନ୍ତର ମଧ୍ୟରେ ମରୁଦ୍ୟାନ ।

ଲଳିତା ତା କଥାରେ ବାଧାଦେଇ ଉତ୍ତର ଦେଲା—ଯୁକ୍ତି ଅନେକ ସମୟରେ ମନକୁ ପ୍ରବୋଧନା ଦେବାକୁ ଚେଷ୍ଟା କରେ ସତ, ମାତ୍ର ତହିଁରେତ ସମସ୍ତ ସମସ୍ୟାର ସମାଧାନ ହୁଏ ନାହିଁ । କାରଣ ମନ ପ୍ରାୟ ତାକୁ ସ୍ୱୀକାର କରେ ନାହିଁ । ଏ ଦୁନିଆରେ ପାପ ପୁଣ୍ୟ ବୋଲି ଦୁଇଟି ଜିନିଷ ଅଛି, ତୁମେ ତାକୁ ଅସ୍ୱୀକାର କରିବ କିପରି ?

—ନାଁ, ମୁଁ ତାକୁ ଅସ୍ୱୀକାର କରୁନାହିଁ । ମାତ୍ର ଏତିକି କହି ଯାଉଛି ଯେ ମନର ଦୁର୍ବଳତାହିଁ ପାପ । ତେଣୁ ହୃଦୟରୁ ଯଦି ଦୁର୍ବଳତାକୁ ଦୂର କରିପାରିବ, ତେବେ ଆଉ ପାପର ପ୍ରଶ୍ନ ରହିଲା କେଉଁଠି ?

—ନାଁ, ମୋହନ ! ମୋତେ ଆଉ ସେ ଲାଳସାର ପଥକୁ ଟାଣି ନିଅନାହିଁ । ମୁଁ ଯେତେବେଳେ ଦେବତାର ସେବାରେ ନିଜର କାୟ, ମନ, ବାକ୍ୟ ସମସ୍ତ ଉତ୍ସର୍ଗ କରି ସାରିଛି; ସେତେବେଳେ ଆଉ ମୋ ସଂକଳ୍ପରୁ ବିଚ୍ୟୁତ ହୋଇପାରିବ ନାହିଁ । ତୁମକୁ ଅନୁରୋଧ କରୁଛି—ମୋତେ ଆଉ ମୋ ପଥରୁ ଫେରାଅ ନାହିଁ ।

ମୋହନ ପ୍ରଶ୍ନ କଲା—ତାହାହେଲେ ମୁଁ କଣ ବୁଝିବ ଯେ ତୁମେ ମୋତେ ଭଲ ପାଅ ନାହିଁ ?

ବର୍ଷଣ ମୁଖର ଆକାଶରେ ଅକସ୍ମାତ ରୌଦ୍ର ପ୍ରତିଫଳିତ ହେଲାପରି ଲଳିତାର ମୁଖଟି ଉଜ୍ଜ୍ୱଳ ହୋଇଉଠିଲା । ସେ ଧୀରସ୍ୱରରେ ଉତ୍ତର ଦେଲା—ମୋହନ, ସେହି ଭଲପାଏ ବୋଲି ତ ଆଜିଯାଏ ବଞ୍ଚି ରହିଛି । ମନୁଷ୍ୟ ମନର ସ୍ନେହ,

ଅନୁରାଗ, ମୋହ, ମାୟା, ମମତା ସମସ୍ତ ଯଦି ଶୂନ୍ୟ ହୋଇଯିବ, ତେବେ ସେ ବଞ୍ଚି-ରହିବ କିପରି ?

—ବେଶ, ତାହାହେଲେ ଫେରିଯିବା । ଏ ବିଶାଳ ପୃଥିବୀରେ ଆମକୁ କଣ କେଉଁଠି ଟିକିଏ ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ମିଳିବ ନାହିଁ । ସେହିଠାରେ ଆମେ ଗଢ଼ିବା ନୂତନ ସଂସାର । ଦେଖିବ, ଅଳ୍ପଦିନ ମଧ୍ୟରେ ତୁମ ମନର ସମସ୍ତ ଦୁର୍ବଳତା ଆପେ ଆପେ ଦୂର ହୋଇଯିବ ।

ଲଳିତା ଉତ୍ତର ଦେଲା—ତାହା କିପରି ସମ୍ଭବ ହେବ ? ମୋର ମନେ ହୁଏ—ତାହା ବୋଧହୁଏ ନିୟତିର ଇଚ୍ଛା ନୁହେଁ । ତାହା ହୋଇଥିଲେ ମୁଁ ତୁମ ନିକଟରୁ ଅନ୍ତର ହୋଇ ଆଆନ୍ତି କାହିଁକି ?

ମୋହନ ଈଷତ୍ ଉତ୍ତେଜିତ ଭାବରେ ଉତ୍ତର ଦେଲା—ଯେଉଁ ନିୟତି ଦ୍ୱାରା ତୁମର ଏଭଳି ସର୍ବନାଶ ଘଟିଲା, ତା ଉପରେ ତୁମେ ଏତେ ଆସ୍ଥା ରଖୁଛ କାହିଁକି ? ସେଇଥିପାଇଁ ତ ମୁଁ କହୁଛି—ଆସ, ନିଜର ସାହସ ଓ ପୌରୁଷ ବଳରେ ତାକୁ ଜୟ କରିନେବା ।

ଲଳିତା ମୃଦୁ ମୃଦୁ ହସି ଉତ୍ତର ଦେଲା—ମୋହନ, ଜୀବନର ସମସ୍ତ ଅଙ୍କ କଡ଼ା ଗଣ୍ଡାରେ ମିଳେ ନାହିଁ । ସେ ଅଙ୍କ ଯେ ମିଳାଏ ବା ଅମେଳ ଘଟାଏ ତାକୁ କେହି ନ ଦେଖିଲେ ମଧ୍ୟ ସମସ୍ତେ ଅନୁଭବ କରନ୍ତି । ଉଦାହରଣ ସ୍ୱରୂପ ଦେଖ— ଯେଉଁ ପବନ ଆମର ନୌକା ବୁଡ଼ାଇ ଦିଏ, ଜଳ ଭିତରେ ବୁଡ଼ି ଯାଉଁ ଯାଉଁ ଆମେ ପ୍ରତିନିୟତ ସେହି ପବନକୁ ଗାଳୁଁ । ଏଣୁ ଦୁଃଖ ଯେଉଁଠାରେ ସତ୍ୟ, ପ୍ରତିକାର ସେଠାରେ ସହଜ ହୋଇପଡ଼େ । କାରଣ ଦୁଃଖ ହିଁ ଅନେକ ସମୟରେ କଠୋର ପ୍ରତିଜ୍ଞା ଆଣିଦିଏ ।

ମୋହନ ସେହି ଅନ୍ଧକାରରେ ଲଳିତାଆଡ଼େ ନିର୍ବାକ ଭାବରେ ଚାହିଁରହି ଉତ୍ତର ଦେଲା—ତୁମ ବ୍ୟତୀତ ଆଉ ଏ ଜୀବନରେ ମୁଁ କି ସାର୍ଥକତା ଅନୁଭବ କରିବି ?

ଲଳିତା କିଛିସମୟ ନୀରବ ରହି କହିଲା—ମୋହନ ! ମହାପୁରୁଷମାନେ କହିଛନ୍ତି—ଦୁଃଖର ତାକ ମହତର ଏବଂ କଷ୍ଟ ଓ କ୍ଳାନ୍ତିର ବୋଝ ଗୌରବର । ଏଣୁ ଜୀବନରେ ଯେଉଁ ସମସ୍ତ ଦୁଃଖ ଭୋଗ କରିଛ, ତାହାର ଭାଗ କାହାରିକୁ ନ ଦେଇ ଶତଦଳ ପରି ନିଜକୁ ବିକାଶ କର । ଭାବିଦେଖ, କେଉଁ ଅତଳ ତଳେ

କୋରକଟିଏ ଜନ୍ମଲାଭ କରେ । ତାପରେ ପ୍ରତିଦିନ ଅନ୍ଧାର ସହିତ ସଂଗ୍ରାମ କରି କରି ସେ ଆଲୋକ ଦେଖିବା ପାଇଁ ମୁଣ୍ଡ ଟେକେ । ପରିଶେଷରେ ଦିନେ ତାର ସାଧନା ସଫଳ ହୁଏ ଏବଂ ସେ ଆଲୋକର ସ୍ପର୍ଶ ପାଏ । ତା ପରେ ଗୋଟିଏ ଗୋଟିଏ ପାଖୁଡ଼ା ମେଲାଇ ନିଜକୁ ବିକାଶ କରେ । ସେହିପରି ତୁମେ ସମସ୍ତ ଦୁଃଖ ଓ ଶୋକ ଭୁଲିଯାଇ ଆଲୋକ ଆଡ଼କୁ ଅଗ୍ରସର ହୁଅ । ଦେଖୁନାହଁ, ବର୍ତ୍ତମାନର ଦୁନିଆ କେତେ କ୍ଷିପ୍ରଭାବରେ ଅବନତି ଆଡ଼କୁ ଗତି କରୁଛି । ଏ ଯୁଗରେ ଶ୍ରଦ୍ଧେୟୀକୁ ଶ୍ରଦ୍ଧା କରି-ବାକୁ କେହି ଚାହାନ୍ତି ନାହିଁ, ବିଶ୍ୱାସକୁ କେହି ଜୀବନ ଦେଇ ଲାଳନ କରନ୍ତି ନାହିଁ କି ଚିରନ୍ତନ କାଳର ଚରିତ୍ର ନୀତି ପ୍ରତି କାହାରି ଆସ୍ଥା ନାହିଁ; ମହତ ପ୍ରାଣର ବଳିଦାନ କାହାରି ଆଖିରେ ପଡ଼ୁନାହିଁ । ମହାପ୍ରାଚୀନର ଅବକ୍ଷୟ ଦିନକୁଦିନ ବଢ଼ି ଚାଲିଛି । ମୁଁ ଚାହେଁ—ତୁମେ ବଡ଼ ହୁଅ ଏବଂ ମହତ ହୁଅ । ଯେଉଁ ଜୀବନଟା ଖରଚ ହୋଇ ଯାଇଛି, ତାକୁ ହିସାବକୁ ଆଣ ନାହିଁ । ଏହାଦ୍ୱାରା ନିଜକୁ ଅପମାନ କରାଯାଏ । ଏଣୁ ମୋ ଭଳି ଜଣେ ସାମାନ୍ୟ ନାରୀ ପାଇଁ ନିଜକୁ ଜଳାଞ୍ଜଳି ଦେବାକୁ ଇଚ୍ଛା କରୁଛ କାହିଁକି ?

ମୋହନ ଉତ୍ତର ଦେଲା—ମାତ୍ର ମୁଁ ବୁଝିପାରୁ ନାହିଁ, ତୁମର ଏ ଅନାସକ୍ତ ଭାବ କାହିଁକି ? ଭଗବାନ ଏ ଧୂଳିର ଧରଣୀରେ ସମସ୍ତଙ୍କୁ ବଞ୍ଚିବାର ସମାନ ଅଧିକାର ଦେଇଛନ୍ତି । ତୁମେ ବା ଏପରି ରିକ୍ତ ଭାବରେ ଜୀବନ ବିତାଇବ କାହିଁକି ?

ଲଳିତା ଦୂର ଆକାଶ ବକ୍ଷରେ ଦୃଷ୍ଟି ନିବଦ୍ଧ କରି ଉତ୍ତର ଦେଲା—ମୁଁ ରିକ୍ତ ବୋଲି ତୁମକୁ କିଏ କହିଲା ? ଯେଉଁଦିନ ସାଧୁବାବାଙ୍କ ସହିତ ଏ ସ୍ଥାନରୁ ସେ ସ୍ଥାନକୁ ଘୂରି ବୁଲୁଥିଲି, ସେଦିନ ଅବଶ୍ୟ ମୁଁ ଜୀବନରେ ଶୂନ୍ୟତା ଅନୁଭବ କରିଥିଲି । ଏଥିପାଇଁ କେତେଥର ଆତ୍ମହତ୍ୟା କରିବାକୁ ଇଚ୍ଛା କରିଛି ଏବଂ ଚକ୍ଷୁର ଲୋତକରେ ଅର୍ଘ୍ୟ ସଜାଇ କେତେ ଦେବତାଙ୍କୁ ନୈବେଦ୍ୟ ଅର୍ପଣ କରିଛି । କ୍ରମେ କ୍ରମେ ସେ ଶୂନ୍ୟତା ପୂରଣ ହୋଇଗଲା । ତାପରେ ମୁହଁରେ ହସ ଆସିଲା ଏବଂ ମନରେ ବଳ ଆସିଲା । ସେତେବେଳେ ଜାଣିଲି ଯେ ପଥର ଦେବତା ମୋତେ କୋଳକୁ ଟାଣି ନେଇଛନ୍ତି । ତେଣୁ କାୟମନୋବାକ୍ୟରେ ମୁଁ ତାଙ୍କରି ସେବାରେ ନିଜକୁ ଉତ୍ସର୍ଗ କରିଦେଲି ।

ମୋହନ ଈଷତ୍ ବ୍ୟଙ୍ଗ ଭାବରେ ଉତ୍ତର ଦେଲା—ହଁ, ତାହା ତ ଜାଣୁଛି । ତୁମେ ବର୍ତ୍ତମାନ କିପରି ନିଶ୍ଚିନ୍ତ ଭାବରେ ଜୀବନ ବିତାଉଛ, ତାହା କଣ ମୁଁ ଦେଖି-

ପାରୁନାହିଁ ? ତୁମର ଭାବବାର ଥିଲା—ପ୍ରିୟ ଲୋକକୁ ହରାଇଲେ ପୁରୁଷ ମନରେ କି ଦୁଃଖ ହୁଏ ? ତୁମେ ଜାଣ—ଅନ୍ୟଦାଗ ଲିଭିଯାଏ, ମାତ୍ର ମନର ଦାଗ ସହଜରେ ଲିଭେନାହିଁ । ପ୍ରତି ମୁହୂର୍ତ୍ତରେ ତାହା ଅନ୍ତରର ଅନ୍ତଃସ୍ଥଳରେ ଧ୍ୱନିତ ହୋଇ ବ୍ୟଥା ଓ ବେଦନାରେ ଜର୍ଜ୍ଜରିତ କରିଦିଏ ।

ଲଳିତା ମନରେ କୌଣସି ଦ୍ୱିଧା ବା ସଙ୍କୋଚ ନାହିଁ । ପୂର୍ବପରି ସେ ନିର୍ଲିପ୍ତ ଏବଂ ନିରୁଦ୍‌ବେଗ କଣ୍ଠରେ ହସି ହସି ଉତ୍ତର ଦେଲା—ଏ ସାମାନ୍ୟ କଥାଟା ବୁଝିବାରେ ଆଉ କଷ୍ଟ କଣ ଅଛି ? ଅନେକ ସମୟରେ ଦେଖିବାକୁ ମିଳେ ଯେ, ମନୁଷ୍ୟ ନିଜ ଘରକୁ ଗଲାବେଳେ ଏପରି ଜିନିଷ ଦେଖେ, ଯାହା ତାର ଚଲାପଥ ରୋଧ କରିଛି । ତାକୁ ସେ ଦୂରେଇଦେଇ ଚାଲିଯାଏ । ତାପରେ ପଥରୋଧ ଏକ କାହାଣୀ ହୋଇ ରହେ । ସେହିପରି ତୁମେ ମୋତେ ଏକ କାହାଣୀ ବୋଲି ମନେକରି ନିଜ ପଥରେ ଚାଲିଯିବାରେ ଆପତ୍ତି କଣ ? ଚିତ୍ତବିଭ୍ରମ ଅନେକ ସମୟରେ ଜ୍ଞାନକୁ ଆଚ୍ଛନ୍ନ କରେ ଏବଂ ବୁଦ୍ଧିକୁ ବିଭ୍ରାନ୍ତ କରେ । ତେଣୁ କୌଣସି କାମରେ ଅନୁଶୋଚନା କରନାହିଁ । ଯାହା ଘଟିଛି, ତାହା ହେବାକୁ ଦିଅ । କେବଳ ଗୋଟିଏ କଥା ଜାଣିରଖ—କିପରି କଣ ଘଟେ, ତାହା ଆମକୁ ଜଣା ନାହିଁ । ତୁମେ ପୁରୁଷ, ନିଜର ପୌରୁଷଦ୍ୱାରା ବିଶ୍ୱରେ ଅକ୍ଷୟ କୀର୍ତ୍ତି ସ୍ଥାପନ କରିବାକୁ ଚେଷ୍ଟା କର—ଠିକ୍ ଏହି ସୂର୍ଯ୍ୟମନ୍ଦିର ଭଳି । ତୁମର ସେ କୃତିତ୍ୱରେ ମୁଁ ଗୌରବାନ୍ୱିତ ହେବି । ମାତ୍ର ଏଠାରୁ ଗୋଟିଏ କଥା ଶିଖିଯାଅ—ପ୍ରତିଷ୍ଠା ପାଇଁ କେବେ ଲାଳାୟିତ ହେବନାହିଁ । ସେତିକି ପରିତ୍ୟାଗ କରିଛି ବୋଲି ବାରବରଷର ବଢ଼େଇ ପିଲା ଆଜି ଚିର ଅମର । ହୁଏତ ଚନ୍ଦ୍ର, ସୂର୍ଯ୍ୟ ଥିବାଯାଏ ଅମର ହୋଇ ମଧ୍ୟ ରହିଥିବ । ଯେଉଁଦିନ ପ୍ରତିଷ୍ଠା ପାଇବ, ସେଦିନ ଭୋଗପାଇଁ ଲାଳାୟିତ ହୋଇ ଉଠିବ। ଆହୁରି ଆହୁରି ଆବଶ୍ୟକ କହି ପରିଶେଷରେ ଦିନେ କ୍ଳାନ୍ତ ହୋଇ ପଡ଼ିବ । ସେଦିନ ଅବଶ୍ୟ ବୁଝିପାରିବ ଯେ, ପୃଥିବୀରେ ବଡ଼ ବା ଭଲ ବୋଲି କିଛି ନାହିଁ । ଭଲଠାରୁ ଆହୁରି ଭଲ, ବଡ଼ଠାରୁ ଆହୁରି ବଡ଼ ସବୁବେଳେ ରହିବ । ସେତେବେଳେ ଯଦି ଏ କଥା ବୁଝି ନ ପାରିବ, ତାହାହେଲେ କ୍ଳାନ୍ତିରେ ଭାଙ୍ଗି ପଡ଼ିବ; ହତାଶାର ହା ହା କାର ନେଇ ପୁଣି ଗୁହିଁ ରହିବ ସୂର୍ଯ୍ୟୋଦୟ ଆଡ଼େ ।

ଜୀବନର ବହୁକ୍ଷେତ୍ରରେ ଆପୋଷ ସମାଧାନ ହୁଏତ ଏକ ଅନିବାର୍ଯ୍ୟ ଘଟଣା । ମାତ୍ର ଏହି ଘଟଣାରଫଳ ବଡ଼ ବିଚିତ୍ର । କାରଣ ମନୁଷ୍ୟ ଯେତେବେଳେ ଯାଇ ଆପୋଷ କରେ, ଯେତେବେଳ ପର୍ଯ୍ୟନ୍ତ ଗୋଟିଏ ଦିଗର କ୍ଷତି ଅନ୍ୟ ଦିଗରେ ପୂରଣ ହେବାରେ ଆଶା ଥାଏ । ଅଥଚ ଆପୋଷରଫଳ ତାହା ପ୍ରାୟ ଘଟେ ନାହିଁ । ଯାହ ଯ ଏ, ତାହା ତ ଯାଏ—ଯାହା ପାଇବାର ଆଶା, ତାହା ମଧ୍ୟ ଶେଷ ପର୍ଯ୍ୟନ୍ତ ମିଳେ ନାହିଁ ।

ଦେଖୁଁ ଦେଖୁଁ ମାଘସପ୍ତମୀ ଆସି ଉପସ୍ଥିତ ହେଲା । କୋଣାର୍କରେ ଚନ୍ଦ୍ରଭାଗା ମେଳା । ଏହି ଦିବସରେ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ପିତାଙ୍କ ଅଭିଶାପରୁ ଏହିଠାରେ ମୁକ୍ତ ହୋଇଥିଲେ । ତେଣୁ ସେହି ଦ୍ୱାପର ଯୁଗରୁ ଲୋକେ ଚନ୍ଦ୍ରଭାଗାର ପୁଣ୍ୟ ସଲିଳରେ ଅବଗାହନକରି ଜନ୍ମ ଜନ୍ମାନ୍ତରର ସକଳ କଳୁଷ ବିନାଶ କରନ୍ତି ।

ସାରା ଭାରତରୁ ଲକ୍ଷ ଲକ୍ଷ ଯାତ୍ରୀ ଆସି ଅର୍କକ୍ଷେତ୍ରରେ ଉପସ୍ଥିତ ହେଲେ । ସହସ୍ରାଂଶୁଙ୍କର ଜୟ ଜୟ ଶବ୍ଦରେ ଆକାଶ ପୃଥିବୀ ପ୍ରତିଧ୍ୱନିତ ହେଲା ।

ରଜନୀ ପ୍ରଥମ ପ୍ରହର ଉତ୍ତୀର୍ଣ୍ଣ ପ୍ରାୟ । ଚନ୍ଦ୍ରମା ମେଘ ଉହାଡ଼ରେ । ପ୍ରକାଶ କ୍ଷୀଣ । ଚନ୍ଦ୍ରଭାଗାର ବିଶାଳ ବାରିଧାରା ଶ୍ୟାମଳବର୍ଣ୍ଣ ଧାରଣକରି ଭୟଙ୍କର ପ୍ରତୀତ ହେଉଥିଲା । ମଧ୍ୟେ ମଧ୍ୟେ ଭାସି ଆସୁଥିଲା—ନିଶାଚର ପକ୍ଷୀର ଉଦାସ କରୁଣ ସ୍ୱର ।

ମୋହନ ଏବଂ ଲଳିତା ପରସ୍ପରର ମୁହଁକୁ ଚାହିଁ ସେହି ଜ୍ୟୋତ୍ସ୍ନାନ୍ଧକାରେ ବସି ରହିଥିଲେ । ଚତୁର୍ଦ୍ଦିଗରେ ଶୁଭ୍ର ବାଲୁକା ସ୍ତୂପ ।

ମୋହନ ପ୍ରଶ୍ନ କଲା—ପୁରୁଷମାନଙ୍କ ପାଇଁ ସ୍ତ୍ରୀରାଜ୍ୟର ସୀମାହେଉଛି ଘର । ବାସ୍ତବରେ ତାହା କାରାଗାରତୁଲ୍ୟ ହେଲେ ମଧ୍ୟ ସ୍ନେହ ଓ ମଧୁରତାରେ ନିର୍ମିତ ହୋଇଥିବାରୁ ସେ ସ୍ୱେଚ୍ଛାରେ ତହିଁରେ ବନ୍ଦୀହେବାକୁ ପସନ୍ଦ କରେ । ମାତ୍ର ନାରୀ ତହିଁରୁ ବ୍ୟତିକ୍ରମ ହୁଏ କିପରି ?

ଲଳିତା ସ୍ପଷ୍ଟ ବୁଝିପାରିଲା ଯେ ମୋହନ ତାକୁହିଁ ଲକ୍ଷ୍ୟକରି ଏ କଥାଟି କହୁଛି । କିନ୍ତୁ ନ ଜାଣିଲା ଭଳି ସେ ଉତ୍ତରଦେଲା—ନାରୀ ଜୀବନରେ ପ୍ରେମ ବଡ଼ ନୁହେଁ, ବଡ଼ ହେଉଛି ଶାନ୍ତି । ତାହାହିଁ ପ୍ରେମ ଉଦ୍‌ଭାବନ କରେ, ତାକୁ ଜୀବନ ଦାନକରେ ଏବଂ ଲାଳନ ପାଳନ କରି ବଢ଼ାଇ ରଖେ । ପ୍ରେମରୁ ଯେଉଁ ସୁଖ ଜାତ ହୁଏ-ତାହା ଅସ୍ଥାୟୀ । ଶୀଘ୍ର କ୍ଳାନ୍ତ ଓ ଜୀର୍ଣ୍ଣ ହୋଇପଡ଼େ । ମାତ୍ର ସୁଖରୁ ଯେଉଁ ପ୍ରେମ ଜାତହୁଏ, ତାହା

ପରିପୂର୍ଣ୍ଣ । ଏହାପ୍ରୀତି କେବଳ ଦୈହିକ ନୁହେଁ; ଏଥିରେ ପାରଲୌକିକର ସମ୍ପର୍କ ମଧ୍ୟ ଅଛି । ଦେହିକ ଲାଳସାର ଚରିତାର୍ଥ ପାଇଁ ମାନବ ଯଦି କେବଳ ଲକ୍ଷ୍ୟ ରଖନ୍ତା, ତେବେ ବଣର ପଶୁଠାରୁ ସେ ଆଉ ଅଧିକ କଣ ହୁଅନ୍ତା ? ମନୁଷ୍ୟ ଯେଉଁଦିନ ଅଧ୍ୟାତ୍ମ ଆନନ୍ଦର ସୁଖ ଅନୁଭବ କଲା, ସେହିଦିନରୁ ତ ସେ ବନ୍ୟପଶୁଠାରୁ ନିଜକୁ ଶ୍ରେଷ୍ଠ ବୋଲି ମନେକଲା । ଆଶା, ଆକାଂକ୍ଷା, ଅନ୍ତରର କ୍ଷୁଧା-ଏସବୁର ପୂର୍ଣ୍ଣ ନିବୃତ୍ତି ହେଉଛି—ଆଧ୍ୟାତ୍ମିକତାର ଅଂଶ । ମାତ୍ର ପ୍ରବୃତ୍ତି ତହିଁରେ ବାଦ ସାଧେ ; ସେ ନିବୃତ୍ତି ପଥରୁ ଅପସରି ଆସିବାକୁ ଉତ୍ସାହ ଦିଏ । ଶୟନେ, ସ୍ୱପନେ, ନିଦ୍ରା, ଜାଗରଣେ ସେ ମାନବକୁ କେତେ କଥା କହେ । ମନୁଷ୍ୟର ହାତଧରି ଲାଳସା ପଥକୁ ଟାଣିନିଏ, ମାତ୍ର ସେ କିଏ, କଣ ସେ ପ୍ରବୃତ୍ତି ତାହା କେହି ଜାଣନ୍ତି ନାହିଁ । ତେଣୁ ମୁଁ ସେହି ଆଧ୍ୟାତ୍ମ ଆନନ୍ଦ ଏବଂ ଈଶ୍ୱର ଧର୍ମରେ ନିଜକୁ ଉତ୍ସର୍ଗ କରିଛି । ତୁମକୁ ଅନୁରୋଧ କରୁଛି— ମୋତେ କ୍ଷମାକର, ଏବଂ ଭୁଲିଯାଅ । ମୁଁ ଆଉ ଯାଇ ତୁମର ଘରକରି ପାରିବନାହିଁ ।

ମୋହନ କହିଲା—ତାହାହେଲେ ତୁମପାଖରେ ମୋତେ ରହିବାକୁ ଅନୁମତି ଦିଅ । ମୁଁ ତୁମକୁ ଆଖି ଆଗରେ ରଖି ଜୀବନଟା ବିତାଇଦେଲେ ହୁଏତ ଆଚାର୍ଯ୍ୟଙ୍କ ଆଦେଶ ପାଳନ କରି ପାରିବ ? ଏଥିରେ କଣ ତୁମର ଆପତ୍ତି ଅଛି ?

ଲଳିତା ଦୀର୍ଘ ନିଶ୍ୱାସ ଛାଡ଼ି ଉତ୍ତର ଦେଲା—ଆପତ୍ତି କାହିଁକି ରହିବ ? ତୁମେ ଏଠାରେ ରହିପାର, ମାତ୍ର ପରିପୂର୍ଣ୍ଣ ସମର୍ପଣର ସୁଖ ପାଇବନାହିଁ, କି ପାଇବ ନାହିଁ—ପରିପୂର୍ଣ୍ଣ ଅଧିକାରର ଅହଙ୍କାର । ପାଖରେ ରହି କୋଟି କୋଟି ଯୋଜନ ବ୍ୟବଧାନରେ ଥିବାପରି ଅନୁଭବ କରିବ । ଏଥିରେ ବା କି ସାର୍ଥକତା ଅନୁଭବ କରିବ ? କେତେବେଳେ ହୁଏତ ଏଥିପାଇଁ ବିତୃଷ୍ଣା ମଧ୍ୟ ଆସିପାରେ । ସେତେବେଳେ ଆମ ଭିତରେ ଯେଉଁ ସ୍ୱର୍ଗୀୟ ପ୍ରେମର ଅଙ୍କୁରଟି ଜାତ ହୋଇଛି, ତାହାର ଅପମୃତ୍ୟୁ ଘଟିବା ଅସମ୍ଭବ ନୁହେଁ ।

--ତୁମର କ'ଣ ମୋ ଉପରେ ବିଶ୍ୱାସ ନାହିଁ ?

—ନାହିଁ କାହିଁକି, ବିଶ୍ୱାସ ଓ ଶ୍ରଦ୍ଧା ଦୁଇଟିଯାକ ଅଛି । ତାହାନଥିଲେ ମୁଁ ଆଜଯାଏ ବଞ୍ଚି ଥାଆନ୍ତି କିପରି ? ମାତ୍ର ମୋ ନିକଟରୁ ତୁମେ ଆଉ ଅଧିକ କିଛି ଆଶା କରନାହିଁ । ମୁଁ ତୁମର ସେହି ସବୁଜ ପୃଥିବୀ ଛାଡ଼ି ମୃତ, ଶୀତଳ, ସ୍ତବ୍ଧ ଓ ବିଶାଳତାର ଅନ୍ଧକାରକୁ ଚାଲିଆସିଛି—ଯେଉଁଠି ଆଲୋକ ନାହିଁ, ଅଛି—ପୁଞ୍ଜ ପୁଞ୍ଜ ଅନ୍ଧକାର ଏବଂ ତା ମଧ୍ୟରେ କ୍ଷୀଣ ଏକ ତାରକାର ଜ୍ୟୋତି । ତାକୁ ତୁମେ ବ୍ରହ୍ମକୁହ,

ଭଗବାନ କୁହ ବା ଆଉ ଯାହା କୁହ । ତୁମେ ସେ ଅନ୍ଧକାର ମଧ୍ୟକୁ ଆସିବା ପାଇଁ ଇଚ୍ଛା କରୁଛ କାହିଁକି ? ପର ଉପରେ ମାୟା ଦେଖାଇବାକୁ ଯାଇ ନିଜ ଉପରେ ନିର୍ଦ୍ଦୟ ହେବାର କୌଣସି ମହତ୍ୱ ନାହିଁ । ସମୟର ସଙ୍ଗେ ସଙ୍ଗେ ମୀତର ମାନଦଣ୍ଡ ମଧ୍ୟ କମି ଯାଉଛି । ଏଣୁ ଅପରକୁ ସନ୍ତୁଷ୍ଟ କରି ନିଜକୁ ଅକାରଣେ କ୍ଷୟ କରିବା ଅପେକ୍ଷା ନିଜକୁ ଆଗେ ସମ୍ପୂର୍ଣ୍ଣ ସାର୍ଥକ କରି ତୋଳିବା ମନୁଷ୍ୟର ଆଦିମତମ କୀର୍ତ୍ତି । ତେଣୁ ସର୍ବଶ୍ରେଷ୍ଠ ଏକ ଅତୀତ ଅପେକ୍ଷା ଭବିଷ୍ୟତ ବେଶୀ ମୂଲ୍ୟବାନ ।

ଲଳିତା ନୀରବ ହେଲା । ମୋହନ ନିର୍ବାକ୍ ଭାବରେ ସେହି ଅନ୍ଧକାରରେ ଚାହିଁ ରହିଲା ତା ଆଡ଼କୁ ।

କେତେସମୟ ବିତିଗଲା । ମହୋଦଧିର ଶୀତଳ ପବନ ସ୍ପର୍ଶରେ ଦୁହିଁଙ୍କର ତନ୍ଦ୍ରା ଭାଙ୍ଗିଗଲା । ଲଳିତା ନିଜ ବସିବା ସ୍ଥାନରୁ ଉଠୁ ଉଠୁ କହିଲା— ରାତି ବହୁତ ହୋଇଗଲାଣି । ଶୋଇବାକୁ ଯାଅ । କାଲି ସକାଳେ ସମୁଦ୍ର ସ୍ନାନରୁ ଫେରିଲେ ପୁଣି ସାକ୍ଷାତ ହେବ ।

କେବଳ ଗୋଟିଏ କଥା ମନେ ରଖିବ—କର୍ମ ଜୀବନହିଁ ଏକମାତ୍ର ଲୋଭନୀୟ ଜୀବନ ଏବଂ କର୍ମର କ୍ଷେତ୍ରହିଁ କର୍ମୀର ପୃଥିବୀ । ତା ମଧ୍ୟରେ ଗୋଟିଏ ମାତ୍ର ଶତ୍ରୁ ହେଉଛି—ପ୍ରଣୟର ଯନ୍ତ୍ରଣା । ସେ ମନୁଷ୍ୟକୁ ହସାଏ, କନ୍ଦାଏ, ଉଦ୍‌ବେଳିତ କରେ ଆନନ୍ଦରେ ; କେତେବେଳେ ବା ରୁଦ୍ଧକଣ୍ଠ ଆର୍ତ୍ତନାଦରେ ମୂର୍ଚ୍ଛିତ କରିଦିଏ । ତାକୁ ଛାଡ଼ିଦେଲେ ଆଉ ଯାହା ରହିଲା—ତାହା ହେଉଛି ପ୍ରଚଣ୍ଡ ପ୍ରାଣ ଓ ସଂଘାତିକ ଶକ୍ତି । ତହିଁରେ ବିଶ୍ରାମ ନାହିଁ—ଦୁରୂହ କର୍ମରେ ତାହା ସବୁବେଳେ କଠୋର । ମୁଁ ଚାହେଁ—ସେହି ମହିମାମୟ ଜୀବନ ।

ମୋହନ ବାକ୍‌ଶକ୍ତି ରହିତ ଭଳି ନିଜ ସ୍ଥାନରୁ ଉଠିଗଲା ।

ଚାହୁଁ ଚାହୁଁ ବସନ୍ତ ଋତୁ ଧରାପୃଷ୍ଠରୁ ଅପସରି ଗଲା । ଗ୍ରୀଷ୍ମ ଋତୁର ଆଗମନ ସଙ୍ଗେ ସଙ୍ଗେ ପ୍ରଚଣ୍ଡ ଦାବଦାହରେ ଅରଣ୍ୟ ପ୍ରଦେଶ ଶୋଷିତ ହେଲା । ବିକ୍ଷୁବ୍ଧ ଅଗ୍ନି ପ୍ରବଳ ପ୍ରଭଞ୍ଜନ ସ୍ପର୍ଶରେ ନବ ବିକଶିତ ପଳାଶ ପୁଷ୍ପ ସଦୃଶ ସିନ୍ଦୂର ବର୍ଣ୍ଣ

ଶୋଭାରେ ଶୋଭିତ ହେଲ । ତରୁଲତାର ଶୀର୍ଷଦେଶ ତାହାର ଆଲିଙ୍ଗନରେ ବିଦଗ୍ଧ । ଦୂର ଦିଗନ୍ତରୁ ପ୍ରଚଣ୍ଡ ବେଗରେ ପ୍ରବାହିତ ହେଲ—ଭସ୍ମାଚ୍ଛାଦିତ ବାୟୁ । କୋକିଳର ସ୍ୱର କ୍ଳାନ୍ତ ।

କୃଷ୍ଣା ଦୂର ବନଭୂମିଆଡ଼େ ଚାହିଁରହେ । ଦୃଷ୍ଟି ଉଦାସ । ରକ୍ତାମ୍ବର ପରିହିତା ନବବଧୂ ସଦୃଶ୍ୟ ପଳାଶ ବନରେ ସମାଚ୍ଛାଦିତ ଭୂମି ଏବଂ ରକ୍ତ ରୌଦ୍ରରେ ରଞ୍ଜିତ ଚୈତ୍ରର ସନ୍ଧ୍ୟାକାଶପରି ତାର ଉତପ୍ତ ଯୌବନର ମୋହ ସମସ୍ତ ଅନ୍ତର ଭରି ରହିଗଲ । ବେଳେ ବେଳେ ବୁକୁ ଥରାଇ ଧ୍ୱନିତ ହୁଏ ବେଦନା ଭରା ଭୈରବୀ ସ୍ୱର । ଯାହାର ଶବ୍ଦ ନାହିଁ, ଧ୍ୱନି ନାହିଁ—ଅଛି କେବଳ ତରଙ୍ଗ । ସମୁଦ୍ର ଲହରୀ ପରି ତାହା ବୁକୁ ଭିତରୁ ବାହାରିଆସେ । ନାକପୁଡ଼ା ଦୁଇଟି ଫୁଲିଉଠେ ।

ମନୁଷ୍ୟ ମନରେ ସେହି ଆଦିମକାଳରୁ କିଏ ଯେ ଉଚ୍ଚାଶାର ବୀଜ ବପନ କରିଥିଲ, ତାହା ତାକୁ ଜଣାନାହିଁ । ତଥାପି ସେ ଅନ୍ୟମାନଙ୍କ ପରି ତା ପଛରେ ଦଉଡ଼ି ଥିଲ ।

ସେହି ପ୍ରଥମ ଦର୍ଶନର ପ୍ରେମ । ଯାହାକି ସେତେବେଳେ ସେ ବୁଝି ପାରି-ନ ଥିଲ । ଭାବି ପାରି ନ ଥିଲ—ଏହା ଯନ୍ତ୍ରଣା କି ଆନନ୍ଦଦାୟକ ।

କୃଷ୍ଣା ସେଦିନ ମୃଗୟାରୁ ଫେରି ଆସିଥିଲ । ମାତ୍ର ତାର ଅକ୍ଷତ କୌମାର୍ଯ୍ୟର ପ୍ରତିଟି ରକ୍ତବିନ୍ଦୁ ଚଞ୍ଚଳିତ ହୋଇ ଉଠିଥିଲ । ମନର ଭାବ ଓ ଅନୁଭବ ଦେହର ଶିରା-ପ୍ରଶିରା, ଅନ୍ତ ତନ୍ତ୍ରର ଗୂଢ଼ କ୍ରିୟା କଳାପରେ ନିୟନ୍ତ୍ରିତ ହେବାକୁ ଲଗିଲ ।

ପ୍ରଥମ ଦୃଷ୍ଟି, ପ୍ରଥମ ସୁର ଏବଂ ପ୍ରଥମ ରଙ୍ଗରେ କୃଷ୍ଣା ଆଜି ଅସ୍ଥିର । ଯେତେ ଚେଷ୍ଟା କଲେ ମଧ୍ୟ ପୂର୍ବର ସେ ଜୀବନକୁ ଫେରି ହୁଏନାହିଁ । ସାମାନ୍ୟ ସ୍ପର୍ଶର ପ୍ରଭାବରେ ରକ୍ତ ମଧ୍ୟରେ ଯେ ଏପରି ଅଗ୍ନି ଧରିଯାଏ, ତାହା ସେତେବେଳେ ତାକୁ ଅଜ୍ଞାତ ଥିଲ ।

କୃଷ୍ଣା ଚାହିଁଥିଲ ମୋହନକୁ । ଗୃହହରା, ସର୍ବସ୍ୱ ତ୍ୟାଗୀ ଏକ ଚିତ୍ରକରକୁ । ତା ମଧ୍ୟରେ ସେ ଯେ କି ପ୍ରତିଭା ଦେଖିଥିଲ, ତାହା ତାକୁ ହିଁ ଜଣା । ଯାହାଫଳରେ ସେ ଇଚ୍ଛା କରିଥିଲ— ଗୋଟିଏ ପ୍ରାଣ ସହିତ ଆଉ ଗୋଟିଏ ପ୍ରାଣର ବନ୍ଧନ ଏବଂ ନୂତନ ଜୀବନର ପ୍ରତିଶ୍ରୁତି—କୁମାରୀର କାମନା ଉଚ୍ଛଳ କୁସୁମର ଗୋଟିଏ ଗୋଟିଏ ପାଖୁଡ଼ା ବିକଶିତ ହେବାର ସ୍ୱପ୍ନ ସମ୍ଭାବନା । ମୋହନର ହାତ ଧରି ସେ ବୁଲିବ—ଗ୍ରାମ, ଅରଣ୍ୟ, ପାହାଡ଼ରେ ଏବଂ ସମୁଦ୍ରର ବେଳା ଭୂମିରେ । ଅରଣ୍ୟରୁ ନେବ

ସବୁଜ ପ୍ରାଣ, ଗ୍ରାମରୁ ସରଳ ଓ ଅନାବିଲ ଜୀବନ, ପାହାଡ଼ରୁ ତୋଳି ନେବ ନାନା ରଙ୍ଗର ପଥର ଏବଂ ସମୁଦ୍ର ସୈକତରୁ ନେବ—କଉଡ଼ି, ଶିପ, ଶଙ୍ଖ ଓ ଶାମୁକା ।

ମାତ୍ର......

ଆଜି ପର୍ଯ୍ୟନ୍ତ ପଥଚଲି ହିଁ ସାର ହୋଇଛି । ଅନ୍ତହୀନ ପଥ ଅତିକ୍ରମ କରି, ଦୁର୍ବାର କାମନାର ବହ୍ନି ବୁକୁରେ ଜାଳି, ସେ କେବଳ ଅଗ୍ରସର ହୋଇଛି । ବର୍ତ୍ତମାନ ଗତି ଶିଥିଳ କଲେ ମୃତ୍ୟୁ, ଆଗରେ ଶୂନ୍ୟ ହା ହାକାର । ପଛକୁ ଫେରି ଚାହିଁଲେ ଅତୀତ ଜୀବନର କବନ୍ଧ ରୂପଟା ଗୋଡ଼ାଇ ଆସେ । ଚିନ୍ତାର କୀଟ ମସ୍ତିଷ୍କର କୋଷେ କୋଷେ ଦଂଶନ କରି ପାଗଳ କରିଦିଏ ।

କୃଷ୍ଣା ରାତିରେ ବସି ବସି ଅନନ୍ତ ନୀଳାକାଶକୁ ଚାହିଁ ରହସ୍ୟମୟୀ ପ୍ରକୃତିକୁ ଭାବେ ।

ତାର ହଜେଇଗିଟି ବସନ୍ତର ପ୍ରଥମ ପୁରୁଷ............

ଏକ ଦୁଃସହ ବ୍ୟଥାରେ ଥରି ଉଠେ—ସମସ୍ତ ଦେହ ଓ ମନ । ଅସୀମ ଶୂନ୍ୟତା ମଧ୍ୟରେ ପୂର୍ଣ୍ଣତାର ମିଥ୍ୟା ଛଳନା ନେଇ ଅପଚୟ ହୁଏ—ଯୌବନର ଦିନ, ଆବେଗର ଦିନ, ଆଶା, ଆଗ୍ରହ ଏବଂ ବ୍ୟାକୁଳତାର ଦିନ ।

ନିଶା ଅବସାନର ସୂଚନା ଦେଇ କୋକିଳଟିଏ ବ୍ୟଥା ଓ ଆତୁରର ସଂଗୀତ ଗାଇ ଉଠିଲା । ମଝିରେ ମଝିରେ ଭାସି ଆସିଲା— କାକର କର୍କଶ ସ୍ୱର ।

କୃଷ୍ଣା ବିଛଣାରୁ ଉଠି ଆସି ମୁହଁ ଧୋଇଲା । ନୂତନ ପରିବେଶରେ ଗଛ ପତ୍ରର ରୂପ ସୁନ୍ଦର ଦିଶୁଛି । ରାତ୍ରି ଧରିତ୍ରୀର ଆଲିଙ୍ଗନ ଛାଡ଼ି ଚାଲି ଯାଉଛି ଦୂରକୁ ।

କ୍ରମେ ପୂର୍ବ ଆକାଶରେ ପ୍ରଭାତର ଆଲୋକ ଫୁଟି ଉଠିଲା । ଦୁଇ ପାହାଡ଼ର ମଧ୍ୟ ଭାଗରେ ସୀମନ୍ତିନୀର ସିନ୍ଦୂର ବିନ୍ଦୁ ପରି ଲାଲ ଗୋଲକଟିଏ ଦୃଷ୍ଟିଗୋଚର ହେଲା ।

ଏହାପରେ ଆଉ ଗୋଟିଏ ନୂତନ ଦିବସ ଆରମ୍ଭ ହେବ । ମନରେ ନୂତନ କର୍ମପ୍ରେରଣା ଜାଗିବ । ନୂତନ ଭାବରେ ହୃଦୟ ଉଦ୍‌ବୁଦ୍ଧ ହେବ ।

କୃଷ୍ଣା ଦୁଇ ହାତ କପାଳରେ ଲଗାଇ ନୂତନ ଦିବସର ବନ୍ଦନା ଗାନ କଲା—

"ଅସତୋ ମା ସଦଗମୟ
ତମସୋ ମା ଜ୍ୟୋତିର୍ଗମୟ
ମୃତ୍ୟୋର୍ମାଽମୃତଂ ଗମୟ ।"

ମନର ଅନ୍ଧାର ଦୂର କରିଦିଅ ଠାକୁର । ତୁମ ପରି ସମସ୍ତ କିଛି ସ୍ପଷ୍ଟ ହେଉ । ମୃତ୍ୟୁର ଅନ୍ଧକାରରୁ ଆଲୋକକୁ ଆସିବା ପାଇଁ ପଥ ଦେଖାଅ ଦେବତା ।

ଆଜି ଝାମୁ ଯାତ୍ରା । କ୍ଷୁଦ୍ର ଅରଣ୍ୟଗଡ଼ ଅଭିସାରିକା ଭଳି ଅପରୂପ ସାଜରେ ସଜ୍ଜିତା । ମହାନଦୀକୂଳର ନମ୍ର ଓ ବଲ୍ଲ କାନନ ମଧ୍ୟରେ କ୍ଷୁଦ୍ର ମନ୍ଦିର । ତନ୍ମଧ୍ୟରେ କୃଷ୍ଣ ମୁଗୁନି ପ୍ରସ୍ତରରେ ଦୁର୍ଗାମୂର୍ତ୍ତି । ପ୍ରବାଦ ଅଛି— ପୂର୍ବେ ଡକାୟତମାନେ ଏଠାରେ ଦେବୀଙ୍କର ମୂର୍ତ୍ତି ସ୍ଥାପନା କରି ପୂଜା କରୁଥିଲେ । ଏହିଠାରୁ ସେମାନେ ନଦୀ ପଥରେ କ୍ଷୁଦ୍ର କ୍ଷୁଦ୍ର ନୌକାରେ ଯାଇ ବିଭିନ୍ନ ସ୍ଥାନରେ ଡକାୟତି କରୁଥିଲେ ଏବଂ କାର୍ଯ୍ୟରେ ସିଦ୍ଧି ଲାଭ ପାଇଁ ବର୍ଷକରେ ଥରେ ଏହିଦିନ ଦେବୀଙ୍କ ନିକଟରେ ନରବଳି ଅର୍ପଣ କରୁଥିଲେ । ଅରଣ୍ୟଗଡ଼ ନିର୍ମିତ ହେବା ଦିନରୁ ଡକାୟତମାନଙ୍କର ଉତ୍ପାତ ଲୋପ ପାଇଛି ଏବଂ ଦେବୀ ମଧ୍ୟ ନରବଳି ଲୋଭ ସମ୍ବରଣ କରି ଅରଣ୍ୟଗଡ ସର୍ଦ୍ଦାରଙ୍କର ଇଷ୍ଟଦେବୀରୂପେ ପୂଜିତା ହେଉଛନ୍ତି, ତଥାପି ଦେବୀଙ୍କର ରକ୍ତପିପାସା ଦୂରୀଭୂତ ହୋଇନାହିଁ । ତେଣୁ ଝାମୁ ଯାତ୍ରାଦିନ ଏଠାରେ ପୋଢ଼, ବୋଦା ଓ କୁକୁଡ଼ା ପ୍ରଭୃତି ବଳି ଦିଆଯାଏ ।

ଯାତ୍ରା ଉପଲକ୍ଷେ ପୂର୍ବ ରାତ୍ରରୁ ଶହ ଶହ ସଂଖ୍ୟାରେ ସନ୍ନ୍ୟାସୀ ଆସି ଉପସ୍ଥିତ ହୋଇଛନ୍ତି । ଭକ୍ତମାନେ ଅର୍ଘ୍ୟ ଧରି ସାଷ୍ଟାଙ୍ଗ ପ୍ରଣିପାତପୂର୍ବକ ଦେବୀଙ୍କ ନିକଟକୁ ଗମନ କରୁଛନ୍ତି । କେତେକ ବା ନିଜର ଅଭିଷ୍ଟ ବସ୍ତୁ ଲାଭ ପାଇଁ ଧାରଣା ପଡ଼ିଛନ୍ତି । ଜନ ସମାଗମର ବିରାମ ନାହିଁ । ଦେବୀଙ୍କ ଜୟ ଜୟ ନାଦରେ ଗଗନ ପବନ ମୁଖରିତ ।

କ୍ରମେ ସୂର୍ଯ୍ୟଦେବ ଆକାଶର ମଧ୍ୟ ଭାଗରେ ନିଜର କିରଣ ରାଶି ବିକୀରଣ କଲେ । ସହସ୍ର ସହସ୍ର ଘଣ୍ଟା ଓ ଢ଼କ୍କା ନିନାଦରେ ଦେବୀ ମନ୍ଦିର ମୁଖରିତ ହୋଇ ଉଠିଲା । ବେତ୍ର ହସ୍ତରେ ଭକ୍ତମାନେ ଦେବୀଙ୍କ ସଙ୍ଗୀତ ଗାନ କରି ଦଳ ଦଳ ହୋଇ ମହାନଦୀର ପୁଣ୍ୟ ସଲିଳରେ ଅବଗାହନ କଲେ । ଶ୍ମଶାନବାସୀ ସନ୍ନ୍ୟାସୀମାନେ କୃତ୍ରିମ ଭୂତ ବା ରାକ୍ଷସର ବେଶ ଧାରଣ କରି ନର କପାଳ ଓ ତ୍ରିଶୂଳ ହସ୍ତରେ ଉତ୍ସବ ସ୍ଥାନରେ ଘୂରି ବୁଲିଲେ । କେତେକ କଣ୍ଟକ ଶଯ୍ୟାରେ ଶୟନ କରି ଏବଂ ମସ୍ତକରେ ଅଗ୍ନି ସ୍ଥାପନ କରି ଦେବୀଙ୍କର ସ୍ତୋତ୍ରଗାନ କଲେ ।

କୃଷ୍ଣା ନିଜର ସହଚରୀମାନଙ୍କ ସହ କୃଷ୍ଣ ଅଶ୍ୱ ପୃଷ୍ଠରେ ଆରୋହଣ କରି ଯାତ୍ରା ଦେଖିବାକୁ ଆସିଲା । ନାରୀ ବାହିନୀ ସମସ୍ତେ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତା । କଟୀରେ

କରବାଳ, ପୃଷ୍ଠଦେଶରେ ଧନୁ ଓ ତୂଣ । ଶାଢ଼ୀର ଅଞ୍ଚଳ କମରରେ ଦୃଢ଼ଭାବରେ ନିବଦ୍ଧ ।

ସମସ୍ତେ ଅଶ୍ୱରୁ ଅବତରଣ କରି ଦେବୀ ମନ୍ଦିରକୁ ଗଲେ । ସେଠାରେ ଦର୍ଶନ ସାରି ପୁଣି ଯାତ୍ରା ମଧ୍ୟକୁ ଫେରି ଆସିଲେ ।

ମନ୍ଦିର ପ୍ରାଙ୍ଗଣରେ ରକ୍ତ ଓ ପୁଷ୍ପର ସମାବେଶ । ରୁଦ୍ର ଓ ସୁନ୍ଦରର ଅପୂର୍ବ ସମାବେଶ ।

ବଳି ପଶୁର କାତର ଆର୍ତ୍ତନାଦ ସହିତ ଅରଣ୍ୟ ନିବାସୀ ବଣ୍ୟଜାତି ମାନଙ୍କର ବଂଶୀ ଓ ଏକତାରାର ସ୍ୱର ମିଶି ସେ ଶୋଭାକୁ ଆହୁରି ଜୀବନ୍ତ କରି ତୋଳିଛି । ସ୍ଥାନେ ସ୍ଥାନେ ପାଇକମାନେ ଢାଲ, ତଲୱାର ଏବଂ ଲଠି ଧରି ଖେଳରେ ନିମଜ୍ଜିତ ହୋଇଛନ୍ତି । କୃଷ୍ଣା ନିଜର ସହଚରୀମାନଙ୍କ ସହ ବିଭିନ୍ନ ସ୍ଥାନରେ ବୁଲି ଏ ସମସ୍ତ ଦୃଶ୍ୟ ଉପଭୋଗ କରିବାରେ ଲାଗିଛି ।

ଦିବସର ତୃତୀୟ ପ୍ରହର ଉତ୍ତୀର୍ଣ୍ଣ ପ୍ରାୟ । ହଠାତ୍ ଅଦୂରରୁ ଶବ୍ଦ ଶୁଭିଲା— ଆଲ୍ଲା-ହୋ-ଆକବର । ମୁହୂର୍ତ୍ତିକରେ ଉପସ୍ଥିତ ଜନତା ଛତ୍ରଭଙ୍ଗ ହୋଇ କିଏ କେଉଁଆଡ଼େ ପଳାଇଗଲେ ।

ଇତିହାସର ଅଧିଷ୍ଠାତ୍ରୀ ଦେବତା ଜ୍ଞାନ । ପୂଜକ ତାର ରାଜନୈତିକ ନେତୃତ୍ୱ, ପୁରୋହିତ କୂଟବୁଦ୍ଧି ଏବଂ ସାହସ ଓ ବୀରତ୍ୱ ତାର ପୂଜାବେଦୀ । ଯୁଗର ଉତ୍ଥାନ ପତନ ସଙ୍ଗେ ସଙ୍ଗେ ଇତିହାସର ମଧ୍ୟ ପୁନରାବୃତ୍ତି ଘଟିଛି । କେତେ ରାଜା ରାଜ୍ୟଚ୍ୟୁତ ହୋଇଛନ୍ତି, କେତେ ସାମ୍ରାଜ୍ୟ ଧ୍ୱଂସ ହୋଇଛି । ପୁଣି ତହିଁରୁ ମୁଣ୍ଡଟେକି ଉଠିଛି ଆଉ ଏକ ନେତୃତ୍ୱ । ରାଜ ରାଜେଶ୍ୱର ପଥର ଭିକାରୀ ସାଜିଛି, ପୁଣି ଦୀନ ଦରିଦ୍ର ରାଜଲକ୍ଷ୍ମୀଙ୍କ କୋଳରେ ବର୍ଦ୍ଧିତ ହୋଇଛି । ମାତ୍ର ସମୟରେ ପୁଣି କୂଟବୁଦ୍ଧିରୁ ଜାତ ହୋଇଛି ନୀଚତା, ପ୍ରଲୋଭନ ଏବଂ ଷଡ଼ଯନ୍ତ୍ର । ଫଳରେ ପରିବର୍ତ୍ତିତ ହୋଇଛି ଇତିହାସର ରୂପ । ତାର ପୂଜାବେଦୀରେ ଶୋଭା ପାଇଛି-ବିଶ୍ୱାସ ଘାତକତା ଏବଂ ହତ୍ୟାର ବିଭୀଷିକା ।

୧୫୬୭ ଖ୍ରୀଷ୍ଟାବ୍ଦରେ ମୁକୁନ୍ଦଦେବ ସୁଲେମାନ କରାଣୀଙ୍କ ଓଡ଼ିଶା ଆକ୍ରମଣ

ଆଶଙ୍କାକରି ସୈନ୍ୟସହ ଯାଇ ଉତ୍କଳର ଉତ୍ତରସୀମା ହୁଗୁଳି ନଦୀ ତୀରରେ ଅବସ୍ଥାନ କଲେ । ସୁଲେମାନ କରାଣୀ ଭୟରେ ଆକବରଙ୍କ ସହ ସନ୍ଧି କରିବାକୁ ବାଧ୍ୟ ହେଲେ । ଆକବର ଏଥର ନିଶ୍ଚିନ୍ତ ହୋଇ ଚିତୋର ବିଜୟରେ ମାତିଲେ । ମାତ୍ର ତାର କୁଫଳ ଭୋଗକଲେ ମୁକୁନ୍ଦଦେବ ।

ଏଥିପୂର୍ବରୁ ରଘୁ ଭଞ୍ଜଙ୍କୁ ସାହାଯ୍ୟ କରିବାକୁ ଯାଇ ବଙ୍ଗ ମୁସଲମାନ-ମାନଙ୍କର ମୁକୁନ୍ଦଦେବଙ୍କଠାରୁ ପରାଜୟ ଏବଂ ଇବ୍ରାହିମଙ୍କୁ ଆଶ୍ରୟ ଦେବାଦ୍ୱାରା ସୁଲେମାନ କରାଣୀ ଅପମାନିତ ହୋଇଥିଲେ । ବର୍ତ୍ତମାନ ମୁକୁନ୍ଦଦେବ ବଙ୍ଗ ଆକ୍ର-ମଣରେ କ୍ରୋଧାନ୍ୱିତ ହୋଇ ସେ ଓଡ଼ିଶା ଆକ୍ରମଣ ପାଇଁ ଗୋପନରେ ମନ୍ତ୍ରଣା କଲେ ।

ବଙ୍ଗ ନବାବଙ୍କଠାରୁ କୌଣସି ପ୍ରତିରୋଧର ଉଦ୍‌ଯୋଗ ନ ଦେଖି ଉତ୍କଳ-ବାହିନୀ ତ୍ରିବେଣୀ ତୀରରେ ଆମୋଦ ପ୍ରମୋଦରେ ମତ୍ତହେଲେ । ଏତିକବେଳେ ମୁକୁନ୍ଦଦେବଙ୍କର ମନେ ପଡ଼ିଲା—ମାଆଙ୍କ କଥା । ପବିତ୍ର ଜାହ୍ନବୀର ଗୋଟିଏ ଧାର ଆଣି ସେ ଉତ୍କଳ ଜାହ୍ନବୀରେ ମିଶ୍ରଣ କରିବା ପାଇଁ ଭଗୀରଥଙ୍କ ପରି ତ୍ରିବେଣୀ ତୀରରେ ଧ୍ୟାନମଗ୍ନ ହେଲେ ।

ସାରଙ୍ଗଗଡ଼ର ରାଜା ରାମଚନ୍ଦ୍ର ଭଞ୍ଜ ମୁକୁନ୍ଦଦେବଙ୍କୁ ହତ୍ୟାକରି ନିଜେ ଉତ୍କଳର ଗଜପତି ହେବାକୁ ଇଚ୍ଛା କରୁଥିଲେ । ବର୍ତ୍ତମାନ ତାଙ୍କୁ ସୁଯୋଗ ମିଳିଲା ସେ ଶିଖି ଓ ମନାଇ ନାମକ ଦୁଇଜଣ ଦୂତଙ୍କୁ ସୁଲେମାନ କରାଣୀଙ୍କ ନିକଟକୁ ପଠାଇ ଦେଲେ ଏବଂ ନିଜେ ବିଦ୍ରୋହ କରି ବାରବାଟୀ ଆକ୍ରମଣ କଲେ । ରାଣୀ ଦୁର୍ଗଦ୍ୱାର ବନ୍ଦ କରି ଯୁଦ୍ଧ ପରିଚାଳନା କଲେ ।

ମୁକୁନ୍ଦଦେବ ଏ ସମ୍ବାଦ ପାଇ ଉତ୍କଳକୁ ଫେରି ଆସିବାକୁ ମନସ୍ଥ କଲେ । ମାତ୍ର ସୁଲେମାନ କରାଣୀ ତାଙ୍କର ଗତିରୋଧ କଲେ । ଉଭୟଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ମୁସଲମାନ ସେନା ବାରମ୍ବାର ପରାଜିତ ହେଲେ ମଧ୍ୟ ନୂତନ ଭାବରେ ଯୁଦ୍ଧ କରିବାରେ ଲାଗିଲେ । ଶେଷରେ ମୁକୁନ୍ଦଦେବ ବାଧ୍ୟ ହୋଇ କୋଟସମା ଦୁର୍ଗରେ ଆଶ୍ରୟ ନେଲେ ।

ସୁଲେମାନ କରାଣୀଙ୍କ ପୁତ୍ର ବାଇଜିଦ୍‌ଙ୍କ ନେତୃତ୍ୱରେ ଆଉ ଗୋଟିଏ ଦଳ ଶିଖି ମନାଇଙ୍କ ସହ ମୟୂରଭଞ୍ଜର ଜଙ୍ଗଲ ମଧ୍ୟଦେଇ ବାରବାଟୀ ଆଡ଼କୁ ଅଗ୍ରସର ହେଲେ । ଦଳଟି ଆସି ପ୍ରଥମେ ଅରଣ୍ୟଗଡ଼ରେ ଉପସ୍ଥିତ ହେଲେ ।

ଅରଣ୍ୟଗଡ଼ରେ ମନ୍ତ୍ରଣା ସଭା ବସିଛି । କାହାରି ମନରେ ସୁଖ ନାହିଁ । ରାଜା ଦୂରଦେଶରେ । ଶତ୍ରୁ ଦ୍ୱାରରେ । ଏଣେ ଦେଶ ମଧ୍ୟରେ ବିଦ୍ରୋହ । ସମଗ୍ର ଉତ୍କଳ ଏକ ଅଗ୍ନି ସ୍ତୁପରେ ପରିଣତ ହୋଇଛି । ଏତିକିବେଳେ କଣ କରାଯିବ ସେ ସମ୍ପର୍କରେ ପରାମର୍ଶ ଚାଲିଛି ।

ବଣ ଜଙ୍ଗଲର ଜବାନ, ଜୋତଦାର, ତାଲୁକଦାର, ସର୍ଦ୍ଦାର, ପାଇକ ଏକତ୍ରିତ ହେଲେ ।

ସର୍ଦ୍ଦାର ବିଶ୍ୱନାଥ ସୈନିକମାନଙ୍କୁ ପ୍ରବୋଧନା ଦେଇ କହିଲେ—ଆଜିର ରଣ ଯାଗରେ ଆମକୁ ଆହୁତି ଦେବାକୁ ପଡ଼ିବ । ଉତ୍କଳର ସିଂହାସନ ଘୋର ବିପଦର ସମ୍ମୁଖୀନ । ଉତ୍ତର ଦକ୍ଷିଣ ଓ ପଶ୍ଚିମ ତିନିଦିଗରେ ଶତ୍ରୁ । ଆଗରେ ବିଶାଳ ପଠାଣ ବାହିନୀ । ଆମର ଶକ୍ତି କ୍ଷୀଣ; ତଥାପି ଅଗ୍ରସର ହେବାକୁ ପଡ଼ିବ । ଭଗବାନ ଶଙ୍କରହିଁ ଆମ୍ଭମାନଙ୍କର ଏକମାତ୍ର ସହାୟ । ତାଙ୍କର ଚଞ୍ଚଳ ପଦବିକ୍ଷେପରେ ଅଶିବ, ଅସୁନ୍ଦର, ସମସ୍ତ କିଛି ଚୂର୍ଣ୍ଣ ହେଉ । ଦିଗ ଦିଗନ୍ତରେ ଜଟା ଖୋଲି ପଡ଼ୁ । ହାତର ତ୍ରିଶୂଳ ସୂର୍ଯ୍ୟ କିରଣରେ ଜଳିଉଠୁ; ଡମ୍ବରୁର ତାଳେ ତାଳେ ଭୀଷଣ ନର୍ତ୍ତନ ହେଉ । ଆରମ୍ଭ ହେଉ—ନଟରାଜଙ୍କ ଧ୍ୱଂସଲୀଳା—

'ଜୟ ହର ହର ଶଙ୍କର' ।

ଉପସ୍ଥିତ ବୀରମାନେ କଟୀସ୍ଥିତ କରବାଳରେ ହସ୍ତ ନିକ୍ଷେପ କରି ସମସ୍ୱରରେ କହି ଉଠିଲେ—'ଜୟ ହର ହର ଶଙ୍କର' ।

ସର୍ଦ୍ଦାର ପୁଣି କହିଲେ—ବୀରଗଣ ଆଜି ଏକ ପରମ ପରୀକ୍ଷାର ବେଳ ଆସି ପହଞ୍ଚିଛି । ଉତ୍କଳର ଯେଉଁ ସିଂହାସନ ପ୍ରତି ଆମ୍ଭେମାନେ ଏତେଦିନଯାଏ ଆନୁଗତ୍ୟ ଦେଖାଇ ଆସିଛନ୍ତି, ସେ ଆଜି ଶତ୍ରୁର ବ୍ୟୁହରେ । ଆମ୍ଭେମାନେ କଣ ନିଶ୍ଚିନ୍ତ ରହିବା ?

ଜଣେ କିଏ ମୃଦୁ ସ୍ୱରରେ ପ୍ରତିବାଦକଲା—ଆମର ଏ କ୍ଷୀଣଶକ୍ତିରେ ପ୍ରତିରୋଧ କରିବା କ'ଣ ଉଚିତ ହେବ ?

ବୃଦ୍ଧ ସର୍ଦ୍ଦାର ଦର୍ପିତ ସ୍ୱରରେ ଉତ୍ତର ଦେଲେ—ନିଶ୍ଚୟ ପାରିବା । ଆମ୍ଭମାନଙ୍କର ଶକ୍ତି କ୍ଷୀଣ ହେଲେମଧ୍ୟ ମନର ବଳ କମ ନୁହେଁ । ଆମ୍ଭେମାନେ କ୍ଷତ୍ରୀୟ । ମନେରଖ—କ୍ଷତ୍ରୀୟ କେବେ ଭୟରେ ମୁଣ୍ଡ ନୁଆଁଏ ନାହିଁ । ତାର ଧର୍ମ ଓ ଇଜ୍ଜତ ସବୁଠାରୁ ବଡ଼ । ତାର ଧର୍ମ ହେଉଛି—ଦେବତାକୁ ପ୍ରଣାମ, ଦେବ ବିଗ୍ରହ ଓ

ଗୋ-ବ୍ରାହ୍ମଣଙ୍କ ରକ୍ଷା, ବିପନ୍ନଙ୍କ ଉଦ୍ଧାର ଏବଂ ତାହାଙ୍କ ପ୍ରତି ଅତ୍ୟାଚାର ନ କରିବା । ଉକ୍ତ ହେଉଛି—ଧର୍ମର ଆଭରଣ । ଦେଶର ସ୍ୱାଧୀନତା ତଥା ନିଜର ସ୍ୱାଧୀନତା ହେଉଛି ମର୍ଯ୍ୟାଦା; ନିଜ ସ୍ତ୍ରୀର ସତୀତ୍ୱ ହେଉଛି ମର୍ଯ୍ୟାଦା । କେବଳ ସ୍ତ୍ରୀ ନୁହେଁ, ନାରୀ ଜାତି ପ୍ରତି ସମ୍ମାନ ପ୍ରଦର୍ଶନ ହେଉଛି ତାର ମର୍ଯ୍ୟାଦା । ତାକୁ ପ୍ରାଣ ଦେଇ ରକ୍ଷା କରିବା ତାର ଧର୍ମ ।

"ଜିତେନ ଲଭ୍ୟତେ ଲକ୍ଷ୍ମୀର୍ମୃତେନାପି ସୁରାଙ୍ଗନା
କ୍ଷଣବିଧ୍ୱଂସିନୀ କାୟେ କା ଚିନ୍ତା ମରଣେ ରଣେ"

ଠିକ୍ ସେତିକିବେଳେ ମଧ୍ୟ କୃଷ୍ଣା ନିଜର ନାରୀ ବାହିନୀ ସହିତ ଯୁଦ୍ଧ ବିଷୟରେ ମନ୍ତ୍ରଣା କରୁଥିଲେ । ଜଣେ ପ୍ରଶ୍ନ କଲା—ଏ ଭଳି ଦୁଃସାହସ କରିବା କଣ ଠିକ ହେବ କୁମାରୀ ?

କୃଷ୍ଣା ଉତ୍ତର ଦେଲେ—ସାହସୀ ହେବାକୁ ଚେଷ୍ଟାକର । ମନର ଦୁର୍ବଳତାହିଁ ପାପ ? ପାହାଡ଼ର ଚୂଡ଼ା ଯେତେବେଳେ ଭାଙ୍ଗିପଡେ, ଆଗ୍ନେୟଗିରିରୁ ଯେତେ-ବେଳେ ଲାଭା ଉତ୍କ୍ଷିପ୍ତ ହୁଏ । ପ୍ରବଳ ବନ୍ୟା ଯେତେବେଳେ ବନ୍ଧ ଭାଙ୍ଗେ, ସେତେ-ବେଳେ ତାକୁ ଅଟକାଇ ରଖାଯାଇ ପାରେନାହିଁ । ତାହା ଜାଣି ମଧ୍ୟ କେହିକେ ଖାଉଁଣ ବା କାଠର ଠେକଦେଇ ଭଙ୍ଗା ପାହାଡ଼ ଅଟକାଇ ରଖିବାକୁ ଚେଷ୍ଟା କରନ୍ତି । ଆଗ୍ନେୟଗିରିରେ ଜଳ ଢାଳି ଲିଭାଇବାକୁ ଯାଆନ୍ତି ଏବଂ ମାଟି ପକାଇ ବନ୍ୟାକୁ ଅଟକାଇ ରଖିବାକୁ ଚେଷ୍ଟା କରନ୍ତି; କାରଣ ସେମାନେ ପୁରୁଷାକାରର ଉପାସକ । ଆମ୍ଭମାନଙ୍କୁ ମଧ୍ୟ ସେହିପରି ଅଗ୍ରସର ହେବାକୁ ପଡିବ ।

ଦେଖ, ବିଦେଶୀ ଆକ୍ରମଣକାରୀ ମନ୍ଦିର ପରେ ମନ୍ଦିର ଧୂଳିସାତ କରି ଦେଇ ଯାଇଛନ୍ତି । କିନ୍ତୁ ଗୋଟିଏ ଗୋଟିଏ ଉତ୍ପାତର ଝଡ଼ କମିବାମାତ୍ରେ ନୂତନ ମନ୍ଦିରର ଚୂଡ଼ା ଆକାଶକୁ ମୁଣ୍ଡ ଟେକୁଛି । ଯେତେଥର ବିଧ୍ୱସ୍ତ ହୋଇଛି, ସେତେଥର ଯୌବନର ତେଜ ଓ ବଳବୀର୍ଯ୍ୟ ନେଇ ଠିଆ ହୋଇଛି । ଏହାହିଁ ଜାତିର ଜୀବନ ସ୍ରୋତର ପ୍ରକୃତ ପରିଚୟ । ଏହି ସ୍ରୋତରେ ଆମ୍ଭମାନଙ୍କୁ ଭାସିଚିବାକୁ ହେବ । ନାରୀର ସତୀତ୍ୱ ହେଉଛି—ସର୍ବଶ୍ରେଷ୍ଠ ଧର୍ମ । ତାକୁ ରକ୍ଷା କରିବାପାଇଁ ସେ ଜହର ବ୍ରତ ପାଳନ କରେ ପଛେ, ଅନ୍ୟର ସ୍ପର୍ଶ ସହ୍ୟ କରି ପାରେନାହିଁ । ମାତ୍ର ଆମ୍ଭମାନଙ୍କୁ ରଣଯାଗରେ ଆହୂତି ଦେବାକୁ ସୁଯୋଗ ମିଳିଛି । ଆମ୍ଭେମାନେ ସମସ୍ତେ ବୀରରମଣୀ । ଅସ୍ତ୍ର ଶସ୍ତ୍ର ଚାଳନାରେ ନିପୁଣା । ମୁସଲମାନମାନଙ୍କ ଦ୍ୱାରା ଧର୍ଷିତା

ହେବା ଭୟରେ ଆମ୍ଭେମାନେ ଜହ୍ନରବତ ପାଳନ କରିବା ଅପେକ୍ଷା ରଣଯଜ୍ଞରେ ଝାସ ନଦେବା କାହିଁକି ? ଇଷ୍ଟଦେବୀ ଚଣ୍ଡୀ କାହିଁ ଆମ୍ଭମାନଙ୍କର ଏକମାତ୍ର ସହାୟ । ସେ ଯେପରି ମହିଷାସୁରକୁ ଉତ୍ତର ଦେଇଥିଲେ; ଆମ୍ଭେମାନେ ସେହିପରି ଦର୍ପିତ କଣ୍ଠରେ କହିବା—

"ଯୋ ମାଂ ଜୟତି ସଂଗ୍ରାମେ, ଯୋ ମେ ଦର୍ପଂ ବ୍ୟପୋହତି
ଯୋ ମେ ପ୍ରତିବଳେଲୋକେ ସ ମେ ଭର୍ତ୍ତା ଭବିଷ୍ୟତି



ରାଜନୀତି ନିର୍ମ୍ମମ ଓ ନିଷ୍ଠୁର । ସେଠାରେ ଭାଇ ନାହିଁ, ବନ୍ଧୁ ନାହିଁ, ପିତା, ମାତା, ସ୍ତ୍ରୀ, ପୁତ୍ର କାହାର ସ୍ଥାନ ନାହିଁ । ରାଜନୀତିର ପ୍ରୟୋଜନ ନିକଟରେ ଅନ୍ୟ କୌଣସି ପ୍ରୟୋଜନ ଏକାନ୍ତ ତୁଚ୍ଛ । ମୁକୁନ୍ଦଦେବଙ୍କ ଜୀବନରେ ଏହାହିଁ ପ୍ରମାଣିତ ହେଲା ।

ମୁକୁନ୍ଦଦେବଙ୍କ ସହିତ ସୁଲେମାନ କରାଣୀଙ୍କର ଯୁଦ୍ଧ ଲାଗିଥିବାବେଳେ ଆକବରଙ୍କର ପ୍ରତିନିଧି ରୂପେ ମୁନିମଖାଁ ବିହାରର ଶାସନକର୍ତ୍ତା ଥିଲେ । ପୂର୍ବ ସନ୍ଧିର ସର୍ତ୍ତ ଅନୁସାରେ ମୁକୁନ୍ଦଦେବ ତାଙ୍କର ସାହାଯ୍ୟ ପ୍ରାର୍ଥନା କରି ଦୂତ ପଠାଇଲେ । ଦୂତ ଫେରି ଆସିଲା । ମୁନିମଖାଁ ଆକବରଙ୍କ ବିନାନୁମତିରେ ସାହାଯ୍ୟ ଦେବାକୁ ଅସ୍ୱୀକୃତ ହେଲେ ।

'ବୀରଭୋଗ୍ୟା ବସୁନ୍ଧରା' ନୀତି ପରିବର୍ତ୍ତିତ ହୋଇ ନୀଚ ସ୍ୱାର୍ଥପରତା କୂଟନୀତି ଏବଂ ହୀନଷଡ଼ଯନ୍ତ୍ର ଇତିହାସର ବକ୍ଷ ମନ୍ଥନ କଲା—ଲୋଭ, ଘୃଣା, ଓ ବିଦ୍ୱେଷ ଯାହାର ମୂଳଧନ ଏବଂ ହତ୍ୟା ଓ ବିଶ୍ୱାସଘାତକତା ଯାହାର ଧର୍ମ । ଫଳରେ ମନୁଷ୍ୟତ୍ୱ ଓ ନ୍ୟାୟବିଚାରର ସମାଧି ଲାଭକଲା

ଆକବରଙ୍କ ରାଜ୍ୟ ଲାଭ ଲିପ୍ସା ବିନା ପରିଶ୍ରମରେ ସାର୍ଥକ ହେଲା । ପ୍ରବଳ ପରାକ୍ରାନ୍ତ ବଙ୍ଗ ଓ ଉତ୍କଳର ଶକ୍ତି ପରସ୍ପର ବିବାଦରେ କ୍ଷୀଣ ହେବାକୁ ଲାଗିଲେ ।

ମୁକୁନ୍ଦଦେବ ପରିଶେଷରେ ଅନ୍ୟ ଉପାୟ ନ ଦେଖି ବଙ୍ଗ ନବାବଙ୍କ ସହିତ ସନ୍ଧି କରିବାକୁ ବାଧ୍ୟ ହେଲେ । ଯୁଦ୍ଧ ସ୍ଥଗିତ ହେଲା । ମୁକୁନ୍ଦଦେବ ଏଥର ରାମଚନ୍ଦ୍ରଭଞ୍ଜଙ୍କୁ ଉଚିତ ଶିକ୍ଷା ଦେବା ପାଇଁ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ ।

କ୍ଷୁଦ୍ର ଅରଣ୍ୟଗଡ଼ ଦୁର୍ଗରେ ଯୁଦ୍ଧର ବିଭୀଷିକା ବେଲକୁବେଲ ପ୍ରବଳ ଆକାର ଧାରଣ କଲା । ରକ୍ତର ସ୍ରୋତ ଯୁଦ୍ଧଭୂମିରେ ବହି ଚାଲିଲା । କୃଷ୍ଣା ନିଜର ନାରୀ-ବାହିନୀ ସହିତ ଯୁଦ୍ଧଭୂମିରେ ଉପସ୍ଥିତ ହୋଇ ଯୁଦ୍ଧ ପରିଚାଳନା କଲା ।

ମୁକ୍ତକୁନ୍ତଳା ନାରୀବାହିନୀର ଅପୂର୍ବ ଉତ୍ସାହ ଏବଂ ବୀରତ୍ୱ ଦେଖି ଯବନ-ବାହିନୀ ପ୍ରମାଦ ଗଣିଲେ ।

ସମୟେ ସମୟେ ଏପରି ଗୋଟିଏ ଗୋଟିଏ ଘଟଣା ଘଟେ, ଯାହା ସମ୍ପୂର୍ଣ୍ଣ-ରୂପେ ଅକଳ୍ପନୀୟ । ସେତେବେଳେ ମନୁଷ୍ୟ ନିଜର ସମସ୍ତ ପୌରୁଷ ଓ ସାହସ ହରାଇ ଦୈବହସ୍ତରେ ନିଜକୁ ସମର୍ପ ଦେବାକୁ ବାଧ୍ୟ ହୁଏ ।

ଅରଣ୍ୟଗଡ଼ରେ ଯୁଦ୍ଧ ଚାଲିଥିବାବେଳେ ହଠାତ୍ ସାରଙ୍ଗଗଡ଼ରୁ ଦଳେ ସୈନ୍ୟ ଆସି ପଶ୍ଚାତ୍‌ଭାଗରୁ ଅରଣ୍ୟଗଡ଼ର ସୈନ୍ୟମାନଙ୍କୁ ଆକ୍ରମଣ କଲେ । ମୁସଲମାନମାନଙ୍କର 'ଅଲ୍ଲା-ହୋ-ଆକବର' ଏବଂ ହିନ୍ଦୁମାନଙ୍କର 'ହର ହର ଶଙ୍କର' ଶବ୍ଦରେ ଅରଣ୍ୟଗଡ଼ର ସୈନ୍ୟବାହିନୀ ସ୍ତବ୍ଧ ହୋଇଗଲେ ।

ଆଉ ବିଜୟର ଆଶା ନାହିଁ । ହୁଏତ ଆତ୍ମସମର୍ପଣ, ନଚେତ୍ ମୃତ୍ୟୁ ।

କୃଷ୍ଣା ନିଜର ଏକାନ୍ତ ବିଶ୍ୱାସୀ ସହଚରୀ ନିକଟକୁ ଯାଇ କହିଲା—ପ୍ରିୟା ! ବର୍ତ୍ତମାନ ଶେଷ ସମୟ ଉପସ୍ଥିତ । ଆଉ ବଞ୍ଚିବାର ଆଶା ନାହିଁ । ଜୀବନରେ ତୁ ମୋର ବହୁତ ଉପକାର କରିଛୁ । ଆଉ ଗୋଟିଏ କାମ ତୋତେ କରିବାକୁ ହେବ ।

ପ୍ରିୟା ବିସ୍ମିତା ହୋଇ ତା ମୁହଁକୁ ଚାହିଁ ରହିଲା ।

କୃଷ୍ଣା କହିଲା— ଜୀବନରେ ଥରେ ଜଣକୁ ଭଲ ପାଇଥିଲି । ସେ ଜଣେ ଚିତ୍ରକର । ନାମ ତାଙ୍କର ମୋହନ କୁମାର । ସେହି ମୋ ଜୀବନର ପ୍ରଥମ ପୁରୁଷ— ଯାହାକୁ ମୁଁ ସ୍ପର୍ଶ କରିଥିଲି । ସେ ସ୍ପର୍ଶର ଅନୁଭୂତି ଆଜି ମଧ୍ୟ ଭୁଲି ପାରି ନାହିଁ ।

ସେଦିନ ନଗ୍ରଜ ପାହାଡ଼ ନିକଟରେ ତାଙ୍କର ମୋର ପ୍ରଥମ ସାକ୍ଷାତ ହୋଇ-ଥିଲା । ସେହି ପ୍ରଥମ ଦର୍ଶନରେ ମୁଁ ନିଜକୁ ଭୁଲି ଯାଇଥିଲି ଏବଂ ତାଙ୍କୁ ଅରଣ୍ୟଗଡ଼କୁ ଆସିବା ପାଇଁ ନିମନ୍ତ୍ରଣ କରିଥିଲି । ସେ ମୋର ନିମନ୍ତ୍ରଣ ରକ୍ଷା କରିବେ କି ନାହିଁ ଜାଣେ ନାହିଁ, ତଥାପି ତାଙ୍କୁ ସମ୍ବାଦ ଦେବାକୁ ହେବ । ମୋର ହୋଇ ତୁ ତାଙ୍କୁ କହିବୁ— ଥରେ ମାତ୍ର ଦର୍ଶନ କରି ଯେଉଁ ନାରୀ ତୁମକୁ ଭଲ ପାଇଥିଲା—ସେ ଆଉ ଇହଲୋକରେ ନାହିଁ ।

କୃଷ୍ଣାର କଣ୍ଠ ବାଷ୍ପରୁଦ୍ଧ ହୋଇଗଲା । କେତେ ସମୟ ପରେ ସେ ନିଜକୁ

ସଂଯତ କରି କହିଲା—ଯା, ଏହି ମୁହୂର୍ତ୍ତରେ ଯୁଦ୍ଧକ୍ଷେତ୍ରରୁ ପଳାଇ ଯା’। ଆଉ ବିଳମ୍ବ କଲେ ଯିବା କଷ୍ଟକର ହେବ । ମୋ ପାଇଁ ତୋତେ ବଞ୍ଚିରହି ଏ ସମ୍ବାଦ ଦେବାକୁ ହେବ । ଏତିକ ମୋର ଅନୁରୋଧ...ବିଦାୟ...... ।

କୃଷ୍ଣା ମୁହୂର୍ତ୍ତକ ମଧ୍ୟରେ ସୈନ୍ୟଗହଳରେ ଲୁଚିଗଲା । ପ୍ରିୟା ଛଳଛଳ ନେତ୍ରରେ ଅଶ୍ୱ ଆରୋହଣ କରି ଯୁଦ୍ଧକ୍ଷେତ୍ରରୁ ବିଦାୟ ନେଲା ।



ମୁକୁନ୍ଦଦେବ ଫେରିଆସିଲେ ଉତ୍କଳକୁ । ମାତ୍ର ବୈତରଣୀକୂଳର ଗୋହିରୀ-ଟିକିରୀଠାରେ ତାଙ୍କର ଗତିରୋଧ ହେଲା । ରାମଚନ୍ଦ୍ରଭଞ୍ଜ ସେଠାରେ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋ’ଇ ରହିଥିଲେ ।

ଦ୍ୱାରଦେଶରେ ବହିଃଶତ୍ରୁଙ୍କୁ ବସାଇ ଉତ୍କଳୀୟ ସୈନ୍ୟମାନେ ନିଜ ନିଜ ମଧ୍ୟରେ ଯୁଦ୍ଧରେ ବ୍ୟାପୃତ ହେଲେ । ଯୁଦ୍ଧ ଚାଲିଥିବାବେଳେ ଦିନେ ରାତ୍ରରେ ମୁକୁନ୍ଦଦେବ ଗୁପ୍ତଘାତକଦ୍ୱାରା ନିହତ ହେଲେ । ଏହାପରେ ରାମଚନ୍ଦ୍ରଭଞ୍ଜ ବାରବାଟୀ ଆକ୍ରମଣ କଲେ । ମାତ୍ର ସୁଲେମାନଙ୍କ ସହିତ ମୁକୁନ୍ଦଦେବଙ୍କର ପୂର୍ବ ସନ୍ଧି-ସର୍ତ୍ତ ଅନୁସାରେ ରାମଚନ୍ଦ୍ରଙ୍କ ସହିତ ମୁସଲମାନ ସୈନ୍ୟମାନଙ୍କର ଯୁଦ୍ଧ ହେଲା । ଏ ଯୁଦ୍ଧରେ ରାମଚନ୍ଦ୍ରଭଞ୍ଜ ନିହତ ହେଲେ ।

ଦେଶଦ୍ରୋହୀ, ଜାତିଦ୍ରୋହୀ, ସ୍ୱାମୀହନ୍ତା, ବିଶ୍ୱାସଘାତକ ରାମଚନ୍ଦ୍ରଭଞ୍ଜଙ୍କ ମୃତ୍ୟୁରେ ମୁକୁନ୍ଦଦେବଙ୍କ ରାଣୀ ଶାନ୍ତିରେ ନିଶ୍ୱାସ ମାରିଲେ । ଆଉ ଏ ଜୀବନରେ ବା ତାଙ୍କର କି ଲଭ ? ରାଜ୍ୟ ଗଲା, ସ୍ୱାମୀ ଗଲେ । ଏଣିକି ବା ହତାଶମୟ ଜୀବନ ବିତାଇବାକୁ ତାଙ୍କର ମନ ବଳିଲା ନାହିଁ । ସେ ନିଜେ ବୀରବାଳା । ବୀରତ୍ୱର ମର୍ଯ୍ୟାଦା ଜାଣନ୍ତି । ତେଣୁ ସ୍ୱାମୀହନ୍ତାକୁ ଉପଯୁକ୍ତ ପ୍ରତିଶୋଧ ଦେଇଥିବାରୁ ସେ କଳାପାହାଡ଼ ନିକଟକୁ ସୁବର୍ଣ୍ଣ ଥାଳିରେ କ୍ଷୀରର ଉପଢୌକନ ପ୍ରେରଣ କଲେ । ତାପରେ ନିଜେ ଜହରବ୍ରତ ପାଳନ କରି ପୁରନାରୀମାନଙ୍କ ସହିତ ଚିତାନଳରେ ପ୍ରବେଶ କଲେ । ଉତ୍କଳ ମୁସଲମାନମାନଙ୍କଦ୍ୱାରା ଅଧିକୃତ ହେଲା । ଅଭେଦ୍ୟ ବାରବାଟୀ ଦୁର୍ଗର ଲୌହପ୍ରାଚୀର ରୂପେ ଥିବା ଚୌଦ୍ୱାର, ବଡ଼ାକାଣୀ ଏବଂ ସାରଙ୍ଗଗଡ଼ ମଧ୍ୟ ଚୂର୍ଣ୍ଣୀଭୂତ ହେଲା । କଥା ରହିଲା—

ଅଇଲା କଳାପାହାଡ଼ ଭାଙ୍ଗିଲା ଲୁହାର ବାଡ଼
ପିଇଲା ମହାନଦୀ ପାଣି,
ସୁବର୍ଣ୍ଣ ଥାଳୀରେ ଭାତ ପରଷିଲେ
ମୁକୁନ୍ଦଦେବଙ୍କ ରାଣୀ ।
ଅକାଳ କୁହୁଡ଼ିର ଅନ୍ତରାଳରେ ଲୁଚିଗଲା ଉତ୍କଳର ସ୍ୱାଧୀନତା-ସୂର୍ଯ୍ୟ ।

❋ ❋

ଦିନ ବିତିଯାଏ । ଧୀରେ ଧୀରେ ବିତିଯିବା ତାର କାମ । ରାତ୍ରିର ଉପରେ ବିତିଯାଇ ପୁଣି ନୂତନ ଦିବସ ଭାବରେ ତାର ଆବିର୍ଭାବ ଘଟେ । ସେ ଦିବସଗୁଡ଼ିକ କାହା ପାଖରେ ଉଜ୍ଜ୍ୱଳ ହୋଇ ଦେଖାଦିଏ, କାହା ପାଖରେ ବା ସ୍ତିମିତ ରୂପେ ଦେଖାଦିଏ । ତା'ର ଭିତରେ ମନୁଷ୍ୟର ହସ, କାନ୍ଦ, ଆବେଗ, ଆକାଙ୍‌କ୍ଷା, ସୁଖ, ଦୁଃଖ ସମସ୍ତ କିଛି ଲୁଚିଯାଏ ।

ଲଳିତା ସମୁଦ୍ରସ୍ନାନରୁ ଫେରିଲା ନାହିଁ । କେଉଁଠି କିଭଳି ଭାବରେ ଯେ ଅଛି କିଏ ଜାଣେ ? ହୁଏତ ତାଠାରୁ ଦୂରେଇ ଯିବା ପାଇଁ ଆତ୍ମଗୋପନ କରିଛି କିମ୍ବା ଏ ତୀର୍ଥରୁ ଅନ୍ୟ ତୀର୍ଥକୁ ଚାଲିଯାଇଛି ।

ମୋହନ ଆତ୍ମସମୀକ୍ଷା କରେ । ଏହି ଲଳିତା ତାର କୈଶୋରର ପଥ-ପ୍ରଦର୍ଶିକା ଏବଂ ସୁଖ ଦୁଃଖର ସାଥୀ ଥିଲା । ପୁଣି ଦିନେ ଏକାନ୍ତ ଆପଣାର ଭାବରେ ନିଜ ନିକଟକୁ ଆକର୍ଷଣ କଲା । ଯୌବନ ସେତେବେଳେ ଅର୍ଦ୍ଧବିକଶିତ କଳି ଏବଂ ଜୀବନ ଅଭିଜ୍ଞତାହୀନ ଦିନର ସମଷ୍ଟି ।

ହଠାତ୍ ଦୈବ-ଦୁର୍ବିପାକରେ ଦୁହିଁଙ୍କର ବିଚ୍ଛେଦ ହୋଇଗଲା । ପାଖରେ ଥିବାବେଳେ ସେ ଯାହାକୁ ଉପେକ୍ଷା କରୁଥିଲା, ଆଦର ବା ସୋହାଗର କଥା ପଦେ କହି ନ ଥିଲା, ତାର ଅଦର୍ଶନରେ ସମସ୍ତ ଦେହ ଓ ମନ ବିକଳ ହୋଇପଡ଼ିଲା । ସମୁଦ୍ରରେ ଢେଉ ଉଠିଲା ଭଳି ତା ମନରେ ମଧ୍ୟ ଢେଉ ଉଠିଥିଲା । ମୋହନ ତା'ର ସ୍ମୃତିକୁ ବକ୍ଷରେ ଧାରଣ କରି ଗୃହତ୍ୟାଗ କଲା ।

ତାପରେ ସେ ପାଇଲା ଆଉ ଏକ ନାରୀର ସାକ୍ଷାତ । ବନ୍ୟ ଝରଣାର ଜଳ ପରି ତାହା ପ୍ରଖର, ଛଳଛଳ । ତହିଁରେ ଦୁଃଖ, କ୍ଲାନ୍ତି ବା ହତାଶାର ଚିହ୍ନ ନାହିଁ ।

ତା ସହିତ ମୋହନର ମୁହୂର୍ତ୍ତକ ପାଇଁ ଦେଖା ହୋଇଥିଲା ସେହି ଗ୍ରୀଷ୍ମିତ ଅପରାହ୍ନରେ; ତଥାପି ସେ ଆକର୍ଷଣ କରିଥିଲା ତାକୁ ଏବଂ ସାଗ୍ରହ ନିମନ୍ତ୍ରଣ ଜଣାଇଥିଲା ନିଜର ଅରଣ୍ୟଗଡ଼ ଦୁର୍ଗକୁ । ମାତ୍ର ଘଟଣା ଚକ୍ରରେ ମୋହନ ସାକ୍ଷାତ ପାଇଥିଲା ଆଉ ଏକ ନାରୀର । ସେ ହେଉଛି କାଦମ୍ବିନୀ—ଜଣେ ସାମାନ୍ୟ ନଗରନଟୀ, ଯେ କି ସମସ୍ତ ପୂର୍ଣ୍ଣତା ମଧ୍ୟରେ ଏକ ବିରାଟ ଶୂନ୍ୟତା ନେଇ ଘୂରି ବୁଲୁଥିଲା ବୃନ୍ତଚ୍ୟୁତା, ଏକ ବିଦଳିତ କୁସୁମ ।

ଆକାଶ ଭଳି ଅସୀମ ଶୂନ୍ୟତା ତାର ସମସ୍ତ ଅନ୍ତର ଭରି ରହିଥିଲା । ସେହି ଶୂନ୍ୟରେ ଥିଲା—ମନୁଷ୍ୟର ମନ ଭୁଲାଇବା ପାଇଁ ମିଥ୍ୟାରଙ୍ଗର ଇନ୍ଦ୍ରଧନୁ ।

ସେ ସାଧକର ଶକ୍ତି ନୁହେଁ କି ଗୃହସ୍ଥର ବଧୂ ନୁହେଁ—ସେ କେବଳ ବିଳାସିନୀ । ଅନ୍ୟର ମନୋରଞ୍ଜନ ଥିଲା ତାର ବ୍ୟବସାୟ । ଜୀବନରେ ବିଭିନ୍ନ ପୁରୁଷର ସଂସର୍ଗରେ ଆସି ତାର ମନ ବୋଲି ଗୋଟାଏ କିଛି ନ ଥିଲା । ଯାହା ଥିଲା, ତାହା କୀଟଦଷ୍ଟ । ଶରୀରର ପକ୍ଷାଘାତ ଅଂଶ ପରି ମନ ତାର ନିର୍ଜୀବ ହୋଇ ପଡ଼ିଥିଲା । ତହିଁରେ ସ୍ନେହ, ମାୟା, ମମତା, ଅନୁରାଗ, ଆବେଗ, ଉତ୍କଣ୍ଠା କିମ୍ବା ରୋମାଞ୍ଚ କିଛି ନ ଥିଲା । ବାସର ରାତ୍ରିରେ ପୁରୁଷର ପ୍ରଥମ ସ୍ପର୍ଶରେ କୁମାରୀର ଅକ୍ଷତ ଯୌବନ ଯେପରି ଆତ୍ମହରା ହୋଇଉଠେ, ଅନ୍ତରରେ ଯେପରି ଚଞ୍ଚଳତା ଖେଳିଯାଏ, ତାହାର ଅନୁଭବ ତା ନିକଟରେ ସ୍ୱର୍ଗୀୟ ବସ୍ତୁ ଥିଲା । ମୋଟ ଉପରେ ସେ ଥିଲା—ଭାଗ୍ୟହତ ଯୁଗର ଏକ ପ୍ରତୀକ । ଭୋଗ ମଧ୍ୟରେ ଯାହାର କ୍ଷୁଧା ମେଣ୍ଟେ ନାହିଁ, ଯେ ପୋଡ଼ି ଭସ୍ମ ହୋଇ ପୁଣି ବାର ବାର ଅଗ୍ନି କାମନା କରେ, ସେ ଭସ୍ମ ପୋଡ଼ି ପୁଣି ନୂତନ ଧରଣର ଭସ୍ମ ହୁଏ । ତଥାପି ସେହି ଭସ୍ମ ମଧ୍ୟରୁ କାଦମ୍ବିନୀ ନୂତନ ଭାବରେ ନିଜକୁ ଶତଦଳ ପରି ବିକଶିତ କରିବାକୁ ଇଚ୍ଛା କରିଥିଲା । ମାତ୍ର ଅକାଳରେ ତାର ପରିସମାପ୍ତି ଘଟିଲା ।

ସେ ନିଜେ ଆଜି ସୂତାକଟା ଘୁଡ଼ି ପରି ଏଣେତେଣେ ଉଡ଼ିବୁଲୁଛି । ଏହାର ଶେଷ ଯେ କେଉଁଠି କିଏ ଜାଣେ ???

ଦେଶରେ ଅରାଜକତା ।

ସମଗ୍ର ଉତ୍କଳ ଭରି ଘୂରିରହିଛି ଅଶାନ୍ତ ଓ ଅସନ୍ତୋଷର ବହ୍ନି । ଉତ୍ତର ଏବଂ ଦକ୍ଷିଣ ଦିଗରୁ ଯବନବାହିନୀ ପ୍ରବଳ ବନ୍ୟାସ୍ରୋତ ପରି ମାଡ଼ି ଆସୁଛନ୍ତି । ଉତ୍କଳର ସ୍ୱାଧୀନତା-ସୂର୍ଯ୍ୟ ଅସ୍ତମିତ ହୋଇଛନ୍ତି ଘନ କୁହୁଡ଼ିର ଅନ୍ତରାଳରେ । ସମଗ୍ର ଉତ୍କଳ ବର୍ତ୍ତମାନ ଅନ୍ଧକାରରେ ପରିପୂର୍ଣ୍ଣ । ପ୍ରଜାମାନେ ନିଜ ନିଜର ଧନ-ଜୀବନ

ନାଗ୍ରପଦ ରଖିବା ପାଇଁ ବ୍ୟସ୍ତ ।

ମୋହନ ଫେରିଆସିଲା ପୁଣି ନଗ୍ରଜ ପର୍ବତର ବୌଦ୍ଧପୀଠକୁ । ସେ ବର୍ତ୍ତମାନ ତା ନିକଟରେ ଗୋଟାଏ ବୋଝ—ଗନ୍ଧହୀନ ଏକ ଜଡ଼ପିଣ୍ଡ; ମୃତ୍ୟୁର ଅନ୍ଧକାର ଅପେକ୍ଷା ଯାହା ଆହୁରି ଭୀଷଣ ।

ମୋହନ କେବଳ ଚିତ୍ରକର ନୁହେଁ, ତତ୍ତ୍ୱଦର୍ଶୀ ମଧ୍ୟ । ଆଚାର୍ଯ୍ୟଙ୍କ ଦୟାରୁ ସେ ସକଳ ଶାସ୍ତ୍ରରେ ଜ୍ଞାନ ଲାଭ କରିଥିଲା । ସେ ଭଲଭାବରେ ଜାଣିଛି—ଦେହ ଧାରଣ କରିବାକୁ ହେଲେ ଦୁଃଖ ଭୋଗ କରିବାକୁ ପଡ଼େ । ଆସିବା ସମୟରେ ଦୁଃଖ, ପଥଚଲାରେ ଦୁଃଖ ଏବଂ ଯିବା ସମୟରେ ମଧ୍ୟ ଦୁଃଖ । ମାତ୍ର ସେ ଦୁଃଖର ଗୋଟାଏ ସୀମା ଥାଏ; ତାପରେ ତାହା କ୍ରମଶଃ ପରିବର୍ତ୍ତିତ ହୁଏ—ଯେପରି କି ରାତ୍ରିର ବିଦାୟରେ ନୂତନ ଦିବସର ସୂର୍ଯ୍ୟ ଉଦିତ ହୁଏ । ମାତ୍ର ଏ ଅନ୍ଧକାରର ପରିସମାପ୍ତି ନାହିଁ । ଠିକ୍ କାଳବୈଶାଖର ଝଡ଼ ପରି ତାହା ତାର ଭାଗ୍ୟାକାଶରେ ଦେଖାଦେଇଛି ।

ବୈଶାଖର ମଧ୍ୟାହ୍ନରେ ଝଡ଼ଉଠେ । ମୁହୂର୍ତ୍ତିକରେ ଆକାଶ ଢାଙ୍କିଦିଏ । ଚକ୍ରାକାରରେ ଧୂଳିପଟଳ ଉଡ଼େ । ତାହା ଯେତିକି ଦୂରକୁ ଯାଏ, ଝଡ଼ର ଆବେଗ ସେତିକି ବଢ଼ିଉଠେ । ଶଙ୍ଖଚିଲ ଏବଂ ଶ୍ୟେନ ପକ୍ଷୀଦଳ ସେହି ଆବର୍ତ୍ତରେ ଘୂରି ଘୂରି ଆକାଶର ବହୁତ ଦୂରକୁ ଚାଲିଯାଆନ୍ତି । ବଡ଼ ବଡ଼ ଗଛଡାଳ ଭାଙ୍ଗିପଡ଼େ, ଘରଦ୍ୱାର ଉଡ଼ାଇନିଏ । ତାପରେ କଳାମେଘ ଆକାଶ ଛୁଇଁଯାଏ । ସୂର୍ଯ୍ୟ ଲୁଚିଯାଆନ୍ତି ତା' ପଛରେ । ମୁହୂର୍ତ୍ତିକରେ କଳାମେଘରୁ ରିମିଝିମି ବର୍ଷା ଝରିପଡ଼େ । ମେଘ ମନ୍ଦ୍ର ତାନରେ ଆକାଶ-ଧରଣୀ ମୁଖରିତ ହୁଏ । ବିଦ୍ୟୁତର ଚମକ ଓ ବଜ୍ରର ଭୈରବ ଶବ୍ଦ ଧରଣୀର ବୁକୁ ଚମକାଇ ଦିଏ ।

ମୋହନ ଏ ସମସ୍ତ ସହ୍ୟ କରିଛି । ଆଜି ସେ ଶ୍ରାନ୍ତ ଓ କ୍ଳାନ୍ତ । ବର୍ତ୍ତମାନ ତାର ବିଶ୍ରାମ ଆବଶ୍ୟକ ।

ମାତ୍ର ବିଶ୍ରାମ କାହିଁ ?

ଭାଗ୍ୟହତ ଲୋକ ମୃତ୍ୟୁକୁ ଆଲିଙ୍ଗନ କଲେ ମଧ୍ୟ ତାହା କ୍ରମଶଃ ଦୂରକୁ ଘୁଞ୍ଚି ଘୁଞ୍ଚି ଯାଏ ।

ସେଦିନ ହଠାତ୍ ନଗ୍ରଜ ପର୍ବତର ବୌଦ୍ଧସ୍ତୂପ ମଧ୍ୟରେ ତାର ପ୍ରିୟା ସହିତ ସାକ୍ଷାତ ହୋଇଗଲା । ଉଭୟେ ଉଭୟଙ୍କ ପରିଚୟ ପ୍ରଦାନ କଲା ପରେ ପ୍ରିୟା ତା ନିକଟରେ କୃଷ୍ଣାର ସନ୍ଦେଶ ପ୍ରଦାନ କଲା ।

ମନୁଷ୍ୟର ଜୀବନ ଯେତେବେଳେ ଯିବାକୁ ଇଚ୍ଛା କରେ, ଅତି ସହଜରେ ମୁହୂର୍ତ୍ତିକରେ ଚାଲିଯାଏ । କେତେବେଳେ ମର୍ମାନ୍ତିକ ଆଘାତ ସତ୍ତ୍ୱେ ମଧ୍ୟ ଯାଏ ନାହିଁ, ନିଦାରୁଣ କଷ୍ଟ ମଧ୍ୟରେ କଠିଣ ଯୁଦ୍ଧ କରି ଆହତ ଦେହଟାକୁ ଜାବୁଡ଼ି ଧରେ ।

ସେଦିନ ଅଗ୍ର-ପଶ୍ଚାତ୍ ଉଭୟ ଭାଗର ଆକ୍ରମଣରେ ଅରଣ୍ୟଗଡ଼ବାହିନୀ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲେ । ଆଗରେ ଅଗ୍ନି, ପଛରେ ସମୁଦ୍ର । ଉଭୟ ଆଡ଼େ ମୃତ୍ୟୁର କରାଳ ରୂପ । ଶେଷରେ ଅନ୍ୟ ଉପାୟ ନ ଦେଖି ସମସ୍ତେ ରଣ-ଯାଗରେ ନିଜକୁ ଆହୁତି ଦେଲେ । ରକ୍ତର ସ୍ରୋତ ବହିଯାଇ ମହାନଦୀର ନୀଳ ନୀର ଲୋହିତବର୍ଣ୍ଣ ଧାରଣ କଲା ।

କୃଷ୍ଣା ନିଜର କୃଷ୍ଣ ଅଶ୍ୱପୃଷ୍ଠରେ ଆରୋହଣକରି ଯୁଦ୍ଧଭୂମିରେ ବୁଲୁଥିବା-ବେଳେ ହଠାତ୍ ଏକ ତୀର ଆସି ଅଶ୍ୱର ମସ୍ତକ ବିଦ୍ଧକଲା । ଅଶ୍ୱଟି ସେହି ଆଘାତରେ ଭୂମିରେ ପଡ଼ିଗଲା । କୃଷ୍ଣା ମଧ୍ୟ ତା ସହିତ ତଳେ ପଡ଼ି ଅଚେତ ହୋଇଗଲା । ଚେତନା ଫେରିବା ପରେ ଜାଣିପାରିଲା ଯେ, ସେ ଶତ୍ରୁମାନଙ୍କଦ୍ୱାରା ବନ୍ଦିନୀ ।

ଯୁଦ୍ଧରେ ବିଜୟଲାଭ କରି ପଠାଣ ସୈନ୍ୟମାନେ ଅରଣ୍ୟଗଡ଼ ଦୁର୍ଗରେ ଆମୋଦ ପ୍ରମୋଦରେ ରତ ହେଲେ । ପ୍ରିୟା ସେ ଦିନ ରାତ୍ରରେ ଯୁଦ୍ଧଭୂମିକୁ ଲୁଚି ଲୁଚି ଯାଇଥିଲା—ପ୍ରିୟ ସଖୀର ଶବ ଆଣି ଦାହକରିବା ପାଇଁ । ମାତ୍ର ସେଠାରେ ଖୋଜି ଖୋଜି ସେ କୃଷ୍ଣାର ମୃତଦେହ ପାଇଲା ନାହିଁ । ପରିଶେଷରେ ଜଣେ ଆହତ ସୈନିକ-ଠାରୁ ସେ ଯୁଦ୍ଧର ସମସ୍ତ ବିବରଣୀ ଏବଂ କୃଷ୍ଣାର ବନ୍ଦୀ ହେବା ସମ୍ବାଦ ଶୁଣିଲା ।

ସୈନିକଟି ସାମାନ୍ୟ ଆଘାତ ପାଇଥିଲେହେଁ ପ୍ରଥମେ ଅଚେତ ହୋଇ ଯାଇଥିଲା । ଚେତନା ଫେରି ପାଇବା ପରେ ମୁସଲମାନ ସେନାମାନଙ୍କର ବିଜୟ କୋଳାହଳ ଶୁଣି ସେ ଆଉ ମୁଣ୍ଡ ଟେକିବାକୁ ସାହସ କଲା ନାହିଁ । ସେହିଠାରେ ଶୋଇ ଶୋଇ ଯୁଦ୍ଧଭୂମିର ସମସ୍ତ ଦୃଶ୍ୟ ଦେଖିବାରେ ଲାଗିଲା ।

ପ୍ରିୟ ନିଜର ଅଶ୍ୱପୃଷ୍ଠରେ ଆହତ ସୈନିକଟିକୁ ଦୂରକୁ ନେଇ ଯାଇ ଏକ ଜନପଦରେ ଛାଡ଼ିଦେଲା । ତାପରେ ମୋହନର ଅନ୍ୱେଷଣରେ ନରାଜ ପାହାଡ଼କୁ ଫେରିଆସିଲା ।

ମନୁଷ୍ୟ ଜୀବନରେ ସ୍ମୃତିର ରାଜ୍ୟ ସ୍ୱତନ୍ତ୍ର । ସ୍ମୃତି ହିଁ ଜୀବନ ଏବଂ ମୃତ୍ୟୁକୁ

ସେବୁ ସ୍ୱରୂପ ଯୋଗକରୁଛୁ । ତେଣୁ ତାହା ଏ ପୃଥିବୀ ମଧ୍ୟରେ ସୀମିତ ନୁହେଁ; ବସ୍ତୁଜଗତରେ ମଧ୍ୟ ତାର ଅବାଧ ଗତିବିଧି ଅଛୁ । ମନୁଷ୍ୟ ଯେତେ ଚେଷ୍ଟା କଲେହେଁ ତାହାକୁ ଡେଇଁ ପାରେ ନାହିଁ, ବରଂ ତାହା ଅଧିକ ଭାବରେ ମନୁଷ୍ୟ ମନକୁ ଆଚ୍ଛନ୍ନ କରିଦିଏ ।

ଆଜି ମଧ୍ୟ ନଗ୍ରାଜ ପାହାଡ଼ର ପାଦଦେଶରେ ଠିଆହୋଇ ମୋହନ ଯେତେବେଳେ ସୂର୍ଯ୍ୟାସ୍ତର କମନୀୟ ଦୃଶ୍ୟ ଦେଖେ, ସେତେବେଳେ ମନ ତାର ଫେରିଯାଏ ସେହି ଅତୀତକୁ । ବର୍ତ୍ତମାନର ଜଗତ ବିଲୁପ୍ତ ହୋଇଯାଏ ଘନକୁହୁଡ଼ିର ଅନ୍ତରାଳରେ । ଝିର ଝିର ବର୍ଷଣ ପୃଥିବୀର ସମସ୍ତ ରୂପ, ରଙ୍ଗ ଓ ରସକୁ ଢାଙ୍କିଦିଏ । ମୋହନର ଆଖି ଆଗରେ ଦେଖାଦିଏ ସେହି ଗୋଟିଏ ରୂପ— କର୍ମଦେବୀର ପ୍ରେରିତା ଏକ ଜାଗ୍ରତ ପ୍ରେରଣା । ମଧ୍ୟାହ୍ନ ସୂର୍ଯ୍ୟର ଦୀପ୍ତିରେ ସେ ଦୀପ୍ତିମୟୀ । ପାଖରେ କୃଷ୍ଣ ଅଶ୍ୱ, କଟୀରେ ଖଡ୍‌ଗ, ପୃଷ୍ଠଦେଶରେ ଧନୁ ଓ ତୂଣୀର ।

ମୋହନ ରଙ୍ଗ ଓ ତୂଳି ଧରି ଭୂର୍ଜପତ୍ରରେ ସେ ରୂପ ଅଙ୍କନ କରେ । ସ୍ମୃତିର ଦର୍ପଣରେ ଦେଖିନିଏ କୃଷ୍ଣାର ରୂପ ଓ ରେଖା ।

ଏହିପରି ଦିନେ ଅପରାହ୍ନରେ ସେ ଅଙ୍କନରେ ତନ୍ମୟ ଥିବାବେଳେ ଜଣେ ତରୁଣୀ ତା ନିକଟରେ ଉପସ୍ଥିତ ହେଲା । ମୋହନ ସେତେବେଳେ ଚିତ୍ରଟି ଅଙ୍କନ କରିସାରି ପ୍ରାକୃତିକ ଦୃଶ୍ୟରେ ମନୋନିବେଶ କରିଥିଲା । ତରୁଣୀଟି ତା ନିକଟକୁ ଯାଇ ଚିତ୍ର ଉପରେ ଥରେ ଦୃଷ୍ଟି ବୁଲାଇନେଲା । କୃଷ୍ଣାର ଚିତ୍ରପଟ ଦେଖି ତାର ଆଉ ମୋହନକୁ ଚିହ୍ନିବାକୁ ବିଳମ୍ବ ହେଲା ନାହିଁ । ସେ ପ୍ରଶ୍ନ କଲା—ମହାଶୟଙ୍କ ନାମ କ'ଣ ?

ଚିତ୍ରକର ତଳକୁ ଦୃଷ୍ଟି ରଖି ଉତ୍ତର ଦେଲା— ମୋହନ କୁମାର ।

—ତୁମେ ? ତରୁଣୀ ଅସ୍ପଷ୍ଟ କଣ୍ଠରେ କହିଉଠିଲା ।

ସେ ସ୍ୱରରେ ଆକୃଷ୍ଟ ହୋଇ ମୋହନ ତା ଆଡ଼କୁ ଦୃଷ୍ଟିପାତ କଲା । ତାପରେ ପ୍ରଶ୍ନ କଲା— ଆପଣ ?

— ମୁଁ ଅରଣ୍ୟଗଡ଼ର କୃଷ୍ଣାକୁମାରୀର ସହଚରୀ—ପ୍ରିୟା ।

ତାପରେ ପ୍ରିୟା ବର୍ଣ୍ଣନା କଲା— ଅରଣ୍ୟଗଡ଼ର ଯୁଦ୍ଧ ଏବଂ କୃଷ୍ଣାର ତା ନିକଟକୁ ଶେଷ ବାର୍ତ୍ତା ।

ଉଭୟେ ଫେରିଆସିଲେ ନବାବର ବୌଦ୍ଧସ୍ତୂପକୁ ରାତ୍ରି ବିଶ୍ରାମ ପାଇଁ ।

*

କଳ-କଲ୍ଲୋଳା ସାଗର ବାହିନୀ ମହାନଦୀ ।

ଯୁଗ ଯୁଗ ଧରି ଅବିଶ୍ରାନ୍ତ ଗତିରେ ଉତ୍କଳ ବକ୍ଷରେ ପ୍ରବାହିତ ହୋଇ ଆସୁଛି ।

ବର୍ଷାରେ କୁମାରୀ କନ୍ୟାର ଦୁରନ୍ତ ଚଞ୍ଚଳତା, ଶରତରେ ଗୃହାଗତ ନବବଧୂ ରୂପ, ପୁଣି ଶୀତ ଓ ଗ୍ରୀଷ୍ମରେ ସ୍ଥବିର । ତପସ୍ୱିନୀ ପରି ସେ ଧାଇଁଛି ପ୍ରିୟ ମିଳନ ଆଶାରେ ।

କେତେ କୁଟିଳ ରହସ୍ୟ, କେତେ ବୀରତ୍ୱର କାହାଣୀ, କେତେ କୃତଘ୍ନତା, ବିଶ୍ୱାସଘାତକତା, ପ୍ରେମ, ବିଦ୍ୱେଷ, କୌତୁକ, କୁତୂହଳ ଏବଂ ଜନ୍ମ-ମୃତ୍ୟୁର ରହସ୍ୟ ତାହାର ଊର୍ମି-ମର୍ମର ସ୍ମୃତିରେ ଲୁକ୍‌କାୟିତ ହୋଇ ରହିଛି । ଆଜିର ନାଗରିକ ପାଇଁ ସେ ସ୍ମୃତି ପଟ ଉନ୍ମୋଚନ କରି ଲେଖୁଛି—ଇତିହାସ, ଦେଖୁଛି—ସେହି ଅତୀତ ଦିବସର ସୁଜଳା-ସୁଫଳା, ଶସ୍ୟଶ୍ୟାମଳା, ଧନ-ଜନଯୁକ୍ତା ଉତ୍କଳ ଜନନୀର ମହିମାମୟୀ ରୂପ । ମାତ୍ର ପରମୁହୂର୍ତ୍ତରେ ସେ ବର୍ତ୍ତମାନକୁ ଫେରିଆସୁଛି । ସ୍ମୃତି-ପଟରେ ଧ୍ୱନିତ ହେଉଛି ବିକଳ କଣ୍ଠର କରୁଣ ସ୍ୱର—ଭିକ୍ଷାଂ ଦେହି ।

ଉତ୍କଳର ଏହି ଉତ୍‌ଥାନ ପତନ ସମୟରେ ମୋହନ ଏବଂ ପ୍ରିୟା କୃଷ୍ଣାର ମୁକ୍ତି ପାଇଁ ଚିନ୍ତା କରିବାରେ ଲାଗିଲେ । ବହୁ ଆଲୋଚନା ପରେ ଶେଷରେ ତାଙ୍କୁ ଏକ ଉପାୟ ଦିଶିଲା ।

ମୋହନ ଜଣେ ଚିତ୍ରକର ବେଶରେ ବଡ଼ାବାଟୀ ଦୁର୍ଗ ନିକଟକୁ ଗଲା ଏବଂ ତା ସହିତ ପ୍ରିୟା ପୁରୁଷ ବେଶରେ ଭାରବାହକ ରୂପେ ଗଲା । ଭାରବାହକର ଗୋଟିଏ ପାଖ ପେଟିକାରେ ବିଭିନ୍ନ ଚିତ୍ର ଏବଂ ଅନ୍ୟ ପାଖ ପେଟିକାରେ ଚିତ୍ର ଅଙ୍କନର ସରଞ୍ଜାମ ।

ଉଭୟେ ଯାଇ ବଡ଼ାବାଟୀ ଦୁର୍ଗ ନିକଟରେ ଉପସ୍ଥିତ ହେଲେ । ନବାବ ସୈନ୍ୟମାନଙ୍କ ସହିତ ମିଶି ଚିତ୍ର ବିକିବା ବାହାନାରେ କୃଷ୍ଣାର ଖବର ସଂଗ୍ରହ ସେମାନଙ୍କର ଏକମାତ୍ର ଲକ୍ଷ୍ୟ ।

ଯବନ ଅନ୍ତଃପୁର କାରାଗାରରେ କୃଷ୍ଣାକୁମାରୀ ଗୁରୁତର ଅସୁସ୍ଥା । ଦୀର୍ଘ ଦିବସ ଅନଶନ ଏବଂ ଦାରୁଣ ମାନସିକ ଦୁଶ୍ଚିନ୍ତା ଫଳରେ ଦେହ କୃଶ । ଚକ୍ଷୁରେ ଅସ୍ୱାଭାବିକ ପ୍ରଖର ଦୃଷ୍ଟି । ପୂର୍ବର ସେ ସାହସ ଓ ପ୍ରେରଣା ହଜିଯାଇଛି । ଜାଲବଦ୍ଧା କୁରଙ୍ଗୀ ପରି ମୁକ୍ତି ପାଇବାର ପଥ ଖୋଜି ପାଉ ନାହିଁ ।

ମାଝି ବାଇଜଦର ହୃଦୟରେ ଖେଳୁଛି ବିପରୀତ ଭାବନା । କୃଷ୍ଣ ଅଶ୍ୱପୃଷ୍ଠରେ ଆରୂଢ଼ା କୃଷ୍ଣାର ବୀରାଙ୍ଗନା ମୂର୍ତ୍ତି ଦେଖି ସେ ମୋହିତ ହୋଇ ପଡ଼ିଥିଲା ପରିଶେଷରେ କୃଷ୍ଣା ଯେତେବେଳେ ବନ୍ଦିନୀ ହେଲା, ସେତେବେଳେ ତାର କଳ୍ପନା-ବୃକ୍ଷରେ ଆଶାର ମୁକୁଳ ଧରିଲା । ସେ ଚନ୍ଦ୍ରାକଳା—କୃଷ୍ଣାକୁ ପ୍ରଣୟିନୀ ରୂପେ ସଙ୍ଗରେ ଧରି ସେ ବଙ୍ଗଦେଶକୁ ପ୍ରତ୍ୟାବର୍ତ୍ତନ କରିବ । ନବାବର ଗାଦୀ ଏପରି ବୀରାଙ୍ଗନାର ସ୍ପର୍ଶରେ ଦ୍ୱିଗୁଣ ତେଜରେ ଉଦ୍ଭାସିତ ହୋଇଉଠିବ । ତେଣୁ କୃଷ୍ଣାର ଅସୁସ୍ଥତା ସମ୍ବାଦ ପାଇ ସେ ବିଚଳିତ ହୋଇପଡ଼ିଲା ପରିଶେଷରେ ଅନ୍ୟ ଉପାୟ ନ ଦେଖି ତାକୁ ରୋଗମୁକ୍ତ କରିବା ପାଇଁ ସେ ଚକ୍ରଧରଙ୍କର ସାହାଯ୍ୟ ଲୋଡ଼ିଲା ।

ମୋହନ ଏବଂ ପ୍ରିୟା ଏ ସମ୍ବାଦ ପାଇ ନରାଜ ପର୍ବତକୁ ଫେରିଆସିଲେ । ଠିକ୍ ଏତିକବେଳେ ଉତ୍କଳ-ଆକାଶରେ ପୁଣି ଏକ ପରିବର୍ତ୍ତନ ଦେଖାଦେଲା । ବିଶ୍ୱାସଘାତକତାର ଚରମ ପୁରସ୍କାର ମିଳିଲା ରାମଚନ୍ଦ୍ର ଭଞ୍ଜଙ୍କୁ । କୋଟସମା ଦୁର୍ଗରେ ହୋଇଥିବା ସନ୍ଧିସର୍ତ୍ତ ଅନୁସାରେ ବଙ୍ଗ ନବାବଙ୍କ ସେନାପତି କଳାପାହାଡ଼ ରାମଚନ୍ଦ୍ର ଭଞ୍ଜଙ୍କ ସହିତ ଯୁଦ୍ଧକଲା । ଏ ଯୁଦ୍ଧରେ ରାମଚନ୍ଦ୍ର ନିହତ ହେଲେ । ଉତ୍କଳ ମୁସଲମାନମାନଙ୍କଦ୍ୱାରା ଅଧିକୃତ ହେଲା । ଯବନବାହିନୀ ବଡ଼ାନାସୀ ଦୁର୍ଗରେ ଅବସ୍ଥାନ କଲେ ।

ସେଦିନ ପ୍ରଭାତରୁ ଜଣେ ସନ୍ନ୍ୟାସିନୀ ନରାଜ ପର୍ବତର ପାଦଦେଶରୁ ବଡ଼ାନାସୀ ଅଡ଼େ ଅଗ୍ରସର ହେଲେ । ପରିଧେୟ କୌପେୟ ବାସ, କାନ୍ଧରେ ଭିକ୍ଷା-ଝୁଲି, ହସ୍ତରେ ରୁଦ୍ରାକ୍ଷର ମାଳା, କଣ୍ଠରେ ଗୀତଗୋବିନ୍ଦର ଲଳିତ ପଦାବଳୀ—

'ଲଳିତଲବଙ୍ଗଲତାପରିଶୀଳନ କୋମଳ ମଳୟ ସମୀରେ
ମଧୁକରନିକରକରମ୍ବିତକୋକିଳ-କୂଜିତ କୁଞ୍ଜକୁଟୀରେ
ବିହରତି ହରିରିହ ସରସ ବସନ୍ତେ

ନତ୍ୟନ୍ତି ଯୁବତୀ ଜନେନ ସମଂସର୍ଦ୍ଧି
ବରଦ୍ଧଜନସ୍ୟ ଦୂରନ୍ତେ ।";

କୋମଳ ନାରୀକଣ୍ଠର ମଧୁରମୂର୍ଚ୍ଛନାରେ ବନସ୍ଥଳୀ ମଙ୍କୃତ ହୋଇଉଠିଲା । ସେ ସ୍ୱରଲହରରେ ଆକୃଷ୍ଟ ହୋଇ ବନଚର କୁରଙ୍ଗ ଦମ୍ପତି ମୁଖରେ ତୃଣାଙ୍କୁର ଧରି ଗ୍ରୀବା ଟେକି ଚାହିଁରହିଲେ । ମହାନଦୀଜଳରେ କ୍ଷୁଦ୍ର କ୍ଷୁଦ୍ର ଭଉଁରୀ ସୃଷ୍ଟିହୋଇ କୂଳରେ ମୁଣ୍ଡ ପିଟିଦେଲା ।

ଅବଶେଷରେ ସନ୍ନ୍ୟାସିନୀ ଆସି ବାଡ଼ାନାସୀ ଦୁର୍ଗ ନିକଟରେ ଉପସ୍ଥିତ ହେଲେ । ତାଙ୍କର ଯୁବାବସ୍ଥାରେ କଷାୟବାସ ଏବଂ ରୁଦ୍ରାକ୍ଷର ମାଳା ଦେଖି ଯବନ ସୈନ୍ୟମାନଙ୍କ ମଧ୍ୟରେ କୌତୂହଳ ସୃଷ୍ଟିହେଲା । ସେମାନେ ଦଳେ ଦଳେ ଆସି ସନ୍ନ୍ୟାସିନୀଙ୍କୁ ଘେରି ନାନା ପ୍ରଶ୍ନ ପଚାରିବାରେ ଲାଗିଲେ ।

ସୈନିକମାନଙ୍କ ମଧ୍ୟରେ ଅସ୍ଥିରତା ଲକ୍ଷ୍ୟକରି ଜଣେ ବଳିଷ୍ଠକାୟ ଯୁବକ ଘଟଣା କ'ଣ ଜାଣିବା ପାଇଁ ପଦାକୁ ଆସିଲେ । ସେ ଦୂରରୁ ଲକ୍ଷ୍ୟ କଲେ ଯେ ଜଣେ ନାରୀଙ୍କୁ ଘେରି ସୈନିକମାନଙ୍କ ମଧ୍ୟରେ କୋଳାହଳ ସୃଷ୍ଟି ହୋଇଛି । ତହୁଁ ସେ ମଧ୍ୟ କୌତୂହଳପରବଶ ହୋଇ ସନ୍ନ୍ୟାସିନୀଙ୍କ ନିକଟକୁ ଆସିଲେ । ଯୁବକଙ୍କ ଆଗମନ ଦେଖି ସୈନିକମାନେ କିଏ କେଉଁଆଡ଼େ ଚାଲିଗଲେ । ଯୁବକ ସନ୍ନ୍ୟାସିନୀଙ୍କ ଆପାଦମସ୍ତକ ଥରେ ନିରୀକ୍ଷଣ କରିନେଲେ ।

ଯୌବନ-ଶାଣରେ ଉପାଣିତ ବରତନୁ, ଷୋଡ଼ଶୀ, ସୁକୁମାରୀ ଏକ ନାରୀ । ମୁଖଟି ବିଭୂମଣ୍ଡିତ, ଚିର ହାସ୍ୟମୟୀ ।

ଯୁବକ ପ୍ରଶ୍ନ କଲେ—ତୁମେ କିଏ ?

ଆଗନ୍ତୁକା ଉତ୍ତର ଦେଲେ—ମୁଁ ଜଣେ ସନ୍ନ୍ୟାସିନୀ ।

—ତୁମର ଜାତି ?

ସନ୍ନ୍ୟାସିନୀ ମୃଦୁ ହସି ଉତ୍ତର ଦେଲେ—ସନ୍ନ୍ୟାସିନୀର କ'ଣ କୌଣସି ଜାତି ଥାଏ ? ମୁଁ ମନୁଷ୍ୟ, ଏହା ହିଁ ସତ୍ୟ । ସେଠାରେ ଜାତି, କୁଳ, ମାନ, ମର୍ଯ୍ୟାଦା ଏସବୁ କିଛି ନାହିଁ ।

—ନା, ମୁଁ ପଚାରୁଛି, ତୁମେ ହିନ୍ଦୁ ନା ମୁସଲମାନ ?

ସନ୍ନ୍ୟାସିନୀ ମୁହୂର୍ତ୍ତେ ଗମ୍ଭୀର ହୋଇ ଉତ୍ତର ଦେଲେ—ମହାଶୟ, ହିନ୍ଦୁ ଓ ମୁସଲମାନ ଏ ଦୁଇଟି ତ ସନ୍ନ୍ୟାସିନୀଙ୍କ ପକ୍ଷେ ସମାନ । ଯେ ହିନ୍ଦୁ — ସେ

ମୁସଲମାନ, ଯେ ଆଲ୍ଲା— ସେ ଭଗବାନ । ମୁସଲମାନ କହନ୍ତେ— ଆନ ଅଲ ହକ୍, ହିନ୍ଦୁ କହନ୍ତେ— ବ୍ରହ୍ମୋଽହମସ୍ମି । ଖୋଦା ଏ ମାଟିର ଦୁନିଆରେ ସମସ୍ତଙ୍କୁ ବଞ୍ଚିବାର ସମାନ ଅଧିକାର ଦେଇଛନ୍ତି । ଆଲୋକ, ପାଣି ଓ ପବନ ରୂପରେ ସେ ହିନ୍ଦୁ ଓ ମୁସଲମାନ ସମସ୍ତଙ୍କ ଉପରେ ଆଶୀର୍ବାଦ ଢାଳିଦିଅନ୍ତି । ତେଣୁ ଆମ ନିକଟରେ ହିନ୍ଦୁ ଓ ମୁସଲମାନର ପାର୍ଥକ୍ୟ କାହିଁ ?

ସନ୍ନ୍ୟାସିନୀଙ୍କ ବାକ୍ୟରେ ଯୁବକ ମୋହିତ ହୋଇଗଲେ । ତରୁଣୀ ସନ୍ନ୍ୟାସିନୀଙ୍କ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଜାତ ହେଲା । ତହୁଁ ସେ ପ୍ରଶ୍ନ କଲେ— ତୁମେ ଆମ ସଙ୍ଗରେ ରହିବ ?

ସନ୍ନ୍ୟାସିନୀ ଉତ୍ତର ଦେଲେ— ମାତ୍ର ମୁଁ ଯେ ଏପର୍ଯ୍ୟନ୍ତ ମହାଶୟଙ୍କ ପରିଚୟ ପାଇଲି ନାହିଁ ?

ଯୁବକ ଗର୍ବିତ ଭାବରେ ଉତ୍ତର ଦେଲେ— ମୁଁ ଉତ୍କଳବିଜୟୀ ନବାବ ସୁଲେମାନଙ୍କ ପୁତ୍ର ବାଇଜିଦ ।

ସନ୍ନ୍ୟାସିନୀ ଆଶୀର୍ବାଦ ଭଙ୍ଗୀରେ କହିଲେ— ଜୟୋଽସ୍ତୁ ।

ତାପରେ ଉତ୍ତର ଦେଲେ—ଆପଣ ଭାବୀ ନବାବ । ତେଣୁ ଆପଣଙ୍କ ନିକଟରେ ରହିବା ପାଇଁ ଆପତ୍ତି କାହିଁକି ହେବ ? ମାତ୍ର ମୁଁ ଯେ ସନ୍ନ୍ୟାସିନୀ । କାହାରି ପ୍ରତି ବିଶେଷ ଅନୁରାଗ ପ୍ରଦର୍ଶନ ଯେପରି ମୋର ଧର୍ମବିରୁଦ୍ଧ, କୌଣସି ଗୋଟିଏ ସ୍ଥାନରେ ରହିବା ମଧ୍ୟ ସେହିପରି ନିୟମବିରୁଦ୍ଧ । ଏଣୁ ମୁଁ ଆପଣଙ୍କ ନିକଟରେ ରହିବି କିପରି ?

—ତେବେ ତୁମର କାମ କ'ଣ ?

ସନ୍ନ୍ୟାସିନୀ ଉତ୍ତର ଦେଲେ— ରୋଗୀର ସେବା, ବିପନ୍ନର ଉଦ୍ଧାର ଏବଂ ନିରାଶ୍ରୟଙ୍କୁ ଆଶ୍ରୟ ଦେବା ଆମର ନିତ୍ୟନୈମିତ୍ତିକ କାମ । ମୁଁ ଗ୍ରାମେ ଗ୍ରାମେ ବୁଲି ଏହି କାମ କରୁଛି ।

ବାଇଜିଦ୍ ଆଗରୁ ଜାଣିଥିଲେ ଯେ ହିନ୍ଦୁ ସନ୍ନ୍ୟାସୀ ଓ ସନ୍ନ୍ୟାସିନୀମାନେ ଅଦ୍ଭୁତ ଦୈବୀଶକ୍ତିସମ୍ପନ୍ନ । ସେମାନେ ଇଚ୍ଛା କଲେ ଯେ କୌଣସି ମୁମୂର୍ଷୁ ରୋଗୀକୁ ମଧ୍ୟ ପ୍ରାଣଦାନ କରିପାରନ୍ତି । ତାଙ୍କର ମନେ ପଡ଼ିଲା କୃଷ୍ଣାକୁମାରୀ କଥା । ସେ ସନ୍ନ୍ୟାସିନୀଙ୍କୁ ପ୍ରଶ୍ନ କଲେ—ଆମର ଜଣେ ରୋଗୀଙ୍କୁ ଆରୋଗ୍ୟ କରିପାରିବେ ?

ସନ୍ନ୍ୟାସିନୀ ଉତ୍ତର ଦେଲେ— ତାହା ଭଗବାନଙ୍କ ଇଚ୍ଛା । ତେବେ

ରୋଗୀକୁ ନ ଦେଖିଲେ କହିବ କପରି ?

ବାଇଜିଦ୍ ଆଉ କାଳ ବିଳମ୍ବ ନ କରି ସନ୍ନ୍ୟାସିନୀଙ୍କୁ ଅନ୍ତଃପୁରକୁ ନେଇଗଲେ ।

ଯବନ ଅନ୍ତଃପୁର କାରାଗାରରେ କୃଷ୍ଣାର ଆଉ ସେ ପୂର୍ବ ରୂପ ନାହିଁ । ଚକ୍ଷୁ କୋଟରଗତ । ପୂର୍ବର ରୂପ ଓ ଯୌବନ ହଜିଯାଇଛି । ବିଛଣାରେ ଶୋଇ ଶୋଇ ସେ କେବଳ ମୃତ୍ୟୁର ଆଗମନ ପାଇଁ ପ୍ରହର ଗଣୁଛି ।

ତାର ଏପରି ଅବସ୍ଥା ଦେଖି ସନ୍ନ୍ୟାସିନୀଙ୍କ ଚକ୍ଷୁ ବାଷ୍ପାଚ୍ଛନ୍ନ ହୋଇଗଲା । ମାତ୍ର ସେ ବହୁ କଷ୍ଟରେ ନିଜକୁ ସଂଯତ କରି ଧୀରେ ଧୀରେ ଯାଇ ତାର ଶଯ୍ୟା ନିକଟରେ ବସି ମସ୍ତକରେ ହସ୍ତ ନିବେଶ କଲେ ।

ସେ ସ୍ପର୍ଶର ପ୍ରଭାବରେ କୃଷ୍ଣା ଚମକି ପଡ଼ିଲା । ଚକ୍ଷୁ ଖୋଲି ଚିତ୍କାର କରି ଉଠିଲା-କିଏ ?

ସନ୍ନ୍ୟାସିନୀ ଓଷ୍ଠରେ ଅଙ୍ଗୁଳି ନିର୍ଦ୍ଦେଶ କରି ତାକୁ ପାଟି ଫିଟାଇବାକୁ ନିଷେଧ କଲେ । ତାପରେ ତା ମୁହଁ ନିକଟରେ ମୁହଁ ଲଗାଇ ଗୁଣ୍ ଗୁଣ୍ ସ୍ୱରରେ କ'ଣ ମନ୍ତ୍ର ପଢ଼ି ବିଦାୟ ନେଲେ । ଯିବାବେଳେ ସେ ବାଇଜିଦ୍‌କୁ ଶୁଣାଇ ପୁଣି ପରଦିବସରେ ଆସିବାକୁ ପ୍ରତିଶ୍ରୁତି ଦେଇଗଲେ ।

ସନ୍ନ୍ୟାସିନୀଙ୍କ ମନ୍ତ୍ର ପ୍ରଭାବରେ ଆଶ୍ଚର୍ଯ୍ୟ ଫଳ ହେଲା । ଦିନେ ଦୁଇ ଦିନ ମଧ୍ୟରେ କୃଷ୍ଣା କ୍ରମେ ଶଯ୍ୟା ତ୍ୟାଗ କରି ଉଠି ବସିଲା । ବାଇଜିଦ୍ ତାର ଏପରି ଦ୍ରୁତ ଆରୋଗ୍ୟ ଲାଭ ଦେଖି ବିସ୍ମିତ ହୋଇପଡ଼ିଲେ । ସନ୍ନ୍ୟାସିନୀଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ଭକ୍ତି ବହୁଗୁଣରେ ବଢ଼ିଗଲା । ତେଣିକି ସେ ସନ୍ନ୍ୟାସିନୀଙ୍କ ଗମନାଗମନରେ ଆଉ କୌଣସି କଟକଣା ରଖିଲେ ନାହିଁ ।

ସନ୍ନ୍ୟାସିନୀ ନିଜ ଇଚ୍ଛା ଅନୁସାରେ ଯବନ ଅନ୍ତଃପୁରକୁ ଆସି ଚାଲିଯାଆନ୍ତି । ସମୟେ ସମୟେ ମଧ୍ୟ କୃଷ୍ଣା ସହିତ ବସି ନିରୋଳାରେ କ'ଣ ଆଲୋଚନା କରନ୍ତି; ତାପରେ ପୁଣି ଫେରିଯାଆନ୍ତି ନରାଜ ପାହାଡ଼ର ବୌଦ୍ଧସ୍ତୂପକୁ ।

ସମ୍ପୂର୍ଣ୍ଣରୂପେ ଉତ୍କଳ ବିଜିତ ହେଲା ପରେ ବିଜୟ ଉତ୍ସବ ପାଳନ ପାଇଁ ଯବନବାହିନୀଙ୍କର ଆୟୋଜନ ଚାଲିଲା । ମାତ୍ର ସେନାପତି କଳାପାହାଡ଼ ଏ

ଉତ୍ସବରେ ଯେ ଗଡ଼େଇ ପାରିବେ ନାହିଁ ବୋଲି ପରିଷ୍କାର ମନା କରିଦେଲେ । ସେ ସିଂହାସନ ଅଧିକାର କରିଥିଲେ ମଧ୍ୟ ଉତ୍କଳକୁ ଏପର୍ଯ୍ୟନ୍ତ ଜୟ କରିପାରି ନାହାନ୍ତି । ତାଙ୍କର ଆହୁରି ଅନେକ କାମ ବାକି ଅଛି ।

ଯେଉଁ ହିନ୍ଦୁଧର୍ମର ସଂସ୍କାରକମାନେ ତାଙ୍କୁ ସ୍ୱଧର୍ମକୁ ଫେରିଆସିବା ପାଇଁ ବାଧାଦେଲେ, କ୍ଷଣିକ ଭୁଲର ପ୍ରାୟଶ୍ଚିତ୍ତ ପାଇଁ ତାଙ୍କୁ ହିନ୍ଦୁଧର୍ମରୁ ବହିଷ୍କୃତ କଲେ, ସେ ଥରେ ନିଜର ଖଡ଼୍‌ଗର ଧାର ପରୀକ୍ଷା କରିନେବେ ସେହିମାନଙ୍କ ନିକଟରେ । ଆଜିପର୍ଯ୍ୟନ୍ତ କଳାପାହାଡ଼ ସେ ଅପମାନର ଜ୍ୱାଳା ଭୁଲି ପାରି ନାହାନ୍ତି—ଯେଉଁଦିନ କି ତାଙ୍କୁ ବିଧର୍ମୀ କହି ସେହି ସଂସ୍କାରକମାନେ ଗଳାଧକ୍‌କା ଦେଇ ବିଦାୟକରି ଦେଇଥିଲେ ମୁକ୍ତିମଣ୍ଡପ ନିକଟରୁ । ଆଉ ତା ସହିତ ମଧ୍ୟ ପରୀକ୍ଷା କରିବେ ଦାରୁ ବ୍ରହ୍ମଙ୍କର ଶରୀର କି ପ୍ରକାର କାଠରେ ତିଆରି—ଯିଏ ପତିତପାବନ ବାନା ଉଡ଼ାଇ, ନିଜକୁ ଜଗତର ନାଥ କହି ଚୌଷଠୀ ପଉଟି ଅନ୍ନବ୍ୟଞ୍ଜନରେ କାଳାତିପାତ କରୁଛନ୍ତି ।

ପ୍ରତିହିଂସାରେ ଜର୍ଜରିତ ହୋଇ କଳାପାହାଡ଼ ସସୈନ୍ୟରେ ଚାଲିଲି ଶ୍ରୀକ୍ଷେତ୍ର ଅଭିମୁଖେ ।

ଏଣେ ନବାବ ଅନ୍ତଃପୁରରେ ସନ୍ନ୍ୟାସିମାନଙ୍କ ସହିତ କୃଷ୍ଣାର ଗୋପନ ମନ୍ତ୍ରଣା ଚାଲିଛି !

କୃଷ୍ଣା କହିଲା—ପ୍ରିୟା, ଏହା ହିଁ ଉପଯୁକ୍ତ ସମୟ । ତୁ ମୋହନଙ୍କୁ କହିବୁ—ସେ ଗଡ଼ ବାହାରେ ନଦୀକୂଳରେ ଅପେକ୍ଷା କରିଥିବେ । ମୁଁ ନିଶୀଥରେ ଏଠାରୁ କୌଶଳକ୍ରମେ ପଳାଇଯିବି । ତୁ ନିର୍ଜଠରେ ରହିଥିବୁ । ଆମେ ଏଠାରୁ ଚାଲିଗଲେ ତାପରେ ଯାହା ହେବ ସ୍ଥିର କରିବା ।

ପ୍ରିୟା ଉତ୍ତର ଦେଲା—ସହି, ତୁମେ ଯିବ କିପରି ? ଏଠାରେ ଯେ ଚତୁର୍ଦ୍ଦିଗରେ ପ୍ରହରୀ ! ଯଦି ଧରା ପଡ଼ିଯାଅ ?

କୃଷ୍ଣା କିଛି ସମୟ କ'ଣ ଭାବି ଉତ୍ତର ଦେଲା—ବେଶ୍, ତାହାହେଲେ ଗୋଟାଏ କାମ କର । ତୋର ପରି ଆଉ ଖଣ୍ଡିଏ ଶାଢ଼ୀ ଆଣି ମୋତେ ଗୋପନରେ ଦେଇଯା' । ସମସ୍ତେ ଉତ୍ସବରେ ମତ୍ତ ଥିବାବେଳେ ମୁଁ ତାକୁ ପରିଧାନ କରି ଚାଲିଯିବି । ତୋ ଭ୍ରମରେ ମୋତେ ଆଉ କେହି ସନ୍ଦେହ କରିବେ ନାହିଁ । ମୋହନଙ୍କୁ କହିବୁ—ସେ ନଦୀକୂଳରେ ବଂଶୀରେ ଶବ୍ଦ କରିବେ, ମୁଁ ସେହି ଶବ୍ଦକୁ ଅନୁସରଣ କରି

ସେଠାକୁ ଚାଲିଯିବ ।

ପରିଶେଷରେ ତାହା ହିଁ ସ୍ଥିର ହେଲା ।

✳ ✳

ଶୁକ୍ଳ ତ୍ରୟୋଦଶୀର ରଜନୀ । କୌମୁଦୀ ସମ୍ପାତରେ ସର୍ବତ୍ର ପ୍ରଫୁଲ୍ଲ । ମହାନଦୀର କ୍ଷୁଦ୍ର କ୍ଷୁଦ୍ର ଲହରୀମାଳାରେ ଚନ୍ଦ୍ରକିରଣ ପତିତ ହୋଇ ଅପୂର୍ବ ଶୋଭା ଧାରଣ କରିଛି । ତାହାର ତୀରସ୍ଥିତ ବୃକ୍ଷରାଜି ଅପହୃତ ହେଲେହେଁ ଶୁଭ୍ର କିରଣ-ସ୍ନାତ ହୋଇ ଆଦରରେ ଈଷତ୍ ଚଞ୍ଚଳ ହୋଇଉଠିଛି । ଘନକୃଷ୍ଣ ଛାୟାତଳରେ କେଉଁଠି କେଉଁଠି ବୃକ୍ଷପତ୍ରର ଅବକାଶ ପଥରେ ଗୋଟିଏ ଗୋଟିଏ କିରଣଧାରା ତଳକୁ ଓହ୍ଲାଇ ଆସି ଆଲୋକ ଛାୟାର ଶୋଭା ଉପଭୋଗ କରୁଛି ।

ଛୋଟିଏ ସୁସଜ୍ଜିତ ବଜରା ମହାନଦୀଗର୍ଭରେ ଶୁଭ୍ର ପାଲ ଟେକି ଉଜାଣିରେ ଗତିକଲା ।

ଆଜି ବଜରା ଉତ୍ସବ । ମହାନଦୀରେ ଜ୍ୟୋତ୍ସ୍ନା ବିହାର କରିବା ପାଇଁ ନବାବ କୁମାର ବାଇଜିଦ ବଜରାରେ ଆରୋହଣ କରିଛନ୍ତି ।

ବଜରା ଛୋଟିଏ ପ୍ରଶସ୍ତ ଓ ଦୀର୍ଘ । ତହିଁରେ ସ୍ଥାନେ ସ୍ଥାନେ ଲତାକୁଞ୍ଜମାନ ନିର୍ମାଣ କରାଯାଇଛି ଏବଂ ପୁଷ୍ପଗୁଚ୍ଛ ଓ ପୁଷ୍ପର ଗନ୍ଧରେ ସେଗୁଡ଼ିକ ଅପୂର୍ବ ଶ୍ରୀ ଧାରଣ କରିଛି ।

ମହାନଦୀର ଧୀର ଲହରୀରେ ବଜରାଗୁଡ଼ିକ ଆଗପଛ ହୋଇ ଚାଲିଛନ୍ତି । ପ୍ରଥମଟିରେ ସାମନ୍ତ, ପାତ୍ର-ମିତ୍ର ଏବଂ ଉଚ୍ଚପଦସ୍ଥ କର୍ମଚାରୀମାନେ ବସି ଧୂମପାନରେ ବ୍ୟସ୍ତ ଅଛନ୍ତି । ଦ୍ୱିତୀୟଟିରେ ବାଦ୍ୟକାରମାନେ ବିଭିନ୍ନ ପ୍ରକାର ସ୍ୱରଯନ୍ତ୍ର ନେଇ ବାଦ୍ୟବାଦନରେ ବ୍ୟସ୍ତ । ତୃତୀୟ ବଜରାରୁ ଭାସି ଆସୁଛି—ନାରୀକଣ୍ଠର ସୁଲଳିତ ସ୍ୱରମାଧୁରୀ । ନବାବକୁମାର ଚନ୍ଦନର ପିଚକାରୀ ଧରି ନାରୀମାନଙ୍କ ସହ ନାନା ପ୍ରକାର କ୍ରୀଡ଼ା କୌତୁକରେ ବ୍ୟସ୍ତ ଅଛନ୍ତି । ପ୍ରତି ବଜରା ସହିତ ଛୋଟ ଚାରିଟି ଲେଖାଏଁ ଡଙ୍ଗୀ ଦୃଢ଼ ରଜ୍ଜୁ ସାହାଯ୍ୟରେ ବନ୍ଧା ଯାଇଛି ।

ନୂତନ ବର୍ଷାଜଳ ପାଇ ନଦୀବକ୍ଷ ସ୍ଫୀତ । ଚତୁର୍ଦ୍ଦିଗ ନିସ୍ତବ୍ଧ, ନିସ୍ପନ୍ଦ । ପ୍ରବାହିତ ନଦୀସ୍ରୋତରେ ଚଞ୍ଚଳତା ନାହିଁ । ଚରାଚର ଯେପରି ସୂକ୍ଷ୍ମ ମଖମଲ ବସ୍ତ୍ର

ସର୍ବାଙ୍ଗରେ ବେଷ୍ଟନ କରି ତନ୍ଦ୍ରାଘୋରରେ ସ୍ୱପ୍ନ ଦେଖୁଛି । ମଝିରେ ମଝିରେ କେବଳ ଆନ୍ଦୁଳପତନର ଶବ୍ଦ ନୈଶ ନିସ୍ତବ୍ଧତା ଭଙ୍ଗ କରିବା ପାଇଁ ଉଦ୍ୟମ କରୁଛି ।

ନବାବ କୁମାର ସୁରା, ସଙ୍ଗୀତ ଓ ସହଚରୀମାନଙ୍କ ସ୍ପର୍ଶରେ ତନ୍ମୟ । ତାଙ୍କର ପ୍ରିୟପାତ୍ରୀ ହେବା ନିମନ୍ତେ କିଶୋରୀମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇ-ଯାଇଛି । ବହିତ୍ରର କ୍ଷୁଦ୍ର ପ୍ରକୋଷ୍ଠଟି ସ୍ୱର୍ଣ୍ଣ ପ୍ରଦୀପର ଆଲୋକରେ ଉଦ୍ଭାସିତ । ପ୍ରକୋଷ୍ଠ ମଧ୍ୟରେ ଅଗୁରୁ ଚନ୍ଦନର ସୁରଭି ।

ଦୁଃଖିନୀ କୃଷ୍ଣାକୁମାରୀର ସମସ୍ତ ଉଦ୍ୟମ ବ୍ୟର୍ଥ ହେଲା । ନବାବକୁମାର ଜ୍ୟୋତ୍ସ୍ନାବିହାରରେ ଗଲାବେଳେ ଅନ୍ୟାନ୍ୟ ଅନ୍ତଃପୁରବାସିନୀମାନଙ୍କ ସହିତ ତାକୁ ମଧ୍ୟ ସଙ୍ଗରେ ନେଇଗଲେ । ମାତ୍ର ମହାନଦୀରେ ଜ୍ୟୋତ୍ସ୍ନାବିହାର, ଅଗୁରୁ ଚନ୍ଦନର ସୁରଭି କିମ୍ବା ପୁଷ୍ପର ସମାରୋହ ତାକୁ ଶାନ୍ତି ଦେଇ ପାରୁ ନାହିଁ । ସେ ଅନ୍ୟମନସ୍କା । ସମସ୍ତେ ସମସ୍ତେ କି ଏକ ଉତ୍ତେଜନାରେ ଦେହ ତାର ଥରି ଉଠୁଛି ।

କୃଷ୍ଣା ବହିତ୍ରର ପ୍ରକୋଷ୍ଠରୁ ବାହାରି ପଦାକୁ ଆସିଲା । ନବାବ କୁମାର ଏବଂ ଅନ୍ତଃପୁରବାସିନୀ ସମସ୍ତେ ଉଗ୍ର ପାନୀୟରେ ପ୍ରମତ୍ତ । ମୁକ୍ତ ଆକାଶ ତଳେ ସେ ଦୀର୍ଘ ନିଶ୍ୱାସ ତ୍ୟାଗ କଲା । ତାପରେ ଶୂନ୍ୟ ଆକାଶବକ୍ଷକୁ ଦୃଷ୍ଟିପାତ କଲା ।

ଆକାଶରେ ମେଘର ଅଦ୍ଭୁତ ସମାରୋହ । ପଶ୍ଚିମ ଦିଗନ୍ତବ୍ୟାପୀ ପୁଞ୍ଜୀଭୂତ ବାରିଦମୁକ୍ତ କୁନ୍ତଳ ସଦୃଶ ପ୍ରତୀୟମାନ ହୁଏ । ତା ମଧ୍ୟରେ ସୀମନ୍ତିନୀର ସିନ୍ଦୂରଗାର ପରି ବିଦ୍ୟୁତ୍ ବିଚ୍ଛୁରିତ ହେଉଅଛି । କୃଷ୍ଣା କେତେ ସମୟ ଏକାଗ୍ର ଭାବରେ ସେ ଆଡ଼କୁ ଚାହିଁରହିଲା ।

ନଦୀକୂଳର କୌଣସି ଏକ ମଠ ବା ମନ୍ଦିରରୁ ଭାସିଆସୁଛି ଶ୍ରୀ ଗୀତଗୋବିନ୍ଦର ପଦାବଳୀ—

> 'ତାଳଫଳାଦପି ଗୁରୁମତିସରସଂ
> କିଂ ବିଫଳୀକୁରୁଷେ କୁଚକଳଶଂ
> ମାଧବେ ମା କୁରୁ ମାନିନୀ ! ମାନମୟେ!
> ହରିରଭିସରତି ବହତି ମୃଦୁ ପବନେ
> କିମପରମଧିକସୁଖଂ ସଖୀ ଭବନେ ।'

ଗୀତ ପରେ ମୃଦଙ୍ଗର ଉଦ୍ଦଣ୍ଡ ଶବ୍ଦ । ପ୍ରେମବହ୍ୱଳ ବାଦକ ମୃଦଙ୍ଗ ବଜାଇ ଗ୍ଲଲ ଅବିଶ୍ରାମ ଗତିରେ ।

ହଠାତ୍ ସେହି ଶବ୍ଦ ମଧ୍ୟରେ ଆଉ ଗୋଟିଏ ଗୁରୁ ଗୁରୁ ଶବ୍ଦ ମୁହୂର୍ତ୍ତିକ ପାଇଁ ଧ୍ୱନିତ ହୋଇଉଠିଲା । ଏ ଶବ୍ଦର ଅର୍ଥ ଅନ୍ୟ କେହି ନ ଜାଣିଥିଲେ ମଧ୍ୟ କୃଷ୍ଣା ତାହା ଭଲ କରି ଜାଣେ । ସେ ଚଞ୍ଚଳତା ହୋଇ ପଶ୍ଚିମ ଆକାଶକୁ ଦୃଷ୍ଟିପାତ କଲା । ଦେଖିଲା— କପିଳାସ ପାହାଡ଼ର ଉପରିଭାଗରୁ ବିରାଟ ମେଘର ସମାବେଶ ଧୀରେ ଧୀରେ ମଧ୍ୟଗଗନ ଆଡ଼କୁ ଵିସର୍ପିତ ହେଉଅଛି । ପବନର ବେଗ ମଧ୍ୟ କ୍ରମଶଃ ବୃଦ୍ଧି ପାଉଛି । କୃଷ୍ଣା ଆଉ କାଳ ବିଲମ୍ବ ନ କରି ଧୀର ଭାବରେ ବୋଇତରୁ ଡ଼ଙ୍ଗୀ ମଧ୍ୟକୁ ଓହ୍ଲାଇ ପଡ଼ିଲା । କାହାରି ତା ପ୍ରତି ଲକ୍ଷ୍ୟ ନାହିଁ । ଏହା ହିଁ ଭାଗ୍ୟପରୀକ୍ଷାର ଶେଷ ସୁଯୋଗ ।

କୃଷ୍ଣା ବହୁ କଷ୍ଟରେ ଡ଼ଙ୍ଗୀଟିକୁ ବୋଇତ ସହିତ ବନ୍ଧା ଯାଇଥିବା ରଜ୍ଜୁରୁ ମୁକ୍ତ କଲା । ତାପରେ ଡ଼ଙ୍ଗୀଟିର ପାଲ ଟେକି ଆଗ ମଙ୍ଗରେ ଠିଆ ହେଲା ।

ମୁହୂର୍ତ୍ତିକ ମଧ୍ୟରେ ଚନ୍ଦ୍ରମା ମେଘର ଆଢୁଆଳରେ ଲୁଚିଗଲେ । ତାପରେ କଳାମେଘରୁ ଝରି ପଡ଼ିଲା ଅଜସ୍ର ବାରିଧାରା । ପ୍ରବଳ ପବନ ଯୋଗୁ ନୌକାଗୁଡ଼ିକ କ୍ଷିପ୍ତ ହୋଇଉଠିଲେ । ମହାନଦୀର ବିଶାଳ ବାରିଧାରା ଲହରୀ ବେଗରେ କୂଳରେ ମୁଣ୍ଡ ପିଟିବାରେ ଲଗିଲା । ସମସ୍ତଙ୍କର ଆମୋଦ ପ୍ରମୋଦରେ ଭଟ୍ଟା ପଡ଼ିଗଲା । ନାବିକମାନେ ପ୍ରବଳ ଜଳସ୍ରୋତରୁ ନୌକାଗୁଡ଼ିକ ଉଦ୍ଧାର କରିବା ପାଇଁ ବ୍ୟସ୍ତ ହୋଇପଡ଼ିଲେ ।

କୃଷ୍ଣାର କ୍ଷୁଦ୍ର ଡ଼ଙ୍ଗୀ ଖଣ୍ଡିକ ପ୍ରବଳ ପବନ ବେଗରେ ଭାସି ଆସି କାଠଯୋଡ଼ିର ଉତ୍ପତ୍ତିସ୍ଥଳରେ ଭଉଁରୀରେ ପଡ଼ିଗଲା ।

ମେଘ ଓ ପବନର ଶବ୍ଦ ଭେଦ କରି ଭାସି ଆସୁଛି— ମୋହନର ବଂଶୀସ୍ୱନ ।

ଡ଼ଙ୍ଗୀ ଖଣ୍ଡିକ ସେଠାରେ କୁମ୍ଭକାରର ଚକ ପରି ଘୂରିବାରେ ଲଗିଲା ।

ଜଳଭଉଁରୀରୁ ଆଉ ଉ ାରର ଉପାୟ ନ ଦେଖି କୃଷ୍ଣା ଆକୁଳ କଣ୍ଠରେ ଡାକିଲା— ମୋହନ····

ନଦୀର ତାଣ୍ଡବ ନର୍ତ୍ତନ, ବଜ୍ରର ଗର୍ଜନ, ବର୍ଷାର ରିମିଝିମି ଏବଂ ପବନର ସନ ସନ ଶବ୍ଦ ଭେଦ କରି ସେ ଆହ୍ୱାନ ଯାଇ ମୋହନର କାନରେ ବାଜିଲା ।

ସେ ଆଉ କାଳ ବିଳମ୍ବ ନ କରି ନଦୀକୂଳକୁ ଧାଇଁଗଲା ।

ଜଳଭଉଁରୀ ଠିକ୍ ସେହିକବେଳେ କ୍ଷୁଦ୍ର ଡ଼ୁଙ୍ଗୀଟିକୁ ଆପଣା ଗର୍ଭରେ ଲୀନ କରିଦେଲା । ଜଳ ମଧ୍ୟରେ ବୁଡ଼ି ଯାଉଁ ଯାଉଁ ଶେଷ ଥର ପାଇଁ କୃଷ୍ଣା ଡାକିଲା— ମୋହନ ସେ ଆହ୍ୱାନରେ କି ମୋହ ଥିଲା କେଜାଣି, ମୋହନ ଆଗ ପଛ କିଛି ଭାବନା ନ କରି ନଦୀ ମଧ୍ୟକୁ ଲମ୍ଫ ପ୍ରଦାନ କଲା ।

ନଦୀକୂଳରେ ଧ୍ୱନିତ ହେଲା ପ୍ରକୃତିର ନିର୍ମ୍ମମ ଅଟ୍ଟହାସ ।

*

*

ପର ଦିବସ । ଯଥା ସମୟରେ ଅରୁଣ ଉଦିତ ହେଲେ ।

ସପ୍ତାଶ୍ୱବାହନଙ୍କର ସୁନେଲି କିରଣରେ ଦିଗ ଦିଗନ୍ତ ଉଦ୍ଭାସିତ ହୋଇ- ଉଠିଲା । ସଂସାରର ଜୀବନଯାତ୍ରା ପୂର୍ବପରି ଆରମ୍ଭ ହେଲା ।

ଆଜି ମହାନଦୀ ଶାନ୍ତ ଓ ଅଚଞ୍ଚଳ । ପୂର୍ବ ରାତ୍ରିର ସେ ରୁଦ୍ର ରୂପ ଆଜି ଆଉ ନାହିଁ । ଗୃହସ୍ଥର ବଧୂ ପରି ସେ ମନ୍ଦଗାମିନୀ ଏବଂ ସୁଭାଷିଣୀ ।

କୃଷ୍ଣାର ଅଦର୍ଶନରେ ସେ ରାତ୍ରରେ ବାଇଜିଦ ଶୋଇପାରିଲେ ନାହିଁ । ହୃଦୟ ତାଙ୍କର ଅସ୍ଥିର ହୋଇପଡ଼ିଲା । ପବିତ୍ରର ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ ସେ କୃଷ୍ଣାକୁ ଖୋଜିବା ପାଇଁ ଚାରିଆଡ଼କୁ ସୈନ୍ୟବାହିନୀ ପଠାଇଦେଲେ । ମାତ୍ର ବେଶୀ ସମୟ ତାଙ୍କୁ ଆଉ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ଦଳେ ସୈନିକ ଫେରିଆସି କୃଷ୍ଣାର ମୃତ୍ୟୁ ସମ୍ବାଦ ତାଙ୍କୁ ଦେଲେ ।

ବାଇଜିଦ ନିଜ ଅଶ୍ୱପୃଷ୍ଠରେ ଆରୂଢ଼ ହୋଇ ତାକୁ ଦେଖିବା ପାଇଁ ଗଲେ ।

କାଠଯୋଡ଼ି କୂଳର ଏକ କୃଷ୍ଣଚୂଡ଼ା ବୃକ୍ଷମୂଳରେ ଦୁଇଟି ତରୁଣ ଓ ତରୁଣୀ । ଦୁହେଁ ଦୁହିଁଙ୍କୁ ଭିଡ଼ିଧରି ପରମ ଶାନ୍ତିରେ ନିଦ୍ରା ଯାଇଛନ୍ତି । ମାତ୍ର ଦୁହିଁଙ୍କର ଶରୀର-ପିଞ୍ଜରାରୁ ପ୍ରାଣପକ୍ଷୀ ଉଡ଼ିଯାଇଛି । ସେ ଦୁହିଁଙ୍କ ମଧ୍ୟରୁ ଜଣେ କୃଷ୍ଣାକୁମାରୀ ଓ ଅନ୍ୟ ଜଣେ ଚିତ୍ରକର ମୋହନ । ନଦୀର ଲହରୀରେ ଭାସି ଆସି ବୃକ୍ଷମୂଳରେ ଲଗିଛନ୍ତି । ଶରୀରର ନାନା ସ୍ଥାନରେ ପଡ଼ିଛି—କୃଷ୍ଣଚୂଡ଼ାର ଝରାଫୁଲ ଗୁଡ଼ିଏ ।

ବାଇଜିଦଙ୍କ କଠୋର ହୃଦୟ ମୁହୂର୍ତ୍ତକରେ ଦ୍ରବୀଭୂତ ହୋଇଗଲା । ଦୁଇଟି ତରୁଣ-ତରୁଣୀଙ୍କର ଏଭଳି ସ୍ୱର୍ଗୀୟ ପ୍ରେମରେ ସେ ଆତ୍ମହରା ହୋଇପଡ଼ିଲେ । ସେ ନଦୀକୂଳରେ ଦୁହିଁଙ୍କର ଶବକୁ ହିନ୍ଦୁ ପ୍ରଥା ମତେ ସମାଧି ଦେଇ ତା ଉପରେ ପ୍ରସ୍ତର ବେଦୀଟିଏ ନିର୍ମାଣ କରିଦେଲେ । ତାପରେ ସେଠାରେ ଆଣ୍ଠୁ ମାଡ଼ି ବସି ନତ ମସ୍ତକରେ କହିଲେ—

"କୁମାରୀ ! ତୁମେ ପ୍ରକୃତରେ ସତୀ । ତୁମରି ପରି ସତୀ ନାରୀଙ୍କ ଯୋଗୁଁ ପବିତ୍ର ଉତ୍କଳଭୂମି ଧନ୍ୟ ହୋଇଛି ।

ଯବନର ଅନ୍ତଃପୁରରେ ରହି ଏବଂ ବଙ୍ଗ ଓ ଉତ୍କଳର ସ୍ୱାମୀ ନବାବଙ୍କ ପ୍ରଲୋଭନରେ ନ ପଡ଼ି ତୁମେ ଆଜି ଏ ଯେଉଁ ମହାନ୍ ଆଦର୍ଶ ଦେଖାଇଲ, ତାହା ଉତ୍କଳ-ବକ୍ଷରେ ଚିରଅମର ହୋଇ ରହୁ ।

ସତୀ ! ମୋର ଶେଷ ଅର୍ଘ୍ୟ ଗ୍ରହଣ କର ।

ବାଇଜିଦ ପୁଷ୍ପଗୁଚ୍ଛଟିଏ ସମାଧିପୀଠରେ ଅର୍ପଣ କଲେ ।

ପ୍ରବଳପରାକ୍ରାନ୍ତ ଉତ୍କଳବିଜୟୀ ବାଇଜିଦଙ୍କ ନେତ୍ରରୁ ଦୁଇ ବିନ୍ଦୁ ଲୋତକ ଝରିପଡ଼ିଲା ପ୍ରସ୍ତରବେଦୀ ଉପରେ ।

କାଠଯୋଡ଼ି କୂଳର ଏହି ସ୍ଥାନଟି ସେହିଦିନରୁ **ସତୀଚଉରା** ନାମରେ ନାମିତ ହେଲା ।



ଏ ମଧ୍ୟରେ ଚାରି ଶହ ବର୍ଷ ଅତୀତ ହେଲାଣି । କେତେ ସୂର୍ଯ୍ୟ, ଚନ୍ଦ୍ର, ଉର୍ଦ୍ଧ ପ୍ରତୀଚୀ ଗଗନରେ ଅସ୍ତ ଗଲେଣି, ମାତ୍ର ସତୀଚଉରାର ସେ ନାମ ପୂର୍ବପରି ରହିଛି ।

ଆଜି ମଧ୍ୟ ନିସ୍ତବ୍ଧ ରାତ୍ରରେ ଯେତେବେଳେ ମେଘ ଉଠାଏ, ଚନ୍ଦ୍ରମା କଳାମେଘ କୋଳରେ ଆତ୍ମଗୋପନ କରନ୍ତି, ଝର ଝର ବର୍ଷଣର ଶବ୍ଦରେ ଆକାଶର ବକ୍ଷ ଧ୍ୱନିତ ହୁଏ, ସେତେବେଳେ ସତୀଚଉରାର କବର ମଧ୍ୟରୁ ଅଶରୀରୀ ଅତୃପ୍ତ ଆତ୍ମାର ଅସ୍ପଷ୍ଟ ଆର୍ତ୍ତନାଦ ଶୁଭେ—

"ହେ ପଥିକ ! ଏଠାରେ ଦୁଇ ବିନ୍ଦୁ ଅଶ୍ରୁ ଢାଳିଦିଅ ।"